# ଖ୍ରିଷ୍ଟିଆନ୍ ଛିଙ୍କୀ

ମୂଳ ଇଂରାଜୀ

ଆର୍. ଇ. ହିଲ୍

ଅନୁସୃଜନ

ଡ. ବିନୋଦିନୀ ପାତ୍ର



## ଲେଖିକାଙ୍କ ଅନ୍ୟାନ୍ୟ କୃତି

**କବିତା ପୁସ୍ତକ :**

୧. ତୁମ ପ୍ରତୀକ୍ଷାରେ ନିଶିଦିନ
୨. ଅନ୍ତରୁ ଆରମ୍ଭ
୩. ଦୀପ ଓ ଅନ୍ୟାନ୍ୟ କବିତା
୪.ବନ୍ଧୁ

**ଗଳ୍ପ ପୁସ୍ତକ :**

୧. ଆଦିବାସୀ ଲୋକକଥା (୧)
୨. ଆଦିବାସୀ ଲୋକକଥା (୨)
୩. ଉଦାସୀନ ଅପରାହ୍ନ
୪. ପୁନଶ୍ଚ ଗୌତମୀ
୫. ଦେବୀ ଦର୍ଶନ

**ଶିଶୁ ସାହିତ୍ୟ ପୁସ୍ତକ :**

୧. କଥାକୁ ନଥା
୨. କୁନା ପାଇଁ ଗୀତ

**ଅନୁଦିତ ଉପନ୍ୟାସ :**

୧. ବିକ୍ଷତ ବିହଗ
୨. ମାଲଗୁଡ଼ିର ମହାବଳ

ଇଣ୍ଡିଆନ୍ ଇଙ୍କ୍ (ଉପନ୍ୟାସ) ■ ମୂଳ ଇଂରାଜୀ: ଏଚ୍. ଇ. ବିଲ୍ ■ ଅନୁସୃଜନ: ଡ. ବିନୋଦିନୀ ପାତ୍ର ■ ପ୍ରଥମ ସଂସ୍କରଣ: ୨୦୧୬ ■ ପ୍ରକାଶକ: ଲେଖାଲେଖି, ବି.ଏଲ୍-୮, ଭି.ଏସ୍.ଏସ୍ ନଗର, ଭୁବନେଶ୍ୱର, ଓଡ଼ିଶା, ଫୋନ୍: ୯୯୩୭୪୭୬୧୭୩ ■ ପ୍ରଚ୍ଛଦ: ବିଜୟ ପ୍ରଧାନ ■ ମୂଲ୍ୟ: ୨୦୦ ଟଙ୍କା



INDIAN INK *(Novel)* ■ Original English by **H.E. Beal** ■ Translated by Dr Binodini Patra ■ 1st Edition: **2016** ■ Publisher: Lekhalekhi, BL-8, V.S.S Nagar, Bhubaneswar, Odisha, Phone: 9937476173 ■ Cover Design: Bijay Pradhan ■ Price: ₹ 200/-

# ପ୍ରଥମ ପରିଚ୍ଛେଦ

ପ୍ରଥମଥର ପାଇଁ କୃପାସିନ୍ଧୁ ମହାନ୍ତି ଯେଉଁଦିନ ସାମ୍ନାସାମ୍ନି ହୋଇ କଲେକ୍ଟର ସାହେବଙ୍କ ସହ କଥା ହୋଇଥିଲା, ସେଇଦିନଟି ତା ଜୀବନର ଖୁବ୍ ଗୋଟାଏ ସଫଳ ଦିନ ଥିଲା ।

ଜଣେ ଗୋରାସାହେବଙ୍କ ସାଙ୍ଗେ ଦେଖା ହେବା କୃପାସିନ୍ଧୁ ପାଇଁ ଏଇଟା ପ୍ରଥମ ନୁହେଁ । ପାଞ୍ଚବର୍ଷ ତଳେ ଜଣେ ଗୋରାସାହେବ ତାର ଗାଁ ସ୍କୁଲର ପୁରସ୍କାର ବିତରଣୀ ଉତ୍ସବକୁ ଅତିଥି ହୋଇ ଆସିଥିଲେ । ସେଇଠାରେ ହିଁ ସର୍ବପ୍ରଥମେ ସେ ଗୋରାସାହେବଟିଏକୁ ଭେଟିଥିଲା । ସଲ୍ଲଜ ନମ୍ରତାରେ ପେଣ୍ଡାଲ ଉପରକୁ ପୁରସ୍କାର ଆଣିବାକୁ ଗଲାବେଳେ ସେ ସାହେବଙ୍କୁ ଦେଖି ଭାବିଥିଲା ଯେ ସବୁ ଗୋରାସାହେବମାନେ ଏମିତି ଲମ୍ବା ଚଉଡ଼ା ଚେହେରାର ଆଉ ତା ସହିତ ବି ଦୟାବନ୍ତ ହୃଦୟର ଅଟନ୍ତି । ସେଇ ଯେଉଁ ଧାରଣାଟା, ତାହା ସାରା ଜୀବନ ପାଇଁ ତା ମନରେ ରହିଗଲା । କାରଣ ସେମାନେ ସବୁଦିଗରୁ ମହାନ୍ । ମନ, ଦେହ, ଅସମ୍ଭବ ଶକ୍ତି ଓ ସାହସ ତଥା ଅସାଧାରଣ ବ୍ୟକ୍ତିତ୍ୱ ଦୃଷ୍ଟିରୁ, ସବୁ କ୍ଷେତ୍ରରେ ସେମାନେ ମହାନ୍ । ଏ ପ୍ରକାର ଧାରଣାଟି କୃପାସିନ୍ଧୁର ଅନୁଭୂତିସିଦ୍ଧ ଧାରଣା । ପୁରସ୍କାର ବିତରଣ ପରେ ଗୋରାସାହେବ ଜଣକ ଲୌକିକତା ଦୃଷ୍ଟିରୁ କିଛି ଭାଷଣ ଦେଲେ । ସେଦିନ ପ୍ରଥମଥର ପାଇଁ କୃପାସିନ୍ଧୁ ଜଣେ ଗୋରା ଲୋକ ମୁହଁରୁ ଇଂରାଜୀ କଥା ଶୁଣିଥିଲା କିନ୍ତୁ ଭାଷଣର ଗୋଟାଏ ଶବ୍ଦ ବି ସେତେବେଳେ ସେ ବୁଝି ପାରି ନଥିଲା ।

ପୁଣି ଥରେ ସେ ଜଣେ ଗୋରା ଲୋକକୁ କଲିକତାରେ ପରୀକ୍ଷା ଦେବାକୁ ଯିବାବେଳେ ଦେଖିଥିଲା । ତାପରେ ପରେ ସେ ଅନେକ ବାର ଗୋରାଲୋକମାନଙ୍କୁ ଦେଖି ଥିଲା ସତ, କିନ୍ତୁ ସେମାନଙ୍କ ସହ କେବେ କଥା କହିବାର ସୁଯୋଗ ପାଇ ନଥିଲା । ଖାଲି ଯେ ଗୋରା ଲୋକଙ୍କୁ ସେ ଦେଖିବାର କୌତୁହଳ ରଖି ଥିଲା ତା ନୁହେଁ, ଧଳାଟୋପି ଓ ନାଲି ପୋଷାକରେ କଦମତାଲ କରି ଇଂରେଜ ସୈନ୍ୟମାନେ ରାସ୍ତାରେ ଚାଲିଯିବା ବେଳେ, ସେ ସେମାନଙ୍କୁ ଭଲଭାବରେ ନିରୀକ୍ଷଣ କରି ଦେଖୁଥିଲା । ଭାରି ମଜା ଲାଗୁଥିଲା ତାକୁ । ସେମାନଙ୍କ ବିଷୟରେ ତା ମନରେ ଖୁବ୍ ଭଲ ଧାରଣା ଥିଲା । ସେମାନେ ଖଣ୍ଡା ବା ବର୍ଚ୍ଛା ଧରି ଚାଲୁ ନ ଥିଲେ ସତ, ମାତ୍ର ସେମାନଙ୍କର ପିଚ୍ଛର ପଛ ପାଖରେ ବାଁପଟେ ଖୋଳଭିତରେ ଛୁରୀଟିଏ ଝୁଲୁଥାଏ । ଆଉ ପ୍ରତ୍ୟେକେ ସେମାନଙ୍କ କାନ୍ଧରେ ଖଇରିଆ ରଂଗର ଗୋଟାଏ କଣ ଲେଖେଁ ବୋହି ନେଉଥାନ୍ତି । କୃପାସିନ୍ଧୁ ଖୁବ ଅନୁଧ୍ୟାନ କରି ଦେଖେ । ତାପରେ ବୁଝିଲା ଯେ ସେ ଗୁଡ଼ାକ ଗୋଟାଏ ଗୋଟାଏ ବନ୍ଧୁକ ।

ସେଇମାନଙ୍କ ଠାରେ ପ୍ରଥମେ ବନ୍ଧୁକ ଦେଖିଲା ପରେ ହିଁ ବନ୍ଧୁକ କଣ ଚିଜ ବୋଲି କୃପାସିନ୍ଧୁ ବୁଝିଲା । ତାଙ୍କ ଗାଁ ଜମିଦାରଙ୍କର ଗୋଟାଏ ଦୁଇନଳିଆ ବନ୍ଧୁକ ଥିଲା । ଗାଁର ଫସଲ ନଷ୍ଟ କରୁଥିବା ଜଙ୍ଗଲି ଜାନୁଆରମାନଙ୍କୁ ଘଉଡ଼େଇବା ପାଇଁ ଜମିଦାର ସେଇଟିକୁ କେତେବେଳେ କେମିତି ବ୍ୟବହାର କରୁଥିଲେ । ଗାଁର ଜଣେ ପୁରୁଖା ଲୋକଙ୍କର ବି ସେମିତି ଗୋଟାଏ ବଡ ବନ୍ଧୁକ ଥିଲା । ସେଥିରେ ସେ କୁମ୍ଭୀର ଶିକାର କରୁଥିଲେ । ଆଉଥରେ ସେଇ ବନ୍ଧୁକରେ ଗୋଟାଏ କଲରାପତରିଆ ବାଘକୁ ମାରି ସେ ପୁରସ୍କାର ବି ପାଇଥିଲେ । ଆଉ ସେଥର ଯେବେ ଡକାୟତମାନେ ଗାଁକୁ ଘେରୀ କରିବାକୁ ଆସିଥିଲେ, ସେଇ ବନ୍ଧୁକରୁ ଫାଙ୍କା ଆଓ୍ୱାଜ କରି ସେ ଚୋରମାନଙ୍କୁ ଭୟଭୀତ କରି ଘଉଡ଼ାଇ ଦେଇଥିଲେ । ତା ପରଠାରୁ ଗାଁରେ ଗୋଟାଏ ବନ୍ଧୁକ ଅଛି ବୋଲି ଜାଣିଗଲା ପରେ ଚୋରମାନେ କେବେ ତାଙ୍କ ଗାଁକୁ ଆସି ଉପଦ୍ରବ କରି ନାହାନ୍ତି ।

କୃପାସିନ୍ଧୁ ଭାବେ ଯେ ଏଇ ଗୋରାମାନେ ସଦାବେଳେ ଅଣ୍ଟାରେ ବନ୍ଧୁକ ଝୁଲାଇ ଥାନ୍ତି । ତେଣୁ କେତେ ଦେଶ ସେମାନେ ଜୟ କରି ନ ଥିବେ । ଅତୀତରେ ବୀରମାନେ ଖଣ୍ଡା, ବର୍ଚ୍ଛା, ଧନୁ ଓ ତୀର ନେଇ ଯୁଦ୍ଧ କରୁଥିଲେ । ଇଂରେଜମାନେ ଯୁଦ୍ଧ କରନ୍ତି ବନ୍ଧୁକରେ । ପ୍ରତ୍ୟେକ ଇଂରେଜ ଲୋକ ତେବେ ଗୋଟାଏ ଗୋଟାଏ ବୀର ହୋଇଥିବେ ବୋଲି କୃପାସିନ୍ଧୁର ଧାରଣା ବଳବତ୍ତର ହୋଇଯାଇଥିଲା ସେତେବେଳେ ।

ଏବେ ସେ ଜଣେ ଗୋରାସାହେବଙ୍କୁ ସାମ୍ନାସାମ୍ନି ଭେଟୁଛି । କଲେକ୍ଟରଙ୍କ ଅଫିସରେ ଦୁଇଟି ଆପ୍ରେଣ୍ଟିସ୍ ପୋଷ୍ଟ ପାଇଁ ସ୍ଥାନ ଖାଲି ଥିଲା । କୃପାସିନ୍ଧୁ ଓ ଆଉ ଅନେକ ପ୍ରାର୍ଥୀ ସେଥିପାଇଁ ଆବେଦନ ପତ୍ର ପକେଇ ଥିଲେ ।

ପ୍ରଥମ ପର୍ଯ୍ୟାୟ (ପ୍ରିଲମ୍) ପରୀକ୍ଷାରେ କୃପାସିନ୍ଧୁ ଓ ତାର ସ୍କୁଲ ସାଙ୍ଗ ଖୁର୍ସିଦ୍ ଅଲ୍ଲୀ, ଦୁହେଁଯାକ ସର୍ବୋଚ୍ଚ ନମ୍ବର ରଖିଥିଲେ । ଯଦିଓ ଏ ଦିଜଣଙ୍କ ମଧ୍ୟରେ ଧର୍ମଗତ ପାର୍ଥକ୍ୟ ଥିଲା, ତଥାପି ସେମାନେ ଖୁବ୍ ଭଲ ସାଙ୍ଗ ଥିଲେ । କିନ୍ତୁ ସାକ୍ଷାତ୍‌କାରର ମୌଖିକ ପରୀକ୍ଷା ନ ସରିବା ଯାଏଁ ତ ସାହେବ ନିଯୁକ୍ତି ପତ୍ର ଦେବେ ନାହିଁ । ତେଣୁ ଜଣେ କିରାଣୀର ସାହାଯ୍ୟ ନେଇ ସେମାନେ ଦୁହେଁ ସାକ୍ଷାତକାର ପରୀକ୍ଷା ପାଇଁ ପ୍ରସ୍ତୁତି କରିଥିଲେ ।

ସେ ତୁମକୁ ତୁମ ନାଁ, ତମ ବାପାଙ୍କ ନାଁ, ଜାତି, ଘର କେଉଁଠି ଓ ତମର ବୟସ କେତେ ଇତ୍ୟାଦି ବିଷୟରେ ଜାଣିବାକୁ ପ୍ରଶ୍ନ କରିବେ । ତୁମେ କିନ୍ତୁ ଏସବୁର ଉତ୍ତର ଖୁବ୍ ଚଟାପଟ୍ ଓ ସହଜ ଭାବରେ ଦେବାକୁ ଚେଷ୍ଟା କରିବ ।

ସତକୁ ସତ ପ୍ରସ୍ତୁତି ଅନୁସାରେ ହିଁ ପ୍ରଶ୍ନ ପଚରାଗଲା ।

- ତୁମର ନାମ କଣ ?
- କୃପାସିନ୍ଧୁ ମହାନ୍ତି ।
- ତମ ବାପାଙ୍କ ନାମ ?
- ମୋ ବାପାଙ୍କର ନାମ ମଧୁସୂଦନ ମହାନ୍ତି ।
- ଜାତି ?
- କରଣ ।
- ତମର ଘର କେଉଁଠି ?

ମୋର ଘର ବାଲେଶ୍ୱର ଜିଲ୍ଲାର ରେମୁଣା ପୋଲିସ ଥାନା ଅନ୍ତର୍ଗତ ବାସୁଦେବପୁର ଗାଁରେ ।

- ଆଚ୍ଛା ! ଠିକ୍ ଅଛି କହି ସାହେବ ସାକ୍ଷାତକାର ସାରି ଦେଉ ଦେଉ ପୁଣି ପଚାରି ଦେଲେ-

ହାଓ୍ ଓଲ୍‌ଡ ଆର୍ ୟୁ ? ('How old are you ?')

ଏ ପ୍ରଶ୍ନଟିରେ ହଡ଼ବଡ଼େଇ ଯାଇ କୃପାସିନ୍ଧୁ ବଲ୍‌ବଲ୍ କରି ଉପରକୁ ଚାହିଁରହିଲା। ସାହେବ ପୁଣି ପ୍ରଶ୍ନଟିକୁ ଦୋହରାଇଲେ । ଏଥର କୃପାସିନ୍ଧୁ ପ୍ରଶ୍ନଟିକୁ ବୁଝି ପାରିଲା ସିନା, ଉତ୍ତରଟା ବା କେମିତି ଦେବ ? ମନେମନେ ଭାବିଲା କହିବି

'ମୁଁ ଜମାରୁ ବୁଢ଼ା ହୋଇନାହିଁ- ମୁଁ ଜଣେ ନବଯୁବକ ।' କିନ୍ତୁ ପୁଣି ପରେ ଭାବିଲା ଏକଥା କହିବାଟା କଣ ଉଚିତ୍ ହେବ ? ତେଣୁ ସେ ଚୁପ୍‌ହୋଇ ଖାଲି ଠିଆ ହୋଇ ରହିଲା। ଟିକେ ହସିଦେଇ ସାହେବ ପ୍ରଶ୍ନଟିକୁ ଆଉପ୍ରକାରେ ପଚାରିଲେ ।

'ତମକୁ କେତେ ବୟସ ହେବ ?'

ଏଥର ଯାଇ ଟୋକାର ମୁହଁ ଉଜ୍ଜଳି ଉଠିଲା । ସେ ଉତ୍ତର ଦେଲା ଯେ ତାକୁ ଉଣେଇଶ ବର୍ଷ, ଦିମାସ ଓ ତିନିଦିନ ମାତ୍ର ହୋଇଛି । ସାହେବ ପୁଣି ହସିଲେ ଏବଂ ଚେଆରଟିଏ ଉପରେ ବସିପଡ଼ିଲେ । ଟିକେ ଗାଢେଇ କରି କୃପାସିନ୍ଧୁର ମୁହଁକୁ ଚାହିଁଲେ ଓ କହିଲେ - ତୁମେ ହିଁ ଉପଯୁକ୍ତ । ତୁମକୁ ଆପ୍ରେଣ୍ଟିସ୍ ନିଯୁକ୍ତି ଦିଆଯିବ । କିଛି ବର୍ଷପରେ ଯଦି ସନ୍ତୋଷଜନକ କାର୍ଯ୍ୟ କରିପାରିଲ ତ ତୁମକୁ ବ୍ରିଟିସ୍ ଶାସନ ଅଧୀନସ୍ଥ ଚାକିରୀରେ ସ୍ଥାୟୀ କରାଯିବ ।

ଏକଥା ଶୁଣି ଟୋକା ତ ହାଁ କରି ଅନେଇ ରହିଲା । ସାହେବ ତାର, ଏ ପ୍ରକାର ଅବୁଝାଭାବ ଦେଖି ପିତୃସୁଲଭ ଭଙ୍ଗୀରେ କହିଲେ - ତୁମେ ବୋଧହୁଏ ମୋର କଥାଟିକୁ ଭଲଭାବେ ବୁଝିପାରିଲନି । ସେ ତାଙ୍କର ପୂର୍ବକଥିତ ବକ୍ତବ୍ୟକୁ ପୁଣି ଓଡ଼ିଆରେ ଦୋହରେଇଲେ ।

କଲେକ୍ଟର ଅଫିସର କିରାଣୀଙ୍କୁ ସେ ସବୁବେଳେ କଲେକ୍ଟରଙ୍କର ଚାକର ବୋଲି ଭାବୁଥିଲା । ଏବେ ତେଣୁ ସେ ବୁଝିଗଲା ଯେ ନିଜର ଯୋଗ୍ୟତା ପ୍ରତିପାଦିତ କରି ଦେଖାଇବାକୁ ତାକୁ ଗୋଟାଏ ସୁଯୋଗ ମିଳିଛି । ଯେଉଁଠାରେ କେଉଁ ସୁଦୂରସ୍ଥ ଭାରତେଶ୍ୱରୀ, ଭାରତ ସାମ୍ରାଜ୍ଞୀଙ୍କର ଦେବୀ ତୁଲ୍ୟ ଛତ୍ରଛାୟା ତଳେ କାମ କରିବାର ସୌଭାଗ୍ୟ ସେ ଲାଭ କରିପାରିବ । "ତୁମକୁ ଆସନ୍ତା ମାସ ପହିଲା ତାରିଖରେ ଚାକିରୀରେ ଯୋଗ ଦେବାକୁ ପଡ଼ିବ । ଏବେ ତମେ ଆସିପାର ବୋଲି ସାହେବ ତାକୁ କହିଲେ ।" ଗର୍ବରେ ଫୁଲି ଉଠି କୃପାସିନ୍ଧୁ ସେଠାରୁ ଅପସରି ଗଲା ।

କଲେକ୍ଟରଙ୍କ ଅଫିସରୁ ବାହାରି ସେ କିଛି ପୁରି ଏବଂ ମିଠେଇ କିଣିଲା ଖରାବେଳ ଓ ରାତିରେ ଖାଇବା ପାଇଁ । ତାପରେ ଯାଇ ଗୋଟାଏ ପୋଖରୀରେ ଗାଧେଇ ପଡ଼ି ପୁରିତକ ବସି ଖାଇଲା । ତା'ପରେ ଖରାବେଳର ଗରମରୁ ତ୍ରାହି ପାଇଁ ବିଶ୍ରାମ ନେବାକୁ ଗୋଟାଏ ଗଛ ଛାଇ ଖୋଜିଲା । ଖରାଟିକେ ନଇଁବାରୁ ସେଠାରୁ ଉଠି ଗାଁ ଆଡ଼କୁ ଗୋଡ଼େ ଗୋଡ଼େ ଆଗେଇଲା । ଗାଁରେ ପହଞ୍ଚିବାକୁ ରାତି ହୋଇଯିବ। ରାତିର ଅନ୍ଧାର ଭିତରେ ସେ ରାସ୍ତାକଡ଼ରେ ଟିକେ ବସିଲା ଓ ସାଙ୍ଗରେ ଆଣିଥିବା ମିଠାଇ ତକ ଖାଇ ପାଖରେ ଥିବା ଗୋଟାଏ କୁଡ଼ିଆଘରୁ ପାଣି ମାଗିପିଇଲା । ଟିକେ

ଦମ୍ ନେଇ ପୁଣି ଗୋଡ଼େ ଗୋଡ଼େ ଚାଲିଲା । ଶେଷରେ ବୁଢାବଳଙ୍ଗ ନଈ କୂଳର ନାଆଘାଟରେ ପହଞ୍ଚିଗଲା । ସେଠାରେ ଗୋଟାଏ ଗଛମୂଳେ ରାତିଟା ପାହିବା ଯାଏଁ ଶୋଇଗଲା ।

ଭୋରର ସିନ୍ଦୂରା ଫାଟିବା ଆଗରୁ ସେ ନିଦରୁ ଉଠି ନଈ ପାଣିରେ ମୁହଁ ଧୋଇ ନେଲା । ତା'ପରେ ନାଆ ମଙ୍ଗ ଖୋଲି ନାଉରୀଆ ନୌକା ପାଇଁ ଯାତ୍ରୀ ଯୋଗାଡ଼ କରିବା ଯାକେ ନାଆ ଘାଟରେ ଅପେକ୍ଷା କରି ବସିଲା ।

ଏଇ ବୁଢାବଳଙ୍ଗ ନଈଟା କୃପାସିନ୍ଧୁ ପାଇଁ ଖାଲି କେବଳ ନଈଟିଏ ନ ଥିଲା । ନଈଟାର ଯେମିତି ଥିଲା ଏକ ବିଶାଳ ବ୍ୟକ୍ତିତ୍ୱ । ଖରାଦିନେ ସେ ତାର ସ୍ଫଟିକ ସ୍ୱଚ୍ଛ ଜଳରେ କେତେ ନ ବୁଡ଼ିଚି ! ବର୍ଷାର ଗୋଳିଆ ଜଳରେ କେତେ ଥର ମାଟି କାଦୁଅ ଲତ୍‌ପତ୍ ହୋଇ ଗାଧୋଇଚି । ଏସବୁ ତ ତାର ପିଲାବେଳର ଗାଧୁଆବେଳର ସ୍ମୃତି । ବଳଙ୍ଗର ପାଣିଧାରରେ ସେ ପହଁରା ଶିଖିଛି । ମାଛ ଧରିଛି । ଏଇ ନଈଟି ଯେମିତି ତାର ପରମ ବନ୍ଧୁ, ଜୀବନର ଏକ ଅନିବାର୍ଯ୍ୟ ଅଂଶ ।

କୃପାସିନ୍ଧୁ ଜୀବନର ଆଉ ଏକ ବିଶେଷ ଅଂଗ ହେଲା ପ୍ରତ୍ୟୁଷର କୁହୁଡ଼ିଘେରା ବୁଢାବଳଙ୍ଗ କୂଳର ଗଛଗହଳି ଉହାଡ଼ରେ ଲୁଚି ଯାଇଥିବା ଘଞ୍ଚ ସବୁଜିମାଭରା ତା ନିଜର ଗାଁ । ନୌକାଟି ଯେତେବେଳେ ସେ କୂଳର ନିକଟବର୍ତ୍ତୀ ହେଉଥିଲା କୃପାସିନ୍ଧୁ ସେତେ ପରିଷ୍କାର ଭାବେ ପକ୍ଷ ମେଲାଇ ଚଢ଼େଇ ପରି ଦିଶୁଥିବା ତା ଗାଆଁର ବାଉଁଶବଣ ଓ ଶାନ୍ତସ୍ନିଗ୍ଧ ଆମ୍ବତୋଟା ଆଦିକୁ ଚିହ୍ନିପାରିଲା । ହେଇ, ସେଇ ଦୂରରେ ଯେଉଁ ବଡ଼ ଅଶ୍ୱତ୍ଥ ଗଛଟି ଦିଶୁଚି, ତାରିତଳେ ତା ଗାଁ ଚଷୀମାନେ କାମ ସାରି ଏକତ୍ରିତ ହୋଇଥାନ୍ତି ଓ ଦୁଃଖସୁଖ କଥା ଗପନ୍ତି । ଗାଁର ନଡ଼ିଆ ତାଳଗୁଡ଼ିକ ଡେଙ୍ଗା, ସରଳିଆ ଦିଶୁଥାଏ ତ ଗେଡ଼ା ଖଜୁରୀ ଗଛ ଗୁଡ଼ିକ ବି ସ୍ପଷ୍ଟ ବାରି ହୋଇପଡୁଥାଏ । ତା ଗାଁରେ ପଣସ, ଅମୃତଭଣ୍ଡା ଓ କେନ୍ଦୁପରି ଅନେକ ଫଳ ଗଛ । ନିମ ଗଛ ଓ ବେଲ ପରି କେତେ ଔଷଧିଯୁକ୍ତ ଗଛ ବି ଅଛନ୍ତି ।

ନାଆଟି ଆହୁରି କୂଳର ନିକଟେଇ ଆସିବା ପରେ ତା ଗାଁର କେତୋଟି ମାଟିଘର ଓ ଚାଳଛପର ଘର ଗଛ ସନ୍ଧିରୁ ଦେଖାଗଲା । ଗାଁ ପାଖ ନଈର ଉଚ୍ଚବନ୍ଧରୁ ଗଡ଼ି ଆସିଥିବା ସାରିସାରି ପାହାଡ଼ ଗୁଡ଼ିକ ମଧ୍ୟ ସ୍ପଷ୍ଟ ଦିଶିଲା । ନଈର ଏପଟେ ପୁରୁଷଙ୍କ ପାଇଁ ତୁଠ । ମାଇପି ତୁଠରୁ ସକାଳୁ ସକାଳୁ ସ୍ତ୍ରୀଲୋକମାନେ ଗାଧୋଇ ସାରି ନଦୀ ବନ୍ଧକୁ ଉଠୁ ଥିବାର ବି କୃପାସିନ୍ଧୁ ଦେଖି ପାରିଲା ।

ପୁରୁଷଙ୍କ ଗାଧୁଆ ତୁଠ ପାଖରେ ତେଢାମେଢା କାଠ ପଟା ଖଣ୍ଡମାନ

ଯୋଖାଯାଇ ନାଆଘାଟଟି ନଈ ଭିତର ଯାଏ ଯାଇଥିଲା । ସେଇଠି ଯାଇ ନୌକା ସବୁ ଲାଗୁଥିଲା ।

ନଈବନ୍ଧର ଉପରମୁଣ୍ଡରେ ଥିଲା ଗାଁ ମହାଦେବଙ୍କ ଆସ୍ଥାନ । ଏସବୁ ସ୍ଥାନଗୁଡ଼ିକ କୃପାସିନ୍ଧୁ ଜୀବନର ଗୋଟାଏ ଗୋଟାଏ ଅଂଶ ଥିଲା । ତାର ନିଜ ଘର ଏବଂ ଏହିସ୍ଥାନ ସବୁକୁ ମିଶାଇ ସାମଗ୍ରିକ ଭାବରେ ଥିଲା ତାର ପରିବାର ଓ ଜନ୍ମସ୍ଥାନ, ଯେଉଁଠି କେଉଁକାଳରୁ ତାର ପୂର୍ବପୁରୁଷମାନେ ଘରକରି ରହି ଆସୁଥିଲେ ।

ନଈର ଅଧମାଇଲ ଯାଏ ପ୍ରଖର ସୁଅର ବିପରୀତରେ ଆହୁଲା ମାରିମାରି ନାଉରି କ୍ଳାନ୍ତ ହୋଇ ପଡ଼ିଥିଲା । ଏବେ ଟିକେ ଅନୁକୂଳ ସ୍ରୋତ ହେବାରୁ ସେ ମଂଗ ଧରି ଉଶ୍ୱାସ ହୋଇ ବସିଲା । କୂଳ ତ ପାଖେଇ ଆସିଥିଲା । ତା ଗାଁ ପାଖେ ପାଖେ ନୌକା ଚାଲୁଥିବାବେଳେ କୃପା ତା ଗାଁ ଆଡ଼େ ଚାହିଁ ରହି ଅନେକ କଥା ଭାବି ଯାଉଥିଲା ।

ସେ ବର୍ତ୍ତମାନ ତାର ଜୀବନର ଗୋଟାଏ ମୋଡ଼ରେ ପହଞ୍ଚି ଯାଇଛି । ଏହି ସମୟରେ ସ୍ମୃତି ଉଚ୍ଚାଟନ ହେବା ତ ସ୍ୱତଃସିଦ୍ଧ । ନିଜର ଚିହ୍ନା ପରିଚିତ ଜାଗା ସବୁ ଦେଖିବା ପରେ ସେଇ ସ୍ମୃତିରେ ବଂଚି ରହିବା ସ୍ୱାଭାବିକ କଥା ।

ପ୍ରଥମେ ସେ ତାର ମା'ଙ୍କୁ ମନେ ପକେଇଲା । ପାଞ୍ଚ ବର୍ଷ ତଳୁ ତାର ମାଆକୁ ହରେଇ ସାରିଥିଲେ ବି, ଏଯାଏଁ ତାର ମା'ର ସ୍ମୃତି ତା ମନରେ ସତେଜ, ସୁନ୍ଦର ଓ ସ୍ନିଗ୍ଧହୋଇ ରହିଚି । ତା ମା'ର ସ୍ମୃତି ତା ଭିତରେ ଏତେ ଜୀବନ୍ତ ଯେ କେବେ ସେ କିଛି ଅକାମ କରିବାକୁ ଗଲାବେଳେ ନିଜକୁ ନିଜେ କହେ ନା, ନା, ଏ କାମ ମୋ ମାଆ ପସନ୍ଦ କରନ୍ତି ନାହିଁ । ଏକାମ ମୋର କରିବା କଥା ନୁହେଁ ।

ବାପାକଥା ଭାବିଲେ କୃପାସିନ୍ଧୁ ନିଜକୁ ଗର୍ବିତ ମନେକରେ । କାରଣ ମଧୁସୂଦନ ମହାନ୍ତି ଜଣେ ଶିକ୍ଷିତ ତଥା ସ୍ୱଚ୍ଛଳ ବ୍ୟକ୍ତିତ୍ୱ ଥିଲେ । ଗାଁରେ ସେ ଦଶମାଣ ଜମି ଚାଷକରୁଥିଲେ । ନିଜ ବାଡ଼ିରେ ଅନେକ ଫଳଗଛ ବି ଥିଲା । ତା ଉପରେ, ଜମିଦାରଙ୍କର ଓ ଚାକିରିଆମାନଙ୍କର ହିସାବପତ୍ର କରି କିଛି ସୁନାରୁପା କିଣି ଜମେଇ ରଖି ପାରିଥିଲେ ।

କୃପାସିନ୍ଧୁର ଭାବନା ଏଥର ତାର ଭାଇ ଦୟାନିଧି ଏବଂ ହରିବନ୍ଧୁଙ୍କ ଆଡ଼କୁ ଢଳିଲା । ଖୁବ୍ ଯତ୍ନ ସହକାରେ ତାର ବାପା ଭଗବାନଙ୍କ ନାମ ଅନୁସାରେ ସବୁ ଭାଇଙ୍କ ନାମକରଣ କରିଥିଲେ । ଦୟାନିଧି ଅର୍ଥ କରୁଣାସାଗର, କୃପାସିନ୍ଧୁ ଅର୍ଥ ମହିମାମୟ ଆଉ ହରିବନ୍ଧୁ ଅର୍ଥ ହରିଙ୍କର ବଂଧୁ ଅର୍ଥାତ ଜଗତନାଥ । ସଠିକ ନାମକରଣ

କରିବା ମହତ୍ୱପୂର୍ଣ୍ଣ । କାରଣ ଗୋଟାଏ ଭଲ ନାମ ହିଁ ଲୋକଟି ପାଇଁ ଉତ୍ତମ ଭାଗ୍ୟ ନେଇଆସିପାରେ ବୋଲି ଲୋକଙ୍କର ବିଶ୍ୱାସ ଥିଲା ।

ତାର ଠିକ୍ ମନେ ଥିଲା ଯେ ଯେଉଁଦିନ ବାପା ଦୟାନିଧିକୁ ସ୍କୁଲକୁ ପଠେଇବା କଥା ଘରେ କହିଲେ, ସେ ନିଜେ ବି ଦୟାସାଂଗରେ ସ୍କୁଲ ଯିବାକୁ ଜିଦ୍ କରି ବସିଲା। 'ହଁ, ହଁ ତୋତେ ବି ସ୍କୁଲ ନିଶ୍ଚୟ ପଠେଇବି । କାରଣ ଆମେ ଜାତିରେ କରଣ । ପାଠ ନ ପଢିବା ଆମ ପାଇଁ ପାପ, କିନ୍ତୁ ତୋତେ ତ ଏଯାଏଁ ସାତବର୍ଷ ବି ପୁରିନି ।

କୃପା ଜିଦ୍ ଲଗେଇଲା । ତାର ସାନଭାଇ ହରିବଂଧୁ ବି ସ୍କୁଲ ଯିବାକୁ ଜିଦ୍ କଲା । ତେଣୁ ତିନି ଭାଇ ଯାକ ଏକାଥରେ ସ୍କୁଲ ଗଲେ ।

ସ୍କୁଲ ଯିବାର ବର୍ଷେପରେ ଦିନେ ତାଙ୍କ ବାପା ସେମାନଙ୍କୁ ବ୍ୟଞ୍ଜନ ବର୍ଣ୍ଣ ଲେଖିବାକୁ କହିଲେ । ବର୍ଷେଯାଏଁ ସେମାନେ ସ୍କୁଲରେ ସ୍ୱରବର୍ଣ୍ଣ ବି ଶିଖି ନଥିଲେ । ହରିବନ୍ଧୁ ତ ଛୋଟିଆ ଛୁଆ ଥିଲା ତେଣୁ ଯାତ୍ରୁ ସିଆଡ୍ରୁ ଗାର ଟାଣିଲା । ଦୟାନିଧିର ଅକ୍ଷର ଗୁଡ଼ିକ ତେଢାମେଢା, ଅସୁନ୍ଦର ଓ ଅସ୍ପଷ୍ଟ ଥିଲା କିନ୍ତୁ କୃପା ସୁନ୍ଦର ଅକ୍ଷରରେ ସ୍ପଷ୍ଟ ଛାପା ଅକ୍ଷର ପରି ବ୍ୟଞ୍ଜନବର୍ଣ୍ଣ ଲେଖି ଆଣି ବାପାଙ୍କୁ ଦେଖାଇଥିଲା ।

ପରବର୍ତ୍ତୀ ସ୍ମରଣୀୟ ଘଟଣାଟି ହେଉଚି ତାର ନିଜର ବିବାହ। ତାକୁ ଯେତେବେଳେ ଦଶବର୍ଷ ହୋଇଥିଲା, ସେତେବେଳେ ପାଞ୍ଚବର୍ଷର ଝିଅଟେ ତାର ସ୍ତ୍ରୀ ହୋଇ ଆସିଲା । କଣ ସବୁ ହେଉଚି ବୋଲି ସେ ନିଜେ ମଧ ଭଲକରି ବୁଝି ନଥିଲା। ଖାଲି ନିଜକୁ ଜଣେ ବିଶିଷ୍ଟ ମଣିଷ ବୋଲି ଭାବୁଥିଲା ସେତେବେଳେ। ସେଇ ସୁନ୍ଦର କୁନି ମଣିଷଟିକୁ ତାର ନିଜର, କେବଳ ନିଜର ବୋଲି ଯେତେବେଳେ ସେ ଜାଣିଲା, ସେତେବେଳେ ତାର ଖୁସିର ସୀମା ରହିନଥିଲା । କୁନି ନିର୍ମଳାବାଳା ପରି ଏଡ଼େ ସୁନ୍ଦର, ନରମ, ଚିକ୍କଣିଆ ଗୋଲଗାଲ ମଣିଷଟିଏ ସେ କେବେ ଦେଖି ନଥିଲା । ନିର୍ମଳାବାଳା ବି ପାଠଶାଳା ପଢି ଥିଲା । ବଡ଼ ଗମ୍ଭୀରତା ଓ ସଂଭ୍ରମତାର ସହିତ ସେ ତାର ନୂଆ ଧଳା ଶାଢୀଟିକୁ ନିଜ ଉରିପାଖେ ବେଢାଇ ରଖିଥାଏ ଓ ପ୍ରତ୍ୟେକ ନୂଆ ସମ୍ପର୍କୀୟଙ୍କୁ ଜଣେ ପରେ ଜଣେ କରି ନମସ୍କାର କରୁଥାଏ ।

ଘରେ ପଶୁ ପଶୁ ନିର୍ମଳାବାଳା ତାର ଶ୍ୱଶୁରଙ୍କର ମନ କିଣିନେଲା । ଶ୍ୱଶୁର ବି ଝିଅପରି ତାକୁ ସ୍ନେହ କରିବାକୁ ଲାଗିଲେ। ନିର୍ମଳା ତାଙ୍କୁ ମନେମନେ ବାପା ପରି ସମ୍ମାନ କରିବାକୁ ଲାଗିଲା ଓ ଦୟାନିଧି ଓ ହରିବନ୍ଧୁଙ୍କୁ ଭାଇ ପରି ଭକ୍ତି ଦେଖାଇଲା । କୃପାସିନ୍ଧୁ ପ୍ରତି ସେ କୌଣସି ଅଡୁଆ ସମ୍ପର୍କ ମଧ ପୋଷଣ କରୁନଥିଲା । ତାକୁ ସେ

ଅତି ସହଜରେ ନିଜର ଜଣେ ଖେଳସାଥୀ ଭାବେ ଗ୍ରହଣ କରି ନେଇ ଥିଲା । କୃପା ମଧ୍ୟ ନିର୍ମଳା ସହିତ ଖେଳିବାରେ ଏକ ସ୍ୱତନ୍ତ୍ର ଆନନ୍ଦ ପାଇବାର ମନେକଲା । ଗାଁରେ ଆଉ କେହି ଝିଅ ନଥିଲେ ବୋଲି ନୁହଁ, ମାତ୍ର ନିର୍ମଳା ତୁଳନାରେ ସେମାନେ ନିହାତି ସାଧାରଣ ଥିଲେ । ସେମାନଙ୍କୁ ସେ ପିଲାବେଳୁ ଜାଣିଥିଲା । ଏଇ ଝିଅଟି (ନିର୍ମଳା) କେତେ କୋଶ ଦୂରରୁ ଆସିଥିଲା କେବଳ ତା'ରି ପାଇଁ । ତେଣୁ ସେ କୃପାର ସାଥି ହୋଇ ବଢି ଉଠିବା ବେଳେ ସେମାନେ ପରସ୍ପରକୁ ନିଜ ନିଜ ହୃଦୟର ତନ୍ତ୍ରୀ ତଥା ଛାତିର ସ୍ପନ୍ଦନ ସହିତ ବି ଜଡ଼ିତ କରି ଭଲପାଇବାକୁ ଲାଗିଲେ ।

ଗାଁରେ ତାର ପିଲାଦିନଟି ଶାନ୍ତି ଓ ଆନନ୍ଦରେ ବିତିଥିଲା । ସେଠାରେ ତାର ଜୀବନଟା ଋତୁ । ପରିବର୍ତ୍ତନ ସହ ତାଳ ଦେଇ ଚାଷବାଡ଼ି, ଆଶା ଆନନ୍ଦ, ନିରାନନ୍ଦ ଓ ଅନ୍ୟାନ୍ୟ ବିଭିନ୍ନ ବ୍ୟସ୍ତତାରେ କଟିଗଲା । ଗାଁର ଚାଷୀମାନେ ଚାଷ ଋତୁରେ ଉଦ୍‌ଗ୍ରୀବ ଭାବେ ଆଷାଢସ୍ୟ ପ୍ରଥମ ଦିବସକୁ ଚାହିଁ ରହୁଥିଲେ । ପ୍ରତ୍ୟେକ ବର୍ଷ ଏଇ ବୁଢାବଳଙ୍ଗ ନଈ ଦୁଇକୂଳ ଖାଇ ଉଛୁଳି ଉଠେ । କେତେବେଳେ କେତେକ ଚାଷଜମି, କେବେକେବେ ବି ସାରା ଗାଁଟିକୁ ପାଣିରେ ବୁଡ଼ାଇ ରଖେ । ଆଉ ଯେବେ ବର୍ଷାଥମେ, ବନ୍ୟାଛାଡ଼େ, ଧାନ ଶିଂସାରେ କ୍ଷୀର ଆସିବା ବେଳେ ଚାଷୀମାନେ ପୁଣି ବର୍ଷା ପାଇଁ ଆକୁଳ ହୋଇ ଉଠନ୍ତି ।

ତାପରେ ପରେ ଆସେ ଶୀତଋତୁ, ଅମଳର ଋତୁ । ଏଇଟା ରବି ଫସଲ କରିବାର ଋତୁ। ସେଇମାନଙ୍କ ପାଇଁ, ଯେଉଁମାନଙ୍କର ଚାଷ ଜମି ଶୁଖିଲା ଢିପ ଜମି । ଖରିଫ ଚାଷ ପାଇଁ ଅନୁପଯୁକ୍ତ । ଏଇ ଋତୁ ମଧ୍ୟ ଭଙ୍ଗା ଚାଳ ଛପର ଘର ଛୁଆଣି ଓ ମରାମତରି ସମୟ । ବର୍ଷା ଓ ବନ୍ୟାରେ ଭୁଶୁଡ଼ି ପଡ଼ିଥିବା ଭଙ୍ଗାକାନ୍ଥକୁ ନୂଆକରି ତୋଳିବାର ସମୟ ।

ତାପରେ ହୁଏ ରବିଫସଲର ଅମଳ । ଆମ୍ବ ପଣସର ପ୍ରାଚୂର୍ଯ୍ୟ ଓ ଅସମ୍ଭାଳ ଗରମ ଓ ନିକିମା ପଣର ସମୟ । ଏସମୟରେ ଚାଷୀମାନେ ତାସ୍ ପଶା ଖେଳ ଆଉ ଯାନିଯାତ୍ରାରେ ମଜ୍ଜିଯାଇ ପୁଣି ବର୍ଷା ଋତୁ ଓ ଚାଷବାସର ସମୟ ଆସିବାଯାଏ ଜୀବନକୁ ଉପଭୋଗ କରିବାରେ ଲାଗିପଡ଼ନ୍ତି ।

ସେତେବେଳେ କୃପାସିନ୍ଧୁ ବର୍ଷସାରା ଚାଷୀ ଘରର ଆନନ୍ଦ ଉଠାଉଥିଲା । ଗାଁ ସ୍କୁଲରେ ସେ ପଢାଲେଖା ଶିଖୁଥିଲା । ଚାଷବାସ ବି ଶିଖୁଥିଲା । ଅବଶିଷ୍ଟ ସମୟଟା ନିର୍ମଳାବାଳା ସହିତ କଟାଉ ଥିଲା । କେବେ କେବେ ତାକୁ ମାଛ ଧରିବା ଶିଖାଉଥିଲା ତ କେବେ କେବେ ପହଁରିବା ଶିଖାଉ ଥିଲା ।

# ଦ୍ୱିତୀୟ ପରିଚ୍ଛେଦ

କୃପାସିନ୍ଧୁ ଯେତେବେଳେ କିଛି ଓଡ଼ିଆ ଲେଖାପଢା ଶିଖିଗଲା, ସରଳ ଅଙ୍କ କଷିପାରିଲା ଓ ଇତିହାସ ଓ ଭୂଗୋଳ ପଢିବାକୁ ଆରମ୍ଭ କଲା, ସେତେବେଳେ ଆଗରୁ ଦୟାନିଧି ପଢୁଥିବା ସ୍କୁଲଟିରେ କୃପାସିନ୍ଧୁକୁ ତା ବାପା ଭର୍ତ୍ତି କରିଦେଲେ । ହରିବନ୍ଧୁକୁ ସେ ସ୍କୁଲକୁ ପଠାଇଲେନି କାରଣ ଜମିବାଡ଼ି ରକ୍ଷଣାବେକ୍ଷଣ ଏବଂ ଘରର କାମ ସବୁକୁ ବୁଝାବୁଝି କରିବା ପାଇଁ ତ ଜଣେ ପୁଅ ଘରେ ରହିବା ଦରକାର ।

ଗାଁର ସବୁଠାରୁ ନିକଟତମ ହାଇସ୍କୁଲଟି ଛଅମାଇଲ ଦୂରରେ ଅବସ୍ଥିତ ଥିଲା । ତା'ବି ପୁଣି ଅନ୍ୟ ଗୋଟାଏ ଗାଁରେ । ସେଠାରେ କୃପାସିନ୍ଧୁ ଓ ତାର ଭାଇ ଆଉ ପାଞ୍ଚଜଣ ପିଲାଙ୍କ ସହ ଜଣେ ଶିକ୍ଷକଙ୍କ ତତ୍ତ୍ୱାବଧାନରେ ହଷ୍ଟେଲରେ ରହୁଥିଲେ । କଲିକତା ବିଶ୍ୱବିଦ୍ୟାଳୟର ଶିକ୍ଷା ପ୍ରଣାଳୀ ଏବଂ ସିଲାବସ୍ ଅନୁସାରେ ଏହି ସ୍କୁଲରେ ସେମାନେ ସଂସ୍କୃତ, ଇଂରାଜୀ ଓ ଅନ୍ୟାନ୍ୟ ବିଷୟରେ ପାଠ ପଢୁଥିଲେ । ପ୍ରତିବର୍ଷ ସେମାନେ ଦୁଇଥର ପାଇଁ ଛୁଟିରେ ଘରକୁ ଆସୁଥିଲେ । ଘରକୁ ଆସିଲେ କୃପାର ଦିନଗୁଡ଼ିକ ନଈପହଁରା, ମାଛଧରା ଏବଂ ନିର୍ମଳାବାଳା ସହିତ ଖେଳିବାରେ କଟି ଯାଉଥିଲା ।

ମାତ୍ର ବୟସ ବଢିବା ସଂଗେ ସଂଗେ ନିର୍ମଳାବାଳାକୁ ସେ ନୂଆ ନୂଆ ଭାବରେ ଅନୁଭବ କରିବାକୁ ଲାଗିଲା । ନିର୍ମଳାବାଳା ବି କ୍ରମେ ଆତ୍ମସଚେତନ ହୋଇ ଉଠୁଥିଲା । ସେ ଗୋଟାଏ ବୟସ୍କ ସ୍ତ୍ରୀଲୋକପରି ଦେହର ଉପରଭାଗକୁ ଯତ୍ନର ସହିତ ଆବୃତ କରିରଖିବା ପରି ଢଙ୍ଗରେ ଶାଢୀ ପିନ୍ଧୁଥିଲା । ଏବେ ସେମାନେ ଆଉ ସେତେବେଶୀ ବୁଢାବଳଙ୍ଗକୁ ମାଛ ଧରିବାକୁ ଯାଉ ନ ଥିଲେ । କାରଣ, କାଳେ ସେଠାରେ ଥିବା ଗାଁର ଲୋକେ ସେମାନଙ୍କୁ ଦେଖି ପକେଇବେ । ବରଂ ସେମାନେ ଏବେ ଲୋକଲୋଚନ ଆଢୁଆଳରେ ଜଂଗଲି ପଡ଼ିଆ ବା ଏକାନ୍ତ ସ୍ଥାନମାନଙ୍କରେ ବୁଲାବୁଲି କରିବାକୁ ଭଲ ପାଉଥିଲେ । କୃପା ନିର୍ମଳାର ଶାଢୀ ଭିତରେ ହାତପୂରେଇ ତା ଛାତିରେ କଢଟି କେତେ ବଡ଼ ହେଲାଣି ଜାଣିବାକୁ ଚେଷ୍ଟା କରୁଥିଲା ।

ସେତେବେଳେ କୃପାକୁ ପନ୍ଦରବର୍ଷ ହୋଇଥାଏ । ଥରେ ସେ ଛୁଟିରେ ଗାଁକୁ ଆସିଥିଲା ଆଗଥରମାନଙ୍କ ପରି । କିନ୍ତୁ ତା ସ୍ତ୍ରୀ ସହ ଦେଖାହେବା କଥା ଭାବି ଦେଲାମାତ୍ରେ ତାର ମନ କେମିତି ଗୋଟେ ଆନନ୍ଦରେ କୁରୁଳି ଉଠିଲା । ତେଣୁ ସେ ମନେମନେ ଗୋଟାଏ ଏକାନ୍ତ ସ୍ଥାନ ଖୋଜି ହେଲା ଯେଉଁଠି କି ତା ସ୍ତ୍ରୀ ସହ ମନଭରି

ଖେଳିପାରିବ । ଯେଉଁଠାରେ କି ଅନ୍ୟମାନେ ସେମାନଙ୍କୁ ଦେଖିପାରିବେ ନାହିଁ । ତାର ମନେପଡ଼ିଲା ଯେ ଗାଁର ଅନତି ଦୂରରେ ଜଙ୍ଗଲିଆ ଜାଗାଟିଏ ଅଛି ଓ ତା ମଧ୍ୟରେ ପରିତ୍ୟକ୍ତ ଚର୍ଚ୍ଚଟିଏ ବି ଥିଲା । ଥରେ ସେ ଓ ନିର୍ମଳା ବୁଲୁବୁଲୁ ଜଙ୍ଗଲ ଭିତରେ ସେଇ ସ୍ଥାନକୁ ଆବିଷ୍କାର କରିଥିଲେ । ସେଠାରେ ବଣବୁଦା ମଝିରେ ଏକ ସମତଳ ଘାସୁଆ ସ୍ଥାନ ବି ଥିଲା ଓ ତା ଚାରିକଡ଼େ ବୁଦା ଗୁଡ଼ିକ ଏଡ଼େ ଘଞ୍ଚ ଓ ଗଛଗୁଡ଼ିକର ଡାଳପତ୍ର ବି ଛନ୍ଦାଛନ୍ଦି ହୋଇ ସେଇ ସମତଳ ସ୍ଥାନଟିକୁ ଛାତ ପରି ଛାଇ ହୋଇ ରହିଥିଲା ।

ଖରାବେଳେ, ଘରର ସମସ୍ତେ ବିଶ୍ରାମ କରୁଥିବା ସମୟରେ ସେ ନିର୍ମଳାବାଳାକୁ ନେଇ ସେଠାକୁ ଗଲା । ସାରା ଖରାବେଳଟା ଲୁଗାପଟା ଦେହରୁ ଖୋଲିଦେଇ ସେମାନେ ଖେଳରେ ମଜ୍ଜିଗଲେ । ଦୁହେଁ ଦୁହିଁଙ୍କର ଦେହରେ ବେଢ଼ିହୋଇ ପରସ୍ପରର ଉଷୁମ ମସୃଣ ଦେହକୁ ଅନୁଭବ କରିବାର ଆନନ୍ଦରେ ମଗ୍ନ ରହିଲେ । ଶେଷରେ ପରମ ତୃପ୍ତିର ସହିତ କ୍ଲାନ୍ତ ଶ୍ରାନ୍ତ କୃପାସିନ୍ଧୁ ଘାସର ଶେଯରେ ଗଡ଼ିପଡ଼ିଲା । ତାର ମୁହଁରେ ପରମ ସନ୍ତୋଷର ଏକ ଆନନ୍ଦଭାବ ଉକୁଟି ଉଠୁଥାଏ । ନିଦରେ ସେ ଘୁମେଇ ପଡ଼ିଲା ।

ନିର୍ମଳା ସେମିତି କିଛି ସମୟ ପଡ଼ି ରହିଲା । ଯେତେବେଳେ ସେ ଦେଖିଲା ଯେ ତାର ସ୍ୱାମୀ ଶୋଇ ପଡ଼ିଲେଣି, ସେତେବେଳେ ସେ ଶାଢୀଟିକୁ ପିନ୍ଧିପକେଇ ଘରକୁ ଚାଲିଗଲା । ତାର ଶାଢୀରେ ରକ୍ତଦାଗ ଦେଖି ସେ ଭୟଭୀତା ହୋଇ ପଡ଼ିଥିଲା ।

ନିଦରୁ ଉଠି କୃପାସିନ୍ଧୁ ଧୋତି ପିନ୍ଧିଲା । ବିଜୟ ଆନନ୍ଦରେ ଉଲ୍ଲସିତ ହୋଇ ସେ ଘରମୁହାଁ ହେଲା । ଘରର ପାଖାପାଖି ପହଞ୍ଚିବା ବେଳକୁ ତାକୁ କେମିତି କେମିତି ଅଡୁଆ ଲାଗିଲା । ସେ ଜାଣିଥିଲା ଯେ, ତାର ମା ଥିଲେ କେବେ ଏକଥା ପସନ୍ଦ କରି ନଥାନ୍ତା । କାରଣ, ତାର ପୁଆଣି ଉତ୍ସବ ଅନୁଷ୍ଠିତ ହୋଇନାହିଁ । କିନ୍ତୁ ତାର ବାପା ଏସବୁ କିଛି ଧରିଲେ ନାହିଁ । ନିର୍ମଳାକୁ ତାର ବାପାଘରକୁ ପଠେଇ ଦିଆଗଲା । ତାପରେ ପୁରୋହିତଙ୍କୁ ଡକାଇ ପୁଆଣି ପାଇଁ ଶୁଭଲଗ୍ନ ଠିକ୍ କରାଗଲା । ପୁରୋହିତେ କହିଲେ ଯେ ସେ ବର୍ଷସାରା ଆଉ ଶୁଭଦିନ ନାହିଁ । ବର୍ଷେପରେ ଯାଇ ଲଗ୍ନ ପଡ଼ିବ । ବିଚ୍ଛେଦ ଏବଂ ପ୍ରତୀକ୍ଷା ଚିନ୍ତାରେ କୃପା ମ୍ରିୟମାଣ ହୋଇ ପଡ଼ିଲା । କିନ୍ତୁ ସବୁକିଛି ସହିବା ନିର୍ମଳାବାଳା ପକ୍ଷେ ସମ୍ଭବ ହେଲା କାରଣ ସେ ଦୁହେଁ ପରସ୍ପରକୁ ମନପ୍ରାଣ ଏବଂ ଆତ୍ମାର ବିନିମୟରେ ଏକାନ୍ତ ଭାବେ ଭଲ ପାଉଥିଲେ ଯେ !

ଛୁଟି ଶେଷ ହେବାରୁ କୃପା ସ୍କୁଲକୁ ଫେରିଗଲା । କିନ୍ତୁ ସ୍କୁଲ ଘରଟି ତାକୁ

କେମିତି ଅଲଗା ଅଲଗା ଲାଗିଲା । ପ୍ରକୃତ କଥା ହେଉଛି ସ୍କୁଲ ପରିବେଶ ନୁହେଁ, ସେ ନିଜେ ହିଁ ବଦଳି ଯାଇଥିଲା । ଏବେ ସେ ଆଉ କେବଳ ସ୍କୁଲ ପିଲାଟିଏ ହୋଇ ରହି ନଥିଲା ।

ପରବର୍ଷ ପୁଆଣି ଘର ଅନୁଷ୍ଠିତ ହେଲା । ନିର୍ମଳା ପୁଆଣି ହୋଇ ଶ୍ୱଶୁର ଘରକୁ ଆସିଲା । ଏଘରଟା ଏଣିକି ସାରା ଜୀବନ ପାଇଁ ତାର ନିଜର ନୂଆ ଘର । ଏଣିକି ନିର୍ମଳାର ତାର ସ୍ୱାମୀ ସହ ମିଳନ ସୁଖଦାୟକ ହେଲା କାରଣ ଏବେ ତାଙ୍କୁ ଆଉ କେହି ଦୂରେଇ ରଖିବେ ନାହିଁ । ସେମାନେ ଏଣିକି ଏକତ୍ର ଶୋଇ ପାରିବେ ଏବଂ ମନଇଛା ସହବାସ କରିପାରିବେ ।

ଏହିପରି ଏକ ସମୟରେ ଜଣେ ଅଚିହ୍ନାଲୋକ ଗାଁକୁ ଆସିଲା । କୃପାସିନ୍ଧୁକୁ ତାର ଜୀବନର ପ୍ରଥମ ରାଜନୈତିକ ପରୀକ୍ଷାର ସମ୍ମୁଖୀନ ହେବାକୁ ହେଲା ।

ବେଳ ରତରତ । ଗାଁର ଲୋକମାନେ ଥକ୍କାହୋଇ ବରଗଛ ମୂଳରେ ବସିଥିଲେ। ଆଗନ୍ତୁକଟି ଆସି ସେମାନଙ୍କ ପାଖରେ ବସିଲା ଏବଂ କିଛି କଥାବାର୍ତ୍ତା କରିବାକୁ ଆରମ୍ଭ କଲା । ତା ବକ୍ତବ୍ୟରେ ସେ ମାଗ୍ନାକାର୍ଟା, ବ୍ରିଟିଶ ପାର୍ଲ୍ୟାମେଣ୍ଟ, ରାଜାଚାର୍ଲସ (ଯିଏ ନିଜର ମୁଣ୍ଡ କାଟ କରାଇ ଥିଲେ), କଳାପାଣି ଯାଇଥିବା ରାଜା ଜେମ୍ସ ଏବଂ ଏହିପରି ଅନେକ ପ୍ରସଙ୍ଗର ଅବତାରଣା କରିବାକୁ ଲାଗିଲା । ଯେଉଁଗୁଡ଼ିକ କି ସେଠି ଉପସ୍ଥିତ ଥିବା ଗାଁର ଲୋକମାନଙ୍କୁ ଜଣା ନଥିଲା । କିନ୍ତୁ କୃପାସିନ୍ଧୁ ଏ ସବୁ ବିଷୟରେ ସ୍କୁଲରେ ବହିରୁ ପଢ଼ିଥିଲା । ମାତ୍ର ଆଗନ୍ତୁକ କଣ ପାଇଁ ଓ କେଉଁ ଉଦ୍ଦେଶ୍ୟରେ ସେ ସବୁର ଅବତାରଣା କରୁଥିଲେ ସେକଥା କିଛି ବୁଝିପାରିଲା ନାହିଁ । କାରଣ ସେ କେବେ ବି ଭାବି ନ ଥିଲା ଯେ ଏସବୁ କଥା କେବେ ଦିନେ ତା ଜୀବନକୁ ପ୍ରଭାବିତ କରିବ । ପରୀକ୍ଷାରେ ପାସ୍ କରିବାକୁ ସିନା ଏ ସବୁ କଥା ପଢ଼ିବାକୁ ପଡ଼େ । ତେଣୁ ସେ ସ୍ଥିର ହୋଇ ସବୁକିଛି ଶୁଣିଲା ଓ ପରବର୍ତ୍ତୀ ଘଟଣା କଣ ହେବ ବୋଲି ଆଶ୍ଚର୍ଯ୍ୟ ଆଶଙ୍କାରେ ରହିଲା ।

ଏଇ ଇଂରେଜମାନେ କେବେ ବି କାହା ଅନୁଶାସନରେ ରହିବେ ନାହିଁ । ମାତ୍ର ସେମାନେ କେତେଜଣ ନିର୍ବାଚିତ ଲୋକ ଦ୍ୱାରା ଶାସନ ଚଳାଇବେ ବୋଲି ଲୋକଟି ମନ୍ତବ୍ୟ ଦେଲା । ସେମାନେ ଏକ ସ୍ୱାଧୀନ ଜାତି । ଆମେ ପରାଧୀନ ଓ ଆମେ ସାହେବମାନଙ୍କର ଶାସନାଧୀନ । ଯେଉଁ ଇଂରେଜମାନେ ଏ ଦେଶକୁ ଶାସନ କରିବାକୁ ଆସୁଛନ୍ତି, ସେମାନେ ତାଙ୍କର ପ୍ରତିପତ୍ତି, ଆସନ ଏବଂ ମୋଟା ଅଙ୍କର ଦରମା ଛାଡ଼ି ଫେରି ଯିବାକୁ ଇଛା କରନ୍ତି ନାହିଁ । ମାତ୍ର ଯେଉଁ ଇଂରେଜମାନେ

ଇଂଲଣ୍ଡରେ ଅଛନ୍ତି ସେମାନେ ହୃଦୟବାନ୍। ସ୍ୱାଧୀନତା କଣ ବୋଲି ସେମାନେ ବୁଝନ୍ତି । ତେଣୁ ଆମକୁ ସ୍ୱାଧୀନତା ଦେବାକୁ ସେମାନେ ଅସମ୍ମତ ହେବେ ନାହିଁ, ଯଦି ଆମେ ତାଙ୍କୁ ଠିକ୍ ଭାବରେ ହୃଦବୋଧ କରେଇ ପାରିବୁ ଆମକୁ ସ୍ୱାଧନତା ଦେବା କାହିଁକି ଉଚିତ ବୋଲି । ଆମର ମଧ୍ୟ ନିଜ ଦେଶକୁ ନିଜେ ଶାସନ କରିବାର ଅଧିକାର ନିଶ୍ଚୟ ଅଛି । ଆମ୍ଭେମାନେ ଗୋଟାଏ ଦାସଜାତି ଭଳି ଇଂରେଜମାନଙ୍କ ଦ୍ୱାରା ଶାସିତ ହେବା ଠିକ୍ ନୁହେଁ ।

ଗାଁର କୋଷାଧକ୍ଷ ମଧୁଦାସେ ତାଙ୍କୁ ପଚାରିଲେ, "ତୁମ୍ଭେ କେଉଁଠାରୁ ଆସିଛ ହୋ ।" ମେଦିନୀପୁରର ହିଜିଲି ଜିଲ୍ଲାରୁ ଆସିଛି ବୋଲି ଆଗନ୍ତୁକଟି ଉତ୍ତର ଦେଲା । 'ତେବେ ତୁମକୁ ମଧ ଆମେମାନେ ଜଣେ ବିଦେଶୀ ବୋଲି ଭାବି ତମ ଉପରକୁ ଥୁକିବା କଥା ।' ଏତିକି କହିସାରି ମଧୁଦାସ ସେଇ ଆଗନ୍ତୁକ ଉପରକୁ ମେଞ୍ଚାଏ ଛେପ ଥୁକିଦେଲେ ।

କୃଷ୍ଣ ମହାପାତ୍ର କହିଲେ - ''ଏମିତିକା ମୋଟାସୋଟା ବିଦେଶୀ ଲୋକ ଆମ ଓଡ଼ିଶାରେ ବେଶ୍ ଦେଖାଯାଉଚ୍ଛନ୍ତି । ଚାକିରୀ ଖଣ୍ଡେ ପାଇଁ ଜୀବନସାରା ସେମାନେ ଏଣେତେଣେ ଘୂରି ହେଉଛନ୍ତି ସିନା କିନ୍ତୁ କିଛି ବି ପାଉନାହାନ୍ତି । ଉତ୍ତରରୁ ବଂଗାଳୀ ଓ ଦକ୍ଷିଣରୁ ତେଲୁଗୁମାନେ ଆସି ଆମ ମୁହଁରୁ ଦାନା ଛଡ଼େଇ ନେଉଛନ୍ତି । ତମେ ତମ ନିଜ ଦେଶରେ ରହୁନାହିଁ କାହିଁକି ? ଆମକୁ ଟିକେ ଶାନ୍ତିରେ ବଂଚିବାକୁ ଦେଉନାହଁ କାହିଁକି ?"

କିଛି ଦୂରରେ କେତେଜଣ ନୀଚ୍ ଜାତିର ଲୋକ ଅଲଗେଇ ହୋଇ ବସିଥିଲେ । ଜଣେ ସେଠାରୁ ଠିଆ ହୋଇପଡ଼ି କିଛି କହିବାକୁ ଆରମ୍ଭ କଲା । ସେ ଲୋକଟା ବେଶ୍ ଡ଼େଙ୍ଗା ଏବଂ ତାର କାନ୍ଧ ଚଉଡ଼ା । ତାର ହାତ ଦି'ଟା ବି ବେଶ୍ ଲମ୍ବା ।

ଆଗନ୍ତୁକଟି ତାକୁ ଦେଖି ପଚାରିଲା, "ଏ ତଳଜାତିର ଲୋକଟି କିଏ ?" "ମୁଁ ଜଣେ କେଉଟ ସିନା । ହେଲେ ଗୋଲଗାଲ ଓ ମୋଟାସୋଟା ବଂଗାଳୀଙ୍କଠୁ ମୁଁ ଢେର ଭଲ" - ଲୋକଟି ଉତ୍ତର ଦେଲା ।

ମଧୁଦାସ ମନ୍ତବ୍ୟ ଦେଲେ, "ସେ କେଉଟଟି ଭାରୀ ଭଲ ଲୋକ। ସେ କଣ କହୁଚି ଚାଲ ଶୁଣିବା ।"

କେଉଟ ଜଣକ କହିଲା - 'ଶୁଣ ବାବୁମାନେ, ବିଜୟୀ ସୈନ୍ୟମାନେ ଓଡ଼ିଶାକୁ ଆସିବା ପୂର୍ବରୁ ମରହଟ୍ଟାମାନେ ଏଠୁ ହଟିଗଲେ । ପ୍ରଥମେ ସେମାନେ ଚିଲିକା ହ୍ରଦକୁ ଆସିଲେ । ତାପରେ କେଉଟମାନଙ୍କ ନୌକାରେ ଚଢ଼ି କାଠଯୋଡ଼ୀ ନଈକୂଳେ ଯାଏ

ଆସିଲେ । ସେଠାରେ ମଧ୍ୟ କେଉଟମାନେ ନୌକା ନେଇ ବିଜୟୀ ସୈନ୍ୟମାନଙ୍କୁ ସେମାନଙ୍କ ଜିନିଷପତ୍ର ସହ ସଂଗେ ସଂଗେ ନଈ ପାର କରିଦେଲେ ତ ସୈନ୍ୟମାନେ ଠିକଣା ସମୟରେ ପହଞ୍ଚିଯାଇ ବାରବାଟୀ ଅଧିକାର କରିନେଲେ । ତାପରେ ସୈନ୍ୟମାନଙ୍କର ସେନାପତି ଖୁସିହେଇ କେଉଟମାନଙ୍କୁ ଜାଗିରି ଦେବା ପାଇଁ ନିର୍ଦ୍ଦେଶ ଦେଲେ । ଏବେ ସୁଦ୍ଧା ସେହି କେଉଟମାନଙ୍କର ବଂଶଧରମାନେ ଜାଗିରି ଭୋଗ କରି ଆସୁଛନ୍ତି । ଜାଲ, ନୌକା ଏବଂ ସେହି ଜାଗିରି ଜମିକୁ କେଉଟମାନେ ବିନା କରରେ ଭୋଗ କରୁଛନ୍ତି । ଏବେ ବି ଯଦି ସାହେବମାନେ କହିବେ ତ ଆମେ ତାଙ୍କୁ ଖୁସିରେ ଆମ ନୌକାରେ ନେଇ ନଈ ପାରକରିଦେବୁଁ । ସାହେବମାନଙ୍କର ଶାସନରେ ଆମେ ସନ୍ତୁଷ୍ଟ ଅଛୁ । ସେମାନଙ୍କ ଛଡ଼ା ଅନ୍ୟ କେହି ଆମକୁ ଶାସନ କରନ୍ତୁ, ଏକଥା ଆମେ ଇଚ୍ଛା କରୁନା ।"

ତହୁଁ ସୁନାରି ବଣିଆ ଜନାର୍ଦ୍ଦନ ଜେଠି କହିଲେ, "ମରହଟ୍ଟା ସରଦାର ଅମଳ କଥା ତୁମେ ଶୁଣି ନାହଁକି ? ଓଡ଼ିଆଙ୍କୁ ସେତେବେଳେ କେତେ ଅତ୍ୟାଚାର କରା ହୋଇ ନ ଥିଲା । କେହି ଧନୀ ଓଡ଼ିଆ ଲୋକ ଘିଅ ଖାଇବାର ଦେଖିଲେ ମରହଟ୍ଟାମାନେ ଆସି ରନ୍ଧାପାତ୍ର ଉପରେ ପାଣି ଢାଳି ଦେଉଥିଲେ । ରନ୍ଧାପାତ୍ର ତେଲିଆ ହୋଇଥିବା ଦେଖିଲେ, ସେହି ପରିବାରର ଘର ଚାଳ ଟାଣି, ଚଟାଣ ତାଡ଼ି ପକାଇ ସୁନାରୂପା ଲୁଚହୋଇଥିବା ଜାଗାମାନଙ୍କରୁ ସେ ସବୁ ଖୋଜି ନେଉ ଥିଲେ । ଯଦି କିଛି ପାଇ ନଥିଲେ ତେବେ ସେହି ଘରର ମାଲିକ ଉପରେ ଅତ୍ୟାଚାର କରୁଥିଲେ ଏବଂ ତାଠାରୁ ସତକଥା ଆଦାୟ କରିବା ପର୍ଯ୍ୟନ୍ତ ଅତ୍ୟାଚାର ଚାଲୁ ରହିଥିଲା । ଯଦି ଘରର ରନ୍ଧାପାତ୍ର ତେଲିଆ ନ ହୋଇଥାଏ ତ ସେ ଘରର ମାଲିକ ଗରୀବ ହୋଇଥିବ ଭାବି ତାକୁ ଛାଡ଼ି ଦେଉଥିଲେ ।"

'ଗଡ଼ଜାତମାନଙ୍କରେ କଣ ସବୁ ହେଉଥିଲା , ସେକଥା ଶୁଣିନ କି ?' ଜଣେ ଉତ୍ତର ଦେଲା "ହଁ, ମୁଁ ସେକଥା ଜାଣେ, କାରଣ ମୋର ଝିଅ ନୀଳଗିରିରେ ବାହା ହୋଇଛି । ତାର ଶ୍ୱଶୁର କହୁଥିଲେ ଆଜିକାଲି ରାଜାଙ୍କ ଅନ୍ତେ ତାଙ୍କ ପୁଅ ରାଜା ହେଉଛି । ମରହଟ୍ଟା ସରଦାର ମାନଙ୍କ ଅମଳରେ ରାଜାଙ୍କ ଅନ୍ତେ ରାଜଗାଦୀ ପାଇବାପାଇଁ ଶାସକଙ୍କର ଆଶୀର୍ବାଦ ଏବଂ ଲାଞ୍ଚ ଦ୍ୱାରା କାମ ନିଆ ଯାଉଥିଲା । ତେଣୁ ବହୁ କରଦ ରାଜ୍ୟରେ ଦାସୀପୁତ୍ରମାନେ ମଧ୍ୟ ରାଜା ହୋଇ ଯାଇଥିଲେ ।"

ଯେତେବେଳେ ଏପ୍ରକାର ଅତ୍ୟାଚାର ଏବଂ ଅନାଚାର ସବୁ ଆମ ରାଜ୍ୟରେ

ଚାଲୁଥିଲା ସେତେବେଳେ ବଙ୍ଗାଳୀଏଁ କଣ କରୁଥିଲେ ? ବୋଲି କୃଷ୍ଣ ମହାପାତ୍ର କହିଲେ । "ବିଜୟୀ ସୈନ୍ୟସାମନ୍ତ ଦ୍ୱାରା ତୁମ୍ଭେମାନେ ଆସି ଆମକୁ ମରହଟ୍ଟାଙ୍କ ଦୌରାତ୍ମ୍ୟରୁ ରକ୍ଷା କରୁ ନଥିଲ ତ ?"

ଆଗନ୍ତୁକଟି କିଛି କାମ ହେବନି ଦେଖି ନିରାଶ ହୋଇ ଫେରିଗଲା । କୃପାସିନ୍ଧୁ ଏ ସବୁ ଶୁଣୁଥାଏ ଏବଂ ମନେମନେ ଭାବୁଥାଏ ଯେ ରାଜନୀତିଟା ବଡ଼ ଖରାପ ଜିନିଷ । ନିଜର ଭବିଷ୍ୟତ ଜୀବନରେ ସେ କେବେ ବି ରାଜନୀତିର ପାଖ ମାଡ଼ିବ ନାହିଁ ।

ପରବର୍ଷ କୃପାସିନ୍ଧୁର ପ୍ରଥମ ସନ୍ତାନ ଜନ୍ମ ନେଲା ବେଳେ କୃପାସିନ୍ଧୁ ତଥାପି ସ୍କୁଲରେ ପଢୁଥାଏ । ତାର ବାପା ଚିଠିରେ ତାକୁ ଏ ବିଷୟରେ ଲେଖି ସବୁ ଜଣାଇ ଦେଲେ । ବିଚାରୀ ନିର୍ମଳା ତିନିଦିନ ତିନିରାତି ଧରି ବଡ଼ ଗର୍ଭ କଷ୍ଟ ଭୋଗିଲା । ସମସ୍ତେ ତାର ଜୀବନର ଆଶା ଛାଡ଼ି ଦେଇ ଥିଲେ । କିନ୍ତୁ ଭାଗ୍ୟକୁ ପିଲା ସହିତେ ସେ ବଂଚିଗଲା ସିନା କିନ୍ତୁ ବଡ଼ ଦୁର୍ବଳ ହୋଇ ପଡ଼ିଲା । ସେ ଆଉ ବେଶୀଦିନ ବଂଚିବନି ବୋଲି ସମସ୍ତେ ଧରି ନେଇଥିଲେ ।

ଚିଠିପଢ଼ି କୃପାସିନ୍ଧୁ ହେଡ଼ମାଷ୍ଟରଙ୍କ ପାଖକୁ ଯାଇ ତିନି ଦିନ ପାଇଁ ଛୁଟି ନେଲା । ତାପରେ ସ୍କୁଲ ପାଖରେ ଥିବା ଜଣେ ଡାକ୍ତରଙ୍କ ଘରକୁ ଗଲା ଏବଂ ତାଙ୍କୁ ବେଶ ମୋଟା ଫି ଦେବାର ପ୍ରତିଶ୍ରୁତି ଦେଇ ନିଜ ସାଙ୍ଗରେ ଗାଁକୁ ନେଇଗଲା । ପ୍ରଥମେ ପ୍ରଥମେ ଗୋଟାଏ ପୁରୁଷ ଡାକ୍ତର ଏକ ଉଚ୍ଚ ଜାତିର ବିବାହିତ ସ୍ତ୍ରୀକୁ ପରୀକ୍ଷା କରିବା କଥା ନେଇ ପଡ଼ିଶାମାନେ ଅମଙ୍ଗ ଓ କୁଣ୍ଠିତ ହେଉ ଥିଲେ । କିନ୍ତୁ କୃପା କାହାରି କଥା ଶୁଣିଲା ନାହିଁ । ତା'ର ବାପା ବି ତା ସହିତ ଏକମତ ଥିଲେ ।

ଡାକ୍ତରବାବୁ ନିର୍ମଳାବାଳାକୁ ପରୀକ୍ଷା କରିସାରି ମତ ଦେଲେ ଯେ ସେ ଖୁବ୍ ଦୁର୍ବଳ ହୋଇପଡ଼ିଛି । ତେଣୁ ପୁରାପୁରି ମାସେ ବିଛଣାରେ ପଡ଼ିରହି ଆରାମ କରିବା ଦରକାର । ତାହାଲେ କାଳେ ବଂଚିଯାଇପାରେ । ତାପାଇଁ ସେବାକାରିଣୀଟିଏ ରଖିଲେ ଭଲ ହେବ । କିନ୍ତୁ ପୁଣିଥରେ ସନ୍ତାନ ଧାରଣ କରିବା ତା ପାଇଁ ବିପଦ୍‌ଜନକ ଏବଂ ସେଥିରେ ମରଣର ଆଶଙ୍କା ବି ଅଛି ।

କାନ୍ଦକାନ୍ଦ ହୋଇ କୃପା କହିଲା, ତା'ର ଏମିତି କଣ ହୋଇଛି ? ନବଯୁବତୀମାନେ ଛୁଆ ଜନ୍ମ କରିବା କଣ ନୂଆ କଥା ?

ଡାକ୍ତର ପଚାରିଲେ, "ନିର୍ମଳାର ବୟସ କେତେ ?" ମଧୁସୂଦନ ଉତ୍ତର

ଦେଲେ- ତାକୁ ଏବେ ତେଏର ପୂରିଲା । "ସେଇଥିପାଇଁ ତ ଏତେ କଥା । ଏତେ ଅଳ୍ପ ବୟସରେ ମାଆ ହେବାର ଖୁବ ବିପଦ ।"

ମଧୁସୂଦନ ଯାଇ ଗାଁର ବଣିଆ ଜନାର୍ଜନ ଜେଠୀଠାରୁ ଟଙ୍କା ଆଣି ଡାକ୍ତରଙ୍କର ଫିସ୍ ଦେଲେ । ଗୋଟିଏ ବୁଢ଼ୀ ସ୍ତ୍ରୀଲୋକକୁ କାମ ପାଇଁଟି ପାଇଁ ରଖିଲେ ମଧ୍ୟ ।

ନିର୍ମଳାର କନ୍ୟାସନ୍ତାନଟିଏ ଜନ୍ମ ହୋଇଥିଲା । ତାର ନାମ ନିଶିବାଳା ରଖାଗଲା । ଘରର ସମସ୍ତେ ତାକୁ ଖୁବ ଆଦର କରୁଥିଲେ । କୃପା ଖୁବ୍ ଦରଦଭରା ହୃଦୟରେ ପୁଣି ସ୍କୁଲକୁ ଫେରିଗଲା । ପରବର୍ଷ ମ୍ୟାଟ୍ରିକ ପରୀକ୍ଷା ଦେବାକୁ ସେ କଲିକତା ଗଲା । ପୂର୍ବବର୍ଷ ତାର ଭାଇ ଦୟା ମଧ୍ୟ ମ୍ୟାଟ୍ରିକ ପାଶ୍ କରି ସାରିଥିଲା । ଦୟାନିଧି ଖୁବ୍ ଅଳସୁଆ ସ୍ୱଭାବର ଥିଲା । ଥରେ ଥରେ ସ୍କୁଲରେ ବି ମାଛ ଧରିବାକୁ ପଳେଇ ଯାଉଥିଲା । ମାତ୍ର ସେ ବେଶ୍ ଚତୁର ଥିବାରୁ ପରୀକ୍ଷା ଭଲରେ ଭଲରେ ପାଶ୍ କରିଗଲା । ଏସବୁ ଦେଖି କୃପାର ଆତ୍ମ ବିଶ୍ୱାସ ବଢ଼ି ଯାଇଥିଲା । ସେ ଖୁବ୍ ପରିଶ୍ରମ କରି ପଢ଼ାପଢ଼ି କରୁଥିଲା ଏବଂ ଦୟାନିଧି ପରି ପରୀକ୍ଷାରେ ଭଲ କରିବ ବୋଲି ବିଶ୍ୱାସ ରଖିଥିଲା । ଭଲ କଲା ବି ।

ପରୀକ୍ଷା ଫଳ ବାହାରିବା ପରେ କୃପାସିନ୍ଧୁ ଭାବିଲା ଯେ ଦୟାନିଧି ପରି ସେ ଜମିଦାରଙ୍କ ପାଖକୁ ଯାଇ ତାଙ୍କୁ ସମ୍ମାନ ଜଣେଇବ ଏବଂ ଅଭିନନ୍ଦନ ବି ପାଇବ । କୃପା ସହିତ ତାର ବାପା ବି ଜମିଦାରଙ୍କ ଘରକୁ ଗଲେ ।

ଯଦୁନାଥ ଦାଶ ମହାପାତ୍ର ଜଣେ ପୁରୁଣା କାଳିଆ ମଣିଷ । ଅତି ଭଦ୍ର । ସେ ଏ ଦୁହିଁଙ୍କୁ ସ୍ୱାଗତ କଲେ । ମଧୁସୂଦନ ଜଣେ ଭଲ ଚାଷୀ ଏବଂ ଜମିଦାରଙ୍କର ନିଷ୍ଠାବାନ ଖଜଣାଦାର । ସେ ତାଙ୍କର ଖଜଣା ବାବଦକୁ ଦେୟ ବର୍ଷକରୁ ଅଧିକ କାଳ କେବେ ବି ରଖୁ ନ ଥିଲେ । ଜମିଦାରଙ୍କ ପୁଅ ସୋମନାଥ ମହାପାତ୍ର ଖୁବ୍ ଗର୍ବୀ ଓ ଅହଂକାରୀ ଥିଲା । ସ୍ୱାଗତ ଏବଂ ଅଭିନନ୍ଦନ ପର୍ବପରେ ଯଦୁନାଥ ଅତି ଭଦ୍ର ଭାବରେ ମଧୁସୂଦନଙ୍କୁ ପଚାରିଲେ -

'କେଉଁ ବିଷୟ ନେଇ ତୁମ ପୁଅ ଯୋଗ୍ୟତା ଅର୍ଜନ କଲେ ?'

'ଇଂରାଜୀ'- ମଧୁ ଉତ୍ତର ଦେଲା ।

କୃପା କହିଲା, 'ମୁଁ ଇଂରାଜୀରେ ପରିଷ୍କାର ଭାବେ ଅନର୍ଗଳ କହି ପାରିବି ।'

ଏହା ଶୁଣି ଜମିଦାର ସୋମନାଥଙ୍କୁ ଡାକିଲେ । ସେମାନେ ଏକ ଜାତିର ଏବଂ ସମବୟସ୍କ ବି ଥିଲେ । ତେଣୁ ସେମାନେ କାହିଁକି ସାଙ୍ଗ ହୋଇ ସମାନଭାବେ

ଚଳିବେ ନାହିଁ ?

ତମେ ଇଂରାଜୀରେ କଥା କହି ଜାଣିଚ, ସୋମନାଥବାବୁ ? ସେ ପଚାରିଲେ ସୋମନାଥକୁ ।

'ମୁଁ କ'ଣ ଗରୀବପୁଅ ହୋଇଚି ଯେ ପାତିମାଙ୍କଡ଼ମାନଙ୍କ ଭାଷା ଶିଖିବି ?'

ଯଦୁନାଥ କହିଲେ, 'ମୋ ପୁଅକୁ ମୁଁ ବେଶୀ ପାଠ ପଢେଇ ନାହିଁ, ଦରକାର ବି ନାହିଁ । ସେ ତ ମୋ ଜମିଦାରୀ ସମ୍ଭାଳିବ, ଚାକିରୀ କରିବ କଣ ? କିନ୍ତୁ ଯେଉଁମାନେ ମଧ୍ୟବିତ୍ତ ଶ୍ରେଣୀର, ସେମାନେ ଇଂରାଜୀ ଶିଖିବା ଆବଶ୍ୟକ ଏବଂ ଲାଭଜନକ ।'

ଏଥର ମଧୁସୂଦନ ଓ କୃପାସିନ୍ଧୁ ସେଠାରୁ ଉଠିଲେ । କୃପାର କିନ୍ତୁ ଧାରଣା ହେଲା ଯେ ସୋମନାଥ ବଡ଼ ଉଦ୍ଧତ । ତାର ଏକଥା ମନେ ରହିଲା ଏବଂ ବେଳ ପଡ଼ିଲେ ସେକଥା ବୁଝିବ ବୋଲି ମନେ ମନେ ସ୍ଥିର କଲା ।

ବାଟରେ ନିଜର ଭବିଷ୍ୟତ ବିଷୟରେ କୃପାସିନ୍ଧୁ ତାର ବାପା ସହିତ ଆଲୋଚନା କଲା । 'ବାପା ମୋତେ ପଢ଼େଇବ ତ ? ତାହା ହେଲେ ମୁଁ ଡେପୁଟୀ କଲେକ୍ଟର ହୋଇପାରନ୍ତି ।'

'ନାରେ ବାବୁ । ତା'ତ ଖୁବ୍ ଖର୍ଚ୍ଚସାପେକ୍ଷ । ଆଉ ଗୋଟାଏ କଥା ଡେପୁଟୀ ହେଲେ ମାସକୁ ଦୁଇ ତିନି ଶହ ଟଙ୍କା ଦରମା ମିଳିବ । କିନ୍ତୁ ତୁ କଲେକ୍ଟର ଅଫିସରେ କିରାଣୀ ହେଲେ ଦରମା କମ୍ ମିଳିବ ସିନା, ଉପୁରି ପଇସା କିନ୍ତୁ ବେଶ୍ କମେଇ ହେବ । ମୋତେ ଆଉ ଋଣ କରିବାକୁ ପଡ଼ିବନି । ଗାଁ ଦେବତୀଙ୍କୁ ମାନସିକ କରି ମୁଁ ସ୍ଥିର କରିଛି ଦୟାନିଧିକୁ ପୋଲିସରେ ଭର୍ତ୍ତି କରେଇବି । ସେ ଗୋଟେ ଭଣ୍ଡ ଓ ମିଛୁଆ । ତେଣୁ ସେ ଭଲ ପୋଲିସ ହେବ । ହରି ଘରେ ରହି ପିତୃପୁରୁଷ ଅମଳର ଜମିଜମା ଓ ଘରଦ୍ୱାରର ହେପାଜତ କରିବେ । ସେ ଓ ତାର ସ୍ତ୍ରୀ ବାର୍ଦ୍ଧକ୍ୟରେ ମୋର ସେବା ଯତ୍ନ କରିବେ ।

ତାହାହିଁ ହେଲା । ଦୟାନିଧି ଅଚିରେ ପୋଲିସରେ ସବ୍‌ଇନ୍ସପେକ୍ଟର ଭାବେ ନିଯୁକ୍ତି ପାଇ ପ୍ରୋବେସନରେ ରହିଲା । କୃପା ବର୍ଷଟିଏ ଘରେ ରହି ତାର ସେ ରୋଗିଣୀ ସ୍ତ୍ରୀର ସେବା ଶୁଶ୍ରୂଷା କଲା ଏବଂ କଲେକ୍ଟର ଅଫିସରେ ଚାକିରୀ ଖାଲି ହେବା ଯାଏ ପଢ଼ାପଢ଼ି ଜାରି ରଖିଲା ।

ଏବେ ଗୋଟିଏ ଶୂନ୍ୟ ପୋଷ୍ଟରେ ତାକୁ ନିଯୁକ୍ତି ମିଳିବାରୁ ସେ ବିଦାୟ ସମ୍ଭାଷଣ ନେବାକୁ ଗାଁକୁ ଯାଉଥିଲା । ନାଆ କୂଳରେ ଲାଗିଲା । କୃପା ଉପରମୁହାଁ ହୋଇ ନାଆରୁ ଡେଇଁ ପଡ଼ି ଗାଁ ଆଡ଼େ ମୁହେଁଇଲା ।

# ତୃତୀୟ ପରିଚ୍ଛେଦ

ଯଥା ସମୟରେ କୃପାସିନ୍ଧୁ ବାଲେଶ୍ୱର ଯାଇ କଲେକ୍ଟର ଅଫିସରେ ଯୋଗ ଦେଲା । ପ୍ରଥମେ ସେ ଦୁଇଜଣ କନିଷ୍ଠ କିରାଣୀଙ୍କ ସହିତ ଗୋଟିଏ ବସାରେ ଏକତ୍ର ଅବସ୍ଥାନ କରୁଥିଲା । ସେ ଦୁଇଜଣ ବି ମହାନ୍ତି ଗୋଷ୍ଠୀର ଥିଲେ । ସେମାନଙ୍କର ଦରମା ଖୁବ୍ କମ୍ ଥିବାରୁ ଚାକର ନ ରଖି ହାତେ ରନ୍ଧାବଢ଼ା କରି ସେମାନେ ଚଳିବାକୁ ଲାଗିଲେ । ପ୍ରଥମ ଦିନ ନୂଆ ଧୋତି କୁର୍ତ୍ତା ପିନ୍ଧି ସେ କଚେରୀକୁ ଗଲା । ବାଟରେ ବଡ଼ବାବୁଙ୍କ (ହେଡ୍ କିରାଣୀ) ବସା ଦେଇ ଯାଇ ତାଙ୍କୁ ପାରମ୍ପାରିକ ସମ୍ଭାଷଣ ଜଣାଇବାକୁ ସେ ଭୁଲି ନ ଥିଲା ।

ଏ ବଡ଼ବାବୁ ଜଣକ ବି 'ମହାନ୍ତି' ଥିଲେ । ସେ କୃପାକୁ ନିଜ ସାଙ୍ଗରେ ଯିବାକୁ ଅଟକେଇଲେ । ସେ କହିଲେ ନୂଆ ଚାକିରୀରେ ଯୋଗ ଦେଇଥିବାରୁ ତାକୁ କେତେବେଳେ, କେଉଁଠି ଓ କଣ ସବୁ କରିବାକୁ ହେବ ସେ କଥା ସେ ତାକୁ ବତେଇଦେବେ । ବଡ଼ବାବୁଙ୍କୁ ନିଜର ଜଣେ ଶୁଭେଚ୍ଛୁ ତଥା ବନ୍ଧୁ ଭାବରେ ପାଇଲା ବୋଲି କୃପା ମନେମନେ ଅନୁଭବ କରିବାକୁ ଲାଗିଲା ।

କଲେକ୍ଟର ଅଫିସରେ ପହଞ୍ଚି ବଡ଼ବାବୁ କୃପାକୁ ଇଂରେଜ ଅଫିସକୁ ପଠେଇଦେଲେ । ସେଇଠି ତାର ସାଙ୍ଗ ଖୁର୍ସିଦ ଅଲ୍ଲୀ ସାଙ୍ଗରେ ସେ କାମ କରିବାକୁ ଲାଗିଲା । ଦିନସାରା ବସିବସି ସେ ନିଜର ସୁନ୍ଦର ହସ୍ତାକ୍ଷରରେ ଚିଠି ଗୁଡ଼ିକର ନକଲ ଉତାରିଲା । ସେ ସମୟରେ ବାଲେଶ୍ୱରରେ ଟାଇପ ମେସିନର ପ୍ରଚଳନ ନଥିଲା । ତାପରେ ସେ ପତ୍ରପ୍ରେରକ କିରାଣୀ ସହ ମିଶି ସାଇବଙ୍କ ଦସ୍ତଖତ ହୋଇସାରିଥିବା ଚିଠିଗୁଡ଼ିକ ପଠେଇବାରେ ସାହାଯ୍ୟ କଲା । ଚିଠି ସବୁକୁ ୱାଟରପ୍ରୁଫ ବସ୍ତାରେ ଭରି ସାହେବଙ୍କ ବଙ୍ଗଳାକୁ ପଠେଇଲା । ସେତେବେଳକୁ ପ୍ରାୟ ସମସ୍ତେ ଘରକୁ ଫେରି ଯାଇ ସାରିଥାନ୍ତି । ବଡ଼ବାବୁ କିଂତୁ ସେଯାବତ୍ କାମ କରୁଥିଲେ । ତେଣୁ ତାଙ୍କ ଅନୁମତି ବିନା ସେ ତଥାପି ଘରକୁ ଗଲା ନାହିଁ । ତାକୁ ବଡ଼ବାବୁ ଡାକିକରି କହିଲେ, 'ଦେଖ, ଏଇଟା ଗୋଟିଏ ଜରୁରୀ ଫାଇଲ । ସାଇବଙ୍କ ଦସ୍ତଖତ ପାଇଁ ପ୍ରସ୍ତୁତ ହୋଇ ସାରି ନଥିଲା । ଏବେ ତୁମେ ଯାକୁ ନେଇ ସାହେବଙ୍କ ବଙ୍ଗଳାରେ ଦେଇ ଆସିବ ଏବଂ ଘରକୁ ଯିବ । କାଲି ଅଫିସକୁ ଆସିବାକୁ ଡେ଼ରି ନ କର ଯେମିତି ।'

କୃପାସିନ୍ଧୁ ଫାଇଲଟି ନେଇ ସାହେବଙ୍କ ବଙ୍ଗଳାରେ ପହଞ୍ଚି ସେଇଟାକୁ ତାଙ୍କ ଚପରାଶିକୁ ଦେଇ ଆସିଲା । ବସାକୁ ଫେରିବା ବେଳକୁ ପୂରାପୁରି ଅନ୍ଧାର ଘୋଟି ଯାଇଥିଲା । ଗୋଟାଏ ଶୁନ୍‌ଶାନ୍ ରାସ୍ତାରେ ଏକାକୀ ଯାଉଥିବାବେଳେ ଜଣେ ପୁଲିସ

କନେଷ୍ଟବଲ୍ କାହୁଁ ଆସି ତା ଆଗରେ ଟପକି ପଡ଼ି ତାକୁ ଅଟକେଇ ଦେଲା ଏବଂ ଆଠଅଣା ମାଗିଲା । କୃପା ତାଙ୍କୁ ପଚାରିଲା – 'ମୁଁ ତୁମକୁ କାହିଁକି ଆଠଅଣା ଦେବି ?' 'କାରଣ ତୁମେ ରାସ୍ତାକଡ଼ରେ ପରିସ୍ରା କରୁଥିଲ । ପାଞ୍ଚ ନମ୍ବର ଆଇନ ଅନୁସାରେ ତାହା ଏକ ଅପରାଧ ।' କନେଷ୍ଟବଲ୍ ଉତ୍ତର ଦେଲା ।

କୃପାସିନ୍ଧୁ ସଫେଇ ଦେଇ କହିଲା 'ମୁଁ କିନ୍ତୁ ସେପରି କିଛି କରିନି ତ ?'

'ମାଜିଷ୍ଟ୍ରେଟ୍ ତମ କଥା ବିଶ୍ୱାସ କରିବେ ନା ମୋ କଥା ?' 'ମୁଁ ବି ତ ଜଣେ ସରକାରୀ ଚାକିରୀଆ' – କୃପା କହିଲା ।' ତମେ ବି କଣ ଚାକିରୀ କର ?' 'ମୁଁ କଲେକ୍ଟର ଅଫିସରେ କିରାଣୀ ଶିକ୍ଷା ନବିଶ ଅଛି ।' 'ସେ କ୍ଷେତ୍ରରେ ତୁମକୁ ଚାରିଅଣା ଦେବାକୁ ହେବ ।'

କନେଷ୍ଟବଲ୍‌କୁ ଚାରିଅଣା ବଢ଼େଇ ଦେଇ କୃପା ପାରି ପାଇଗଲା । ଯିବାବେଳେ ମନେମନେ ଘଟଣାଟି ବିଷୟରେ ଭାଳି ହେଲା ଏବଂ ସ୍ଥିର କଲା ଅଧିକ ପଇସା କିପରି ଆୟ କରିହେବ ସେ କଥା ତାକୁ ଶିଖିବାକୁ ହେବ ।

ବର୍ଷେଯାଏଁ ପ୍ରଗାଢ଼ ପରିଶ୍ରମ କରି କୃପା ବେଶ ମନ ଧ୍ୟାନ ଦେଇ କାମ କଲା । ନିଜ ବିଭାଗରେ ତାର ଛୋଟ ଛୋଟ କାମ ସହ ଅନ୍ୟ କାମ ବି କଲା । ଏକାଥରକେ କେବେ ତିନିଦିନ ଛୁଟିମିଳିଲେ ସେ ତାର ବୃଦ୍ଧ ବାପା ଓ ପ୍ରେମମୟୀ ରୋଗୀଣୀ ସ୍ତ୍ରୀକୁ ଦେଖିବାକୁ ପଳାଉ ଥିଲା ।

ଏଇ ବର୍ଷଟି ତାର ସୁଖର ଏବଂ ଆନନ୍ଦର ବର୍ଷ ହେବା କଥା । କିନ୍ତୁ ବର୍ଷଟି ତା ପାଇଁ ପ୍ରଥମେ ଦୁଃଖ ହିଁ ଆଣିଲା ।

ନିର୍ମଳାବାଳାର ଦେହ ସୁସ୍ଥ ହୋଇ ଉଠିବା ପରି ମନେ ହେଲା । ମାତ୍ର ପୁଣି ସେ ଗର୍ଭବତୀ ହେଲା । କିନ୍ତୁ ପ୍ରସବ ସମୟରେ ସନ୍ତାନକୁ ଜନ୍ମଦେବାର ଶକ୍ତି ହରେଇ ବସିଲା ଓ ମୃତ୍ୟୁ ବରଣ କଲା । ଖବରଟି ନିଜ ବାପାଙ୍କ ଚିଠିରୁ ପଢ଼ି ସେ ରାତିସାରା ଓ ତା ପରଦିନଟି ପୁରା କାନ୍ଦି କାନ୍ଦି କଟେଇଲା । ବିନା ଅନୁମତିରେ ଅଫିସରୁ ଅନୁପସ୍ଥିତ ବି ରହିଲା । କିନ୍ତୁ ତାର ଅନୁପସ୍ଥିତି ବିଷୟରେ ସତ୍ୟାସତ୍ୟ ଜାଣିଲା ପରେ କଲେକ୍ଟର ତାକୁ ଦୟାକରି କ୍ଷମା କରିଦେଲେ ।

କାନ୍ଦି କାନ୍ଦି କୃପାର ସବୁ ଲୁହ ସରିଗଲା ପରେ, ସେ ଅଫିସକୁ ଗଲା ସିନା, କିନ୍ତୁ ତାର ମୁହଁରେ ଏକ ଯନ୍ତ୍ରଣାର ଛାଇ ଅନବରତ ଢ଼ାଙ୍କି ହୋଇ ରହିଲା । ଯେଉଁ ଟିକି ବୋହୁଟିକୁ ସେ ପ୍ରାଣଭରି ଭଲ ପାଇଥିଲା, ତାକୁ ସେ ଚିରଦିନ ଲାଗି ହରେଇ ଦେଇ ସାରିଥିଲା । ତାର ଅର୍ଦ୍ଧାଧିକ ଜୀବନ ଯେପରି ହଜିଯାଇ ଥିଲା । କୃପାକୁ

ସେତେବେଳେ ମାତ୍ର କୋଡ଼ିଏ ବର୍ଷ ବୟସ ହୋଇଥିଲା । ଜୀବନର ଆଉ କୋଡ଼ିଏ କି ଚାଳିଶ ବର୍ଷ ବୟସ ସେ କେମିତି ବଂଚିବ ? କିନ୍ତୁ ତା ପଛରେ ଏବେ ବଂଚିବାର ଆୟୁଧ ହୋଇ ନିଶିବାଳା ହିଁ ଅଛି । ଏହି ଘଟଣା ପରେ କୃପା ତାର ଜୀବନରେ ସୁଖ ଅପେକ୍ଷା ପଦୋନ୍ନତି ଓ ଅର୍ଥ ଉପାର୍ଜନରେ ଜୋର ଦେଲା ।

ଏମିତି ଭାବେ ଯଥାକଥା ହୋଇ ସେଇ ବର୍ଷଟାର ଶେଷ ଭାଗକୁ ସେ କେବଳ ଗୋଟାଏ ଗୋଟାଏ ଶୂନ୍ୟ ପୋଷ୍ଟରେ କନିଷ୍ଠ କିରାଣୀ ହୋଇ ଚଳିବା ମାଫିକ୍ ଅର୍ଥ ନୁହେଁ ତାଠାରୁ ଅଧିକ ବେଶ୍ କିଛି ଧନ ପକେଟସ୍ଥ କରି ପାରିଥିଲା । ଯେବେ କାମରେ ସେ କଲେକ୍ଟରଙ୍କ ଘରକୁ ଯାଉଥିଲା, କଲେକ୍ଟରଙ୍କ ସ୍ତ୍ରୀ ଓ ତା ନିଜ ଝିଅ ନିଶିବାଳା ବୟସର କଲେକ୍ଟରଙ୍କ ଝିଅକୁ ଭେଟୁଥିଲା । ଝିଅଟି ସହିତ ତାର ବନ୍ଧୁତା ଜମିଯାଉଥିଲା ଏବଂ ମେମ୍‌ସାହେବ ବି ତାକୁ ବେଶ୍ ଭଦ୍ର ବ୍ୟବହାର ପ୍ରଦର୍ଶନ କରୁଥିଲେ । ଝିଅଟିକୁ କୃପା 'ସଲାମ' କହିଲେ, ଝିଅ ବି ଓଲଟି ସେମିତି କରୁଥିଲା । ତାହା ଦେଖି ମେମ୍‌ସାହେବ କହୁଥିଲେ ଯେ ତାଙ୍କ ଝିଅ ହୁଏତ କୃପାର ଝିଅଟିଏ ଥିବ ବୋଲି ଅନୁମାନ କରିପାରୁଚି । ଝିଅଟି ପ୍ରତି କୃପାର ଶ୍ରଦ୍ଧାଭାବ କ୍ରମେ ବଢୁଥିଲା । ତେଣୁ ସେ ତା ପାଇଁ କେବେ କେବେ ଫୁଲହାର ତିଆରି କରି ଆଣୁଥିଲା । ମେମ୍‌ସାହେବ କୃପାକୁ ସମ୍ବେଦନା ଓ ଦୟାପୂର୍ଣ୍ଣ କଥା କହୁଥିଲେ । ସାହେବଙ୍କ ଝିଅକୁ ତା ମା' ସହିତ ଆନନ୍ଦରେ ରହିବା ଦେଖିଲେ କୃପା ନିଜ ଝିଅଟି କଥା ମନେ ପକାଉଥିଲା । ତାର ସେଇ ମାତୃହୀନା ଝିଅଟିକୁ କେତେ ଦୁଃଖ ହେଉ ନଥିବ ! ତା ନିଜକୁ ମଧ୍ୟ ସେଇ ଯୁବାବୟସରେ ସ୍ତ୍ରୀ ସଙ୍ଗ ବିନା ପିଲାଟି ସହିତ ରହିବାକୁ ପଡୁଚି । ଆସ୍ତେ ଆସ୍ତେ ତାର ମିଜାଜ ଟିକେ ଭିନ୍ନ ରକମର ହୋଇ ଗଲା । କିନ୍ତୁ ସେ ଜଣେ ହିନ୍ଦୁ । ଏଯାଏଁ ତାର ପୁତ୍ରଟିଏ ମଧ୍ୟ ଲାଭ ହୋଇନି ତାର ଆଉଥରେ ବିବାହ କରିବା ଉଚିତ ବୋଲି ବନ୍ଧୁମାନେ ତାକୁ ଯେତେ ବୁଝାଇଲେ ମଧ୍ୟ କୃପା ସେମାନଙ୍କ କଥାରେ କାନ ଦେଲା ନାହିଁ । ଅବଶ୍ୟ ସେ ଦିନେ ବୁଢ଼ା ହୋଇ ଯିବ । କିନ୍ତୁ ଏବେ ତ ସବୁ ଠିକ୍ ଠାକ୍ ଚାଲିଚି ।

ଏ ପ୍ରକାର ମାନସିକତା ବି ଭୟଙ୍କର ହୋଇ ଉଠେ । ବେଳେବେଳେ ସେ ଭୀଷଣ କଜିଆଖୋର ହୋଇ ଉଠୁଥାଏ ତ, କେବେ ସେ ଭୟଙ୍କର କାମନାପୂର୍ଣ୍ଣ ସ୍ୱପ୍ନ ସବୁ ଦେଖେ । ସେଥିପାଇଁ ତାର ଦେହ ମଧ୍ୟ ଖରାପ ହେଉଥାଏ । ଥରେଥରେ ଅଫିସର କାମ ମଧ୍ୟ ଠିକରେ କରିପାରୁ ନଥିଲା ସେ । ଦିନେ ଖୁରସିଦ୍ ଅଲ୍ଲୀ ତାକୁ ବୁଝେଇ ସୁଝେଇ କହିଲା- 'ଆଜି ମୋ ସହିତ ଚାଲ । ତୋର ଖୁସି ଓ ଆନନ୍ଦ

ଦରକାର। ତୋତେ ମୁଁ ଗୋଟାଏ ମଜା କଥା ଦେଖାଇବି ।'

କୃପା ତା ସହିତ ଚାଲିଲା । ପ୍ରଥମେ ସେମାନେ ଭାଟିକୁ ଯାଇ ମଦ ପିଇଲେ । ସେଠାରେ ବହୁତ ଲୋକ ପରସ୍ପର ସହିତ ହସାହସି ହୋଇ କଥା ହେଉଥିଲେ । କୃପାକୁ ସେଠାରେ ଭଲ ଲାଗିଲା । ସେ ଆହୁରି ବେଶୀ ମଦ ପିଇ ମାତାଲ ହୋଇ ଉଠିଲା । ଏଥର ଖୁରସିଦ୍ ଅଲ୍ଲୀ ତାକୁ ଆଉକଣଟିଏ ଦେଖାଇବ ବୋଲି ସାଥୀରେ ତାକି ନେଲା ।

ସେମାନେ ମଦଭାଟିରୁ ବାହାରି ଏକ ଅନ୍ଧାରୁଆଗଳିରେ ପଶି ସାମନାରେ ବଡ଼ବାରଣ୍ଡାଥିବା ଘରଟିଏ ପାଖରେ ପହଞ୍ଚିଲେ । ଦାଣ୍ଡ ବାରଣ୍ଡାରେ ବୋଧହୁଏ ତିନିଜଣ ଯୁବତୀ ବସିଥିଲେ । ନିଜନିଜ କୋଳରେ ହାତଟି ମାନ ରଖି ଏକାନ୍ତ ଉଦାସ ଆଖିରେ ସେମାନେ ସାମନା ରାସ୍ତାକୁ ଚାହିଁ ବସିଥିଲେ । ବାରଣ୍ଡା କଡ଼ରେ ଜଣେ ମୋଟାସୋଟା ଲୋକ ଏକଡ଼ ସେକଡ଼ ହୋଇ ପଦଚାରଣା କରୁଥିଲା । ସେ ଲୋକର ଉପରଭାଗର ଖୋଲା ଛାତି ଓ କାନ୍ଧର ବହଳ ମାଂସପେଶୀ ସବୁ ଦେଖାଯାଉଥିଲା । କୃପା ତାକୁ ଦେଖି ଖୁବ୍ ଡରିଗଲା । ମାତ୍ର ଲୋକଟି ବେଶ୍ ଶାଳୀନତାର ସହ ତା ସହିତ କଥାବାର୍ତ୍ତା କଲା ।

'ଆସନ୍ତୁ ଆସନ୍ତୁ ... । ଏଠାକୁ କେବଳ ଭଦ୍ର ଯୁବକମାନେ ହିଁ ଆସନ୍ତି । ଡରନ୍ତୁ ନାହିଁ ।'

ଏଥର ଏ ଦୁଇଯୁବକ ବାରଣ୍ଡା ଉପରକୁ ଉଠିଲେ । ସେ ତିନିଜଣଯାକ ଝିଅକୁ କୃପା ନିରେଖି ନିରେଖି ଦେଖୁଥିଲା । ପ୍ରଥମ ଝିଅଟି କାଠ ମୂର୍ତ୍ତୀଟିଏ ପରି ନିସ୍ପନ୍ଦ ଦେଖାଯାଉଥିଲା । ଦ୍ୱିତୀୟଟି ମୁହଁ ଓହଳେଇ ତାର ଭାଗ୍ୟଟି କେଉଁଠି ହଜେଇ ଦେଇଥିବା ଭଳି ଅସନ୍ତୁଷ୍ଟ ଭଂଗୀରେ ବସିଥିଲା । କିନ୍ତୁ କାହାରି ଦୟା ପାଇବାର ଉତ୍ସୁକ ଭଂଗୀରେ ତୃତୀୟ ଝିଅଟି ଉତ୍‌କଣ୍ଠିତ ଦେଖା ଯାଉଥିଲା । ତୃତୀୟ ଝିଅଟିକୁ କୃପା ଚାହିଁବାରୁ ସେବି ଅତି ମଧୁର ହସରେ ତାକୁ ଆପ୍ୟାୟିତ କରି ତାର ହାତ ଧରି ଭିତରକୁ ନେଇଗଲା ।

ସେଇ ଚଞ୍ଚଳନୟନା ଝିଅଟିକୁ ପ୍ରତି ସପ୍ତାହରେ କୃପା ଭେଟୁ ଥିଲା । କୃପା ଯେତେବେଳେ କ୍ଳାନ୍ତ ହୋଇ ପଡୁଥିଲା, ଝିଅଟି ତାର ଗୋଡ଼ ଘସି ଦେଉଥିଲା ଓ ତାର ମୁଣ୍ଡ ବିନ୍ଧିଲେ ଝିଅଟି ବାସ୍ନା ଅତର ନେଇ ତାର ନରମ କୋମଳ ଆଂଗୁଠି ଟିପରେ ମୃଦୁ ମଧୁ ଭାବରେ ତା ମୁଣ୍ଡରେ ଚାପ ଦେଇ ଟିପି ଦେଉଥିଲା । ସେଠାରୁ ଫେରିବା ବେଳେ କୃପା ବେଶ୍ ସତେଜ ସୁରଭିତ ଲାଗୁଥିଲା । ଏମିତି ଭାବରେ ତାର

ଅସହଜ ଭାବ ଅଚିରେ ଦୂର ହୋଇଗଲା ଓ ତାକୁ ହସଖୁସି ମିଜାଜରେ ଏଣିକି ଦେଖିବାକୁ ମିଳିଲା । ରାତିରେ ତାକୁ ଶାନ୍ତିରେ ନିଦ ହେଲା ଓ ସେ ଅଫିସରେ ଠିକ୍ ଭାବେ କାମ କରିପାରିଲା । ସମସ୍ତେ ତାକୁ ଭଲପାଇଲେ ।

ଏହିପରି ଭାବରେ ଆଉ ବର୍ଷଟିଏ ବିତିଗଲା ଏବଂ ଅଫିସରେ ଆହୁରି କେତେକ ପଦବୀ ଖାଲି ହୋଇଗଲା । ନବୀଶମାନଙ୍କୁ ସେ ସବୁ ଶୂନ୍ୟସ୍ଥାନ ମାନଙ୍କରେ ଅବସ୍ଥାପିତ କରାଯାଉଥିବାରୁ କୃପାସିନ୍ଧୁକୁ ମଧ ଏକ ବରିଷ୍ଠ ନବୀଶ କିରାଣୀ ପଦ ମିଳିଲା ।

ପରେପରେ ଜଣେ କିରାଣୀ ଅବସର ପାଇ ପେନସନ୍ ନେଲେ। କୃପାସିନ୍ଧୁ ଭାବିଥିଲା ଯେ କଲେକ୍ଟର ନିଶ୍ଚୟ ତାକୁ ସେଇ ପଦବୀରେ ଅବସ୍ଥାପିତ କରିବେ। ଯେଉଁ ବଡ଼ବାବୁ ଜଣକ କୃପାର ବନ୍ଧୁ ଥିଲେ ସେ ମରିଗଲେ। ତାଙ୍କ ସ୍ଥାନରେ ଆଉ ଜଣେ ବଂଗାଳୀବାବୁ ଯୋଗଦେଲେ। ତେଣୁ କୃପାସିନ୍ଧୁର ତାଙ୍କ ଠାରୁ ଏ ଦିଗରେ କିଛି ସାହାଯ୍ୟ ପାଇବାର ଆଶା ନଥିଲା । ରେକର୍ଡ଼ବାବୁ ଜଣକ କଲେକ୍ଟରଙ୍କୁ କହିଲେ ଯେ, ଯେଉଁ ବାବୁ ଜଣକ ଅବସର ନେଲେ ସେ ଜଣେ ମୁସଲମାନ ଥିବାରୁ ପାର୍ଶୀ ଭାଷା ପଢ଼ିପାରୁଥିଲେ। ରେକର୍ଡ ରୁମରେ ପାର୍ଶୀ ରେକର୍ଡ଼ ଥିବାରୁ ତାଙ୍କର ଖାଲି ପଦବୀରେ ଜଣେ ପାର୍ଶୀ ଭାଷା ଜାଣିଥିବା ଲୋକକୁ ନିଯୁକ୍ତି ଦେବା ଠିକ୍ ହେବ। ଏହି ଦୃଷ୍ଟିରୁ ଖୁରସିଦ୍ ଅଲ୍ଲୀ ସେହି ପଦବୀଟି ପାଇଲା । କୃପାସିନ୍ଧୁ ବିଚରା ନିରାଶ ହେଲା।

ଏହି ଘଟଣାରେ ଓଡ଼ିଆ କିରାଣୀମାନେ ଅସନ୍ତୋଷ ପ୍ରକାଶ କଲେ । ସେମାନେ ବଙ୍ଗାଳୀ ବଡ଼ବାବୁଙ୍କୁ ଦୋଷ ଦେଲେ । ଜଣେ ପରେ ଜଣେ କୃପାସିନ୍ଧୁକୁ ଏ ବିଷୟରେ ଉସ୍କେଇଲେ । ଜଣେ କହିଲେ ଯେ ଏବିଷୟଟି ଗୋଟିଏ ମିଟିଂ ଡକାଇ ସ୍ଥିର କରିବା ଉଚିତ୍ ହେବ । ତେଣୁ କୃପାସିନ୍ଧୁ ସେଇ ଚଞ୍ଚଳନୟନା ଝିଅଟି ଘରେ ଯାଇ ସମସ୍ତେ ଗୁପ୍ତମନ୍ତ୍ରଣା କରିବାକୁ ସ୍ଥିର କଲା ।

ସମସ୍ତେ ସେଠାରେ ଉପସ୍ଥିତ ହେଲା ପରେ ଇଂରାଜୀ ଅଫିସରେ କାମ କରୁଥିବା କିରାଣୀ ଭଗବାନ ମହାପାତ୍ର ପ୍ରଥମେ ତାଙ୍କ ବକ୍ତବ୍ୟ ଉପସ୍ଥାପନ କରି କହିଲେ – 'ଏହି ଶଳା ବିଦେଶୀମାନେ ଆମ ଦେଶଟାକୁ ଧ୍ୱଂସ କରିଦେଲେ, ସେମାନେଖାଲି ଭଲ ଭଲ ପଦବୀ ସବୁ ପାଇବେ । ଏଠି ବଡ଼ବାବୁ ଜଣେ ବଙ୍ଗାଳୀ, ସିରସ୍ତାଦାର, କୋଷାଧକ୍ଷ, ନାଜର ଓ ହିସାବରକ୍ଷକ ସମସ୍ତେ ବଙ୍ଗାଳୀ । ରେକର୍ଡ ରକ୍ଷକ ଜଣେ ମୁସଲମାନ, ତାବଦି ନାଭିସ୍‌ବି ଜଣେ ମୁସଲମାନ । ଅବକାରୀ କିରାଣୀ ଜଣେ ତେଲେଗୁ । ବିଭାଗୀୟ ମୁଖ୍ୟମାନଙ୍କ ଭିତରେ କେହି ଜଣେ ବି ଓଡ଼ିଆ ନାହାନ୍ତି ।

ଆମେ ସମସ୍ତେ ଜାଣିଚୁ ଯେ ହରିଦାସ ବୋଷ  ଲାଞ୍ଚ ଖୋର । ତାକୁ ବରଖାସ୍ତ କରିବାକୁ କିଛି ମସୁଧା କରିବା ଦରକାର ।'

ହରିଦାସ ବୋଷ ହେଉଛନ୍ତି ଅଫିସ୍‌ର ସେଇ ବଙ୍ଗାଳୀ ବଡ଼ବାବୁ । ଭଗବାନ ମହାପାତ୍ର ତାଙ୍କରି ସ୍ଥାନଟି ପାଇବାକୁ ଲାଳାୟିତ ଥିଲେ । ଏକଥା ଠିକ୍ ହେବ ବୋଲି କୃପାର ହୃଦବୋଧ ହେଲା । ତାହାହେଲେ ଇଂରେଜୀ ଅଫିସରେ ଗୋଟାଏ ପଦବୀ ଖାଲି ହେବ ଏବଂ ତାକୁ ସେଇ ଗୋଟିକ ମିଳିଯିବ ।

କୃପାସିନ୍ଧୁ ସହିତ ଗୋଟାଏ ବସାରେ ଏକତ୍ର ରହୁଥିବା ବୃନ୍ଦାବନ ଦାସ କହିଲେ ଆମେ ଏମିତି କଲେ ହେବ । ଆମ ଭିତରୁ ଜଣେ ହରିଦାସ ବାବୁଙ୍କ ପାଖକୁ ଯିବ ଏବଂ ଗୋଟାଏ ପାର୍ଟି ପରି ତାଙ୍କୁ ଲାଞ୍ଚ ଯାଚିବ । ହରିଦାସ ବାବୁ ତ ବେଶୀ ଟଙ୍କା ଲାଞ୍ଚ ମାଗିବେ । ତାପରେ ପାଟିଗୋଳ ହେବ । କଣ ପାଇଁ ହୋହଲା ଚାଲିଛି ବୋଲି ଅନ୍ୟକେତେଜଣ ସେଠାକୁ ଦେଖିବାକୁ ଯିବେ ଏବଂ ଏକଥାର ରିପୋର୍ଟ ସାଇବଙ୍କୁ ଜଣାଇବେ ।

ଭଗବାନ ମହାପାତ୍ର କହିଲେ ଯେ ତମେ ସବୁ ବୁଢ଼ା ହେଲେ କଣ ତମର ବୁଦ୍ଧ କିନ୍ତୁ କଅଁଳିବ ? ଆମ ଭିତରୁ କେହି ଗଲେ ସେ ନିଶ୍ଚୟ ଜାଣି ପାରିବେ ଯେ ତାଙ୍କୁ ଖାପଚାରେ ପକେଇବା ପାଇଁ ମସୁଧା ଚାଲିଛି । ବରଂ ଜଣେ ବଙ୍ଗାଳୀଙ୍କୁ ତାଙ୍କ ପାଖକୁ ପଠେଇବା ଠିକ୍ ହେବ ।

ଦୃପାସିନ୍ଧୁ କହିଲା, "ମୁଁ ଗୋଟେ ପ୍ରସ୍ତାବ ଦେଉଚି ଶୁଣ । କେତେକ ବଙ୍ଗାଳୀ ଅଛନ୍ତି ସେମାନେ ନିଜକୁ କେରାବଙ୍ଗାଳୀ ବୋଲି ଭାବନ୍ତି । ବାବୁ ମନ୍ମଥନାଥ ସେନ୍‌ଙ୍କ ପରିବାର ଭଳି ଆଉ କେତେକ ମୋଗଲ ସାମ୍ରାଜ୍ୟ ଅମଳରୁ ଓଡ଼ିଶାରେ ବସବାସ କରି ଆସୁଛନ୍ତି । ସେମାନେ ବଙ୍ଗଳାଭାଷା କହିବା ପ୍ରାୟ ଭୁଲି ବି ଗଲେଣି । ଆମେ ପୂଜା କରୁଥିବା ଦେବଦେବୀଙ୍କୁ ସେମାନେ ପୂଜା କରନ୍ତି । ଏବଂ ଏଇ ନୂଆ ଶରଣାର୍ଥୀ ବଙ୍ଗାଳୀଙ୍କୁ ସେମାନେ ମଧ୍ୟ ଆମ ପରି ଘୃଣା କରନ୍ତି ।"

ବ୍ରଜନାଥ ଦାଶ କହିଲେ, 'ସେ ଗୋଟାଏ ମସ୍ତ ଟାଉଟର । ତାକୁ କଣ ହରିଦାସବାବୁ ବିଶ୍ୱାସକୁ ନେବ ?'

"ହଁ, ସେ ତ ରାସ୍କେଲଟିଏ, କୃପାସିନ୍ଧୁ କହିଲା । କିନ୍ତୁ ସେ ଏହି କାମ ପାଇଁ ପୁରାପୂରି ଯୋଗ୍ୟ । ହରିଦାସଙ୍କ ପାଖରେ ଯାଇ ସେ ବଙ୍ଗାଳୀରେ କଥାବାର୍ତ୍ତା କରିବେ । ପାଟିମାନେ ତ ଏଇ ରାସ୍କେଲ ଓ ଟାଉଟର ମାନଙ୍କୁ ନେଇ ଲାଞ୍ଚ ଦେବାର ଚେଷ୍ଟା ଚଳେଉ ଥାନ୍ତି ନା ।" ଜଣେ କହିଲା, କୃପାସିନ୍ଧୁ ଠିକ୍ କହିଛନ୍ତି ଯେ, ହେଲେ ଗୋଟାଏ

ପାର୍ଟି ଏବେ କେଉଁଠୁ ଯୋଗାଡ଼ କରିବା ପୁଣି ? ଆମକୁ ଜଣେ ପୋଲିସ ଅଫିସରର ସାହାଯ୍ୟ ନେବାକୁ ହେବ, ଯିଏ କି ମହାନ୍ତି ହୋଇଥିବେ ।

'ନା, ନା... ପୋଲିସଠାରୁ ସାହାଯ୍ୟ ନେବା କଥା କୁହନି । ସେମାନେ ହାତଗୁଞ୍ଜା ନ ପାଇଲେ କିଛି କରନ୍ତି ନି । ମନ୍ମଥବାବୁ ଏକାମ କରିବେ କାରଣ ସେ ଶରଣାର୍ଥୀ ମାନଙ୍କୁ ଘୃଣା କରନ୍ତି । ସେ ଯଦି କିଛି ଏପାଇଁ ନେବେ, ସେତେବେଶୀ ନେବେ ନି ନିଶ୍ଚୟ ।'

ସେଇ ଝିଅଟି ଯିଏ ଏହି ଭଦ୍ରଲୋକ ମାନଙ୍କୁ ପାନଗୁଆ ଦେଇ ଆପ୍ୟାୟିତ କରି ଏ ଯାଏ ଚୁପ୍‌ଚାପ ବସି ସବୁ ଶୁଣୁଥିଲା, ସେ କହିଲା- "ମୁଁ ତୁମ୍ଭମାନଙ୍କୁ ଗୋଟାଏ ପାର୍ଟି ଖୋଜି ଦେବି । ମୁଁ ଓକିଲ ମାନଙ୍କର ଟାଉଟର ମାନଙ୍କୁ ଚିହ୍ନେ । ସେମାନେ ପ୍ରଥମେ ସେଇ ପାର୍ଟି ଲୋକଙ୍କୁ ଓକିଲ ପାଖକୁ ନେବା ପରେ, ଏଠାକୁ ଆଣନ୍ତି ତ । ଆଉ କେବେ ସେମାନେ ଏଠାକୁ ଆସନ୍ତି ତ ଆମେ ସେମାନଙ୍କୁ ଓକିଲଙ୍କ ପାଖକୁ ପଠାଇ ଓକିଲଙ୍କଠାରୁ ପାଉଣା ନେଉଁ ।"

ସେମାନଙ୍କ ମଧ୍ୟରେ ଜଣେ ବୁଢ଼ା ମୋହରିର ଥିଲା । ଯେହେତୁ ସେ ଖୁବ୍ କମ୍ ଇଂରେଜୀ ଜାଣିଥିଲା, କଲେକ୍ଟରେଟରେ ଇଂରାଜୀ ନ ଥିବା ବିଭାଗ ମାନଙ୍କରେ ସେ କାମ କରି ଆସୁଥିଲେ । ଇଂରାଜୀ କମ୍ ଜାଣି ଥିଲେ କ'ଣ ହେଲା ତାଙ୍କର ଅନୁଭୂତି ବେଶ୍ ପାକଲ ଥିଲା ।

"ଭାଇମାନେ, ତମର ଏଠି ପାର୍ଟିର ଆବଶ୍ୟକତା କଣ ? ଯାହା ହେଲେ ବି ପାର୍ଟି କେବେ ମାନିବ ନାହିଁ ଯେ ସେ ଲାଞ୍ଚ ଦେବାକୁ ଟାଉଟର ପଠେଇଥିଲା । ତାପରେ ସତ ହେଉ ବା ମିଛ, ତାର କଥା କେହି ବିଶ୍ୱାସ କରିବେ ନାହିଁ । କେହି ପାର୍ଟି ଆମର ଏ ବିଷୟରେ ଅବଗତ ନହେବା ଭଲ । ତୁମର ଖାଲି ଗୋଟାଏ କେଶ୍ ଦରକାର । ବାସ୍ ।"

'ମୁଁ ତୁମ ମାନଙ୍କର କେଶ୍ ଖୋଜି ଦେବି ।' ସେଇ ଝିଅଟି କହିଲା । ସପ୍ତାହକ ପରେ କେଶ୍ ଯୋଗାଡ଼ ହୋଇଚି କି ନାହିଁ ବୋଲି କୃପା ସେଇ ଝିଅଟିକୁ ପଚାରିଲା ।

'ଭଲ କେଶ୍‌ଟିଏ ଠିକ୍ କରିଚି । ଶୁଣ କହୁଚି । ଜଗନ୍ନାଥ ପରିଡ଼ା ବୋଲି ଜଣେ ଧନୀ ଜମିଦାର ଅଛନ୍ତି । ତାଙ୍କର ବାପା ଜଣେ ଗଣ୍ଡଗୋଳିଆ ଲୋକ । ମହାଜନୀ କାରବାର କରି ସେ ବେଶ୍ ଧନ ଜମେଇ ଥିଲେ । ଜମିଦାରୀ ପାଇଲା ପରେ ସେ ବଡ଼ ଉଚ୍ଚାଭିଳାଷୀ ହୋଇ ଉଠିଲେ । ପ୍ରଥମେ ଅଫିସରମାନଙ୍କୁ ତେଲମାଲିସ କରି ଓ ପରେ ଦାନ ସୂତ୍ରରେ ଟଙ୍କା ଦେଇ ସେ ରାଏସାହେବ ଉପାଧି ପାଇଲେ ।

ତାପରେ ଆଉରି ଉଚ୍ଚ ଉପାଧି ପାଇଁ ପଚିଶ ହଜାର ଟଙ୍କା ଦେଇ ସେ ହସ୍‌ପିଟାଲରେ ଏକ ନୂଆ ବିଭାଗ ବି ଖୋଲାଇ ଦେଲେ । ହସ୍‌ପିଟାଲରେ ଏକ ନୂଆ ବିଲଡ଼ିଂ ତିଆରି ହେବା ସମୟରେ ସେ ରାୟବାହାଦୂର ଉପାଧି ପାଇଲେ । ମାତ୍ର କିନ୍ତି ଗୋଟାଏ ଘଟଣା ଥିଲା ଯେଉଁଥିପାଇଁ କି କଲେକ୍ଟର ତାଙ୍କୁ ଏ ଉପାଧି ପ୍ରଦାନ କଲେ । ସେ କଥା କାହାକୁ ଜଣା ନାହିଁ । ଯେତେବେଳେ ନୂଆ ହସ୍‌ପିଟାଲ ବିଲଡ଼ିଂ ତିଆରି ପାଇଁ ଠିକାଦାରୀ ଯୋଗାଡ଼ କଥା ଉଠିଲା ସେତେବେଳେ ଅଳ୍ପ ଟଙ୍କା ଖର୍ଚ୍ଚ କରି ଜଗନ୍ନାଥ ପରିଡ଼ା ତାଙ୍କ ଚାକର ନାଁରେ ଠିକାଦାରୀ ନେଲେ । ଏହିପରି ଭାବରେ ଠିକାଦାରୀରୁ ତାଙ୍କର ଦାନ ପଚିଶ ହଜାରର ଏକଚତୁର୍ଥାଂଶ ସେ ଉଠେଇ ନେଲେ । ସାହେବ ଏକଥା ଜାଣି ଭାରି କ୍ଷୁବ୍ଧ ହେଲେ ଏବଂ କହିଲେ ଯେ ପ୍ରବଞ୍ଚନା କରି ସେ ରାୟବାହାଦୂର ପଦବୀ ହାସଲ କରିଛନ୍ତି । ତେଣୁ ଏଇ ଲୋକକୁ ଆଉ ଉଚ୍ଚ ପଦବୀ ନ ଦେବାକୁ ଏକ ଗୁପ୍ତ ଫାଇଲ ଜରିଆରେ ସେ ପ୍ରସ୍ତାବ ଦେଲେ । ଏବେ ତ ଉପାଧି ପ୍ରଦାନର ସମୟ ହୋଇଛି । ଜଗନ୍ନାଥବାବୁ ରାଜା ଉପାଧି ପାଇଁ ଆଗ୍ରହୀ । ସେଥିପାଇଁ ସେ ବହୁତ ଟଙ୍କା ଭଲ ଭଲ କାମ ପାଇଁ ଖର୍ଚ୍ଚ କରୁଛନ୍ତି ଏବଂ ସାହେବଙ୍କୁ ବଡ଼ ଚଲାଖିରେ ତେଲମାଲିସ୍ କରିଚାଲିଛନ୍ତି । ଏବର ସାହେବ ତ ନୂଆ ଆସିଛନ୍ତି । ତାଙ୍କୁ ସେ ଗୁପ୍ତ ରିପୋର୍ଟ ବିଷୟରେ କିଛି ଜଣା ନାହିଁ । ଏବେ ଯଦି ସେଇ ଗୁପ୍ତ ରିପୋର୍ଟଟି ତାଙ୍କ ନିକଟରେ ଉପସ୍ଥାପିତ କରା ହୁଏ ତ ଜଗନ୍ନାଥ ବାବୁଙ୍କୁ ସାହେବଙ୍କ ସୁପାରିଶ ମିଳିବ ନାହିଁ । ରିପୋର୍ଟଟି ଚପାଇ ଦେବା ବି ଠିକ୍ ହେବ ନାହିଁ । ମାତ୍ର ଜଗନ୍ନାଥ ମହାପାତ୍ର ଯାହା ପାଇବା କଥା ପାଇବେ ।'

କୃପା କହିଲା, 'ନୋଟଟି କେଉଁଠି ଅଛି ସେକଥା ମୁଁ ଜାଣିପାରିବି । ଯେଉଁ ଫାଇଲରେ ଉପାଧି ଦାନ ସଂକ୍ରାନ୍ତୀୟ କାଗଜପତ୍ର ରହିଚି, ସେଇଟି ଗୁପ୍ତ ବିଶ୍ୱାସନୀୟ ଆଲ୍‌ମୀରା ଭିତରେ ଇଂରେଜ ଅଫିସରେ ହିଁ ଅଛି । ତାର ଚାବିକାଠି ହରିଦାସ ବାବୁଙ୍କ ପାଖରେ ଥାଏ । ତେଣୁ ସବୁକଥା ହରିଦାସ ବୋଷଙ୍କ ଉପରେ ନିର୍ଭର କରେ । ତେଣୁ ଜଗନ୍ନାଥ ବାବୁ ହରିଦାସବାବୁଙ୍କୁ ଲାଞ୍ଚ ଯାଚିବା ପାଇଁ କାହାକୁ ପଠାଇବା ଉଚିତ ହେବ । ଆରେ ପ୍ରିୟତମା ତୁମର ଅନନ୍ୟତା, ବିଚକ୍ଷଣତା ଏବଂ ଭଲପଣିଆ ତୁମ ସୁନ୍ଦର ରୂପ ପରି ଆକର୍ଷକ ।'

ତହିଁ ପରଦିନ କୃପା ଭଗବାନ ମହାପାତ୍ରଙ୍କ ପାଖକୁ ଯାଇ ଏସବୁ କହିଲା । ଭଗବାନ ବାବୁ ମନ୍ମଥନାଥ ସେନଙ୍କୁ ଡ଼କେଇ ହରିଦାସ ବୋଷଙ୍କୁ ଖାପଚ଼ରେ ପକେଇବା ପାଇଁ ଯୋଗାଡ଼ ଯନ୍ତ୍ର କଲେ ।

# ଚତୁର୍ଥ ପରିଚ୍ଛେଦ

ଓଡ଼ିଆ କିରାଣୀମାନେ ହରିଦାସ ବୋଷଙ୍କୁ ହରଡ଼ଘଣାରେ ପକେଇବା ପାଇଁ ଏହି ପ୍ରକାର ଯୋଜନାରେ ଲାଗିଲେ ।

ସକାଳେ ଟାଉଟର ମନ୍ମଥ ସେନ ହରିଦାସ ବୋଷଙ୍କ ଘରକୁ ଅଫିସ ଯିବା ସମୟ ପୂର୍ବରୁ ଗଲା । ସେତେବେଳେ ସେନ୍‌ବାବୁ ଘରର ବାରଣ୍ଡା ଉପରେ ରାସ୍ତାକୁ ମୁହଁ କରି ବସିଥିଲେ । ସ୍ୱାଗତ ସମ୍ଭାଷଣ ଶେଷ ହେଲାରୁ ସେ ନିଜ ଆସିବାର ଉଦ୍ଦେଶ୍ୟଟିର ଅବତାରଣା କଲା । "କଲେକ୍ଟର ସାହେବଙ୍କର ଏବେ ତ ନୂଆ ଉପାଧି ଘୋଷଣା କରିବାର ସମୟ । ରାୟବାହାଦୂର ଜଗନ୍ନାଥ ପରିଡ଼ା ଏଥର ରାଜା ଉପାଧି ପାଇଁ ଆଗ୍ରହୀ ।"

ହରିଦାସ ବାବୁ କହିଲେ, 'ହଁ, ଯାହା କରିବା କଥା କଲେକ୍ଟର ନିଶ୍ଚୟ କରିବେ । ମୁଁ ବି ତାଙ୍କୁ ଏ ବିଷୟରେ ସ୍ମରଣ କରେଇ ଦେବି ।' 'ବାବୁ ମାସାୟ, ଖାଲି ମନେପକେଇ ଦେଲେ ଚଳିବ ନାହିଁ । କେତେକ କାରଣ ଅଛି ଯେଉଁଥିପାଇଁ ସେ ଏଥର ଏଇ ଉପାଧି ପାଇଁ ସୁପାରିଶ ପାଇବେ ନାହିଁ ।'

'ତା ପୁଣି କଣ ?'

'ଏ ସଂକ୍ରାନ୍ତରେ ପୂର୍ବତନ କଲେକ୍ଟର ଗୋଟାଏ ଗୁପ୍ତ ରିପୋର୍ଟ ଦେଇଥିଲେ ଯେ ରାୟ ବାହାଦୂର ମହାଶୟ ଆଉ ଅଧିକ ସମ୍ମାନ ଯେପରି ନ ପାଆନ୍ତି । ତେଣୁ ଆପଣ ଚାହିଁଲେ ସେଇ ରିପୋର୍ଟଟି ତାଙ୍କ ପାଇଁ ଚାପିରଖି ଦେଇ ପାରିବେ ।'

'ରାୟ ବାହାଦୂର କଣ ତୁମକୁ ସେଥିପାଇଁ ମୋ ପାଖକୁ ପଠେଇଛନ୍ତି ?'

'ଆଜ୍ଞା, ସେଥିପାଇଁ ସେ ପାଞ୍ଚଶହ ଟଙ୍କା ଦେବାକୁ ବି ରାଜି ଅଛନ୍ତି । ସେ ତ ଜଣେ ଧନୀ ଲୋକ । ହାତୀ ତାଙ୍କର ଅଛି ।'

'ତେବେ ତାଙ୍କୁ କୁହ, ସେ ତାଙ୍କ ଟଙ୍କା ଗୁଡ଼ିକୁ ହାତୀର ପେଟରେ ଠୁସି ଦେବେ ।'

'ଆଚ୍ଛା, ଏମିତି କଣ ଜଣେ ଭଦ୍ରଲୋକକୁ କୁହାଯାଏ ?'

'ତେବେ ସେ ବସନ୍ତମୁହାଁ ଅହଂକାରୀ ଭାବୁଚି କେମିତି ଯେ ଜଣେ ସମାନାସ୍ପଦ ବ୍ୟକ୍ତି ମାତ୍ର ପାଞ୍ଚଶହ ଟଙ୍କା ନେଇ ତାଙ୍କ କଥା ଅନୁସାରେ କାମ କରିଦେବ ?'

'ବାବୁ ଦେଖନ୍ତୁ, ରାୟବାହାଦୂର ଜଣେ ସମ୍ଭ୍ରାନ୍ତ ଜମିଦାରୀ ଏପରି ଗୋଟାଏ ଛୋଟ ଉପକାର କରିବା ଆମ ପାଇଁ ସୌଭାଗ୍ୟ । ଆଉ ତମେ ଏମିତି ଜଣେ କିଏକି

ପାଞ୍ଚଶହ ଟଙ୍କା ତମକୁ ତୁଚ୍ଛ ଲାଗୁଛି ।'

ଏକଥା ଶୁଣି ହରିଦାସ ବାବୁ ନିଜର ମିଜାଜକୁ ଆୟତ୍ତରେ ରଖିପାରିଲେ ନାହିଁ । ଅଶାଳୀନ ଭାଷାରେ କହିବାକୁ ଆରମ୍ଭ କଲେ- 'ଶଳା ବେଶ୍ୟାର ପୁଅ, ତୁ ମୋତେ ଅପମାନ କରିବାକୁ ଏଠିକି ଆସିଚୁ ? ସାବଧାନ ତୋତେ ଗୋଟାଏ ଟାଉଟର ବୋଲି ମୁଁ ସାହେବଙ୍କ ସାମନାରେ ଧରାପକେଇ ଦେବି । ତାପରେ ମନ୍ମଥନାଥ ସେନ୍ ବି ନିଜ ସ୍ୱରକୁ ଏମିତି ଉଚ୍ଚ କରି କହିଲେ ଯେପରିକି ସାକ୍ଷୀମାନେ ଶୁଣିପାରିବେ-

'ହାଏ ହାଏ ବାବୁ, ପାଟି ଚୁପ୍‌କର । ଗୋଟାଏ ଭଦ୍ରଲୋକ ସହିତ ଏଭଳି ଭାବେ କଣ ବ୍ୟବହାର କରାଯାଏ ?'

'କ'ଣ କହିଲୁ ? ତୁଟା ଭଦ୍ର ନା ଭାଡୁଆ ?'

ଠିକ୍ ଏତିକିବେଳେ ସାକ୍ଷୀ ପାଇଁ ପୂର୍ବରୁ ସ୍ଥିର କରାଯାଇଥିବା ଦୁଇଜଣ ଓଡ଼ିଆ କିରାଣୀ ସେଠିକି ପଶିଆସିଲେ । ଗଣ୍ଡଗୋଳ ହେବାଯାଏ ସେମାନେ ରାସ୍ତାକଡ଼ର ଦୂରକୋଣରେ ଅପେକ୍ଷା କରି ରହିଥିଲେ । ଏବେ ସେମାନେ କିଛି ନ ଜାଣିଲା ପରି ବାଟରେ ଯାଉଥିବା ବାଟୋଇ ଭଳି ଢ଼ଙ୍ଗରେ ଆସି ବାରଣ୍ଡା କଡ଼ରେ ଠିଆ ହେଲେ ଓ କହିଲେ -

'କଥା କ'ଣ, ହରିଦାସବାବୁ ? ସେ ଟାଉଟର କଣ ଆପଣଙ୍କୁ ଅପମାନିତ କଲା ?'

ହରିଦାସ ବାବୁ ଉତ୍ତର ଦେଲେ, "ହଁ ତାର ସାହସ ଦେଖ, ମୋତେ ଆସି ଲାଞ୍ଚ ଯାଚୁଚି ହୋ ।"

ମନ୍ମଥ ସେନ୍ କହିଲା, 'ଆଛା, ପାଞ୍ଚଶହ ଟଙ୍କା କଣ କମ୍ ହୋଇଛି ?'

ଓଡ଼ିଆ କିରାଣୀ ୨/୩ଜଣ ମନ୍ତବ୍ୟ ଦେଲେ ଯଦି କିଛି ଟଙ୍କା ଖର୍ଚ୍ଚ କରିବା କଥା ତେବେ ଦି' ଭଦ୍ରପାର୍ଟି ପରସ୍ପର ଭିତରେ ବୁଝାମଣା କରିନେବା ଉଚିତ ।'

"ଯାହା କହିଲେ ବାବୁ, ପାଞ୍ଚଶହ ଟଙ୍କାରେ ନହେଲେ ଜଗନ୍ନାଥ ବାବୁ ଆହୁରି ଅଧିକ ବି ଦେଇ ପାରନ୍ତି । ମୁଁ ତାଙ୍କୁ ହଜାରେ ଟଙ୍କା ଦେବାକୁ କହିବି ।" ମନ୍ମଥସେନ୍ କହିଲା । 'ତମେ ମୋତେ ଯାହା କରିବାକୁ କହୁଚ ସେଥିପାଇଁ ମୁଁ ପାଞ୍ଚ ହଜାରରୁ କଉଡ଼ିଟିଏ ବି କମ୍ ନେବି ନାହିଁ ।'

'ସେ ହୁଏତ ବାରଶହ ବି ଦେଇପାରନ୍ତି ।'

'ମୁଁ ତମ କଥା ଶୁଣିବାକୁ ଚାହେଁନାହିଁ । ପାଞ୍ଚହଜାର ନେବି । ଛଦାମ୍‌ଟିଏ ବି ସେଥିରୁ କମ୍ ହେଲେ ଚଳିବନି ।'

'ପାଞ୍ଚହଜାର ଟଙ୍କା ବହୁତ ବେଶୀ ହେଉଚି'- ଗୋଟାଏ ଭଦ୍ରମାର୍ଜିତ ସ୍ୱର ଏକଥା କହିବାର ଶୁଣାଗଲା ।

ସମସ୍ତେ ତାଜୁବ ହୋଇ ପଛକୁ ଋହିଁଲେ । କାଜି ସାହେବ କେତେବେଳଠାରୁ ସମସ୍ତଙ୍କ ଅଲକ୍ଷ୍ୟରେ ସେଠାରେ ଠିଆ ହୋଇଥିଲେ । ସେ ଜଣେ ଅତିଭଦ୍ର ଓ ଧାର୍ମିକ ବ୍ୟକ୍ତି । କୋରାନ୍ ପଢ଼ିବା ଓ ମୁସଲମାନଙ୍କର ବାହାଘର କରେଇବା ଛଡ଼ା ପୃଥିବୀର ଆଉ କିଛି ସେ ଜାଣି ନଥିଲେ । ବିଜୟୀ ସୈନ୍ୟମାନଙ୍କ ପାଇଁ ଯୁଦ୍ଧବେଳେ କାମ କରିଥିବାରୁ ତାଙ୍କ ଜେଜେବାପାଙ୍କ ଅମଳରେ ତାଙ୍କ ପରିବାରକୁ କିଛି ପେନ୍‌ସନ୍ ମିଳୁଥିଲା । ସେଇ ଟଙ୍କାରେ ସେ ଚଳୁଥିଲେ ।

କାଜିସାହେବ ସେଠାରେ ପହଞ୍ଚିଯିବାଟା ବଡ଼ ସୌଭାଗ୍ୟର କଥା ବୋଲି ମନ୍ମଥନାଥ ଭାବିଲେ । କାରଣ ତାଙ୍କୁ ସମସ୍ତେ ସମ୍ମାନ ଦେଉଥିଲେ ଏବଂ ସେ ଯାହା କହିବେ ତାହା ସାହେବଙ୍କର ବିଶ୍ୱାସକୁ ଆସିବ ।

ଟାଉଟର ମନ୍ମଥ ସେନ୍ ଏବେ କହିଲେ, "ଦେଖନ୍ତୁ କାଜିସାହେବ ଗୋଟେ କାମ କରିଦେବା ପାଇଁ ଏ ବାବୁଙ୍କୁ ପାଞ୍ଚଶହ ଟଙ୍କା ଯାଚିଲିଣି, କିନ୍ତୁ ସେ କହୁଛନ୍ତି କଣ ନା ପାଞ୍ଚହଜାରରୁ ପାହୁଲାଟିଏ ବି କମ୍ ହେଲେ ଚଳିବ ନାହିଁ ।"

"ସେକଥା ତ ତାଙ୍କୁ କହିବାର ଏଇ ମାତ୍ର ମୁଁ ଶୁଣିଲି", କାଜି ଉତ୍ତରଦେଲେ। ହରିଦାସ ବାବୁ ରାଗିଯାଇ କହିଲେ, "ତମେ ଯାଅ କାଜିସାହେବ, ଯାଇ ତମର ପ୍ରାର୍ଥନା କର । ତୁମେ ଜଣେ ସାଧୁସନ୍ଥ ଲୋକ, ଏ ପଇସା ପତ୍ର କଥାରେ ତମର ଯାଏ ଆସେ କେତେ ?"

"ତୁମେ ପାଞ୍ଚହଜାର ଟଙ୍କା ମାଗିବାର ମୁଁ ଶୁଣିଲି । ଏଇ ରକମଟା ଅତି ବେଶୀ ବୋଲି ମୁଁ ମନ୍ତବ୍ୟ ଦେଲି । ତୁମେ ଯାହା କହିଲ, ସେ କଥାରେ ମୋର କଣ ଅଛି ? ମୁଁ ମୋର ପ୍ରାର୍ଥନା ପାଇଁ ଯାଉଚି ।" କାଜି କହିଲେ ।

"ଠିକ୍ ଅଛି । ପାର୍ଟି ପାଖକୁ ଯାଇ ତୁମେ ଯାହା କହିଲ ସେଇ କଥା ତାଙ୍କୁ ଜଣେଇ ଦେଉଚି । ସେ ତାଙ୍କର କେତେ କଣ ଦେଲେ ଦେବେ ।" କାଜିସାହେବ ଋଲିଗଲା ପରେ ଟାଉଟର କହିଲା । ତାପରେ ଓଡ଼ିଆ କିରାଣୀ ଦୁହେଁ ଏବଂ ଟାଉଟର ମନ୍ମଥସେନ୍ ଯେ ଯାହାର ବାଟ ଭାଙ୍ଗି ଋଲିଗଲେ । ଟାଉଟର ଯାଇ ସିଧା ଭଗବାନ ମହାପାତ୍ରଙ୍କ ପାଖରେ ପହଞ୍ଚି ଯିବାରୁ ଦୁହେଁ ମିଶି କଲେକ୍ଟରଙ୍କ ପାଖକୁ ବାହାରିଲେ । କଲେକ୍ଟର ସେମାନଙ୍କର ବୟାନ ନେଲେ । ତାପରେ ସେ ଦି'ଜଣ ଓଡ଼ିଆ କିରାଣୀକୁ ଡକାଇ ସେମାନଙ୍କର ବୟାନ ମଧ ନେଲେ । କାଜିଙ୍କର ବୟାନ ମଧ ନେଲେ ।

ଏସବୁ ପରେ ହରିଦାସ ବୋଷଙ୍କ ବିରୁଦ୍ଧରେ (ପ୍ରୋସିଡିଂ) କାର୍ଯ୍ୟକ୍ରମ ଆରମ୍ଭ ହେଲା। ସେ ନିଲମ୍ବିତ ହେଲେ ଓ ତାଙ୍କ ସ୍ଥାନରେ ଭଗବାନ ମହାପାତ୍ର କାମଚଳା ବଡ଼ବାବୁ ହେଲେ।

ଏସବୁ ପରେ କଲେକ୍ଟର ସାହେବ ଘଟଣାର ଅନୁସନ୍ଧାନ ଚଳେଇଲେ । ସାକ୍ଷୀମାନଙ୍କୁ ବୁଲେଇ ବଙ୍କେଇ ପ୍ରଶ୍ନ କରିବା ପାଇଁ ହରିଦାସ ବାବୁଙ୍କୁ ସୁଯୋଗ ଦେଲେ । ମାତ୍ର ସେମାନେ ପୂର୍ବ ବୟାନରୁ ତିଳେ ବି ବିଚ୍ୟୁତ ନ ହୋଇ ସାକ୍ଷୀ ଦେଲେ କାରଣ ଘଟଣାଟି ତ ସତ ଥିଲା । ରାୟବାହାଦୂରଙ୍କୁ ମଧ୍ୟ ଡିଫେନ୍ସ ସାକ୍ଷୀ ହିସାବରେ ପଚରା ଉଚୁରା କଲେ । ସେ ଜଗନ୍ନାଥଙ୍କୁ ପଠେଇ ନାହାନ୍ତି ଯେତେ ସଫେଇ ଦେଲେ ମଧ୍ୟ କଲେକ୍ଟର ତାଙ୍କ କଥାକୁ ବିଶ୍ୱାସ କଲେ ନାହିଁ । ଅନୁସନ୍ଧାନ ପରେ କଲେକ୍ଟର ହରିଦାସଙ୍କୁ ଲାଞ୍ଚମାଗିବା ଅପରାଧରେ ଚାକିରୀରୁ ବହିଷ୍କାର କଲେ।

ହରିଦାସ ବୋଷ ନିଜର ସମସ୍ତ ଅର୍ଜିତ ସମ୍ପତ୍ତି ନେଇ ଗାଁରେ ଯାଇ ରହିଲେ। ସେଠାରେ ଗୋଟାଏ ଜମିଦାରୀ କିଣିଲେ ସାରାଜୀବନ ସେ ସୁଖଶାନ୍ତି ଓ ସମ୍ମାନର ସହ ପଡ଼ିଶାମାନଙ୍କ ଗହଣରେ ଚଳିଲେ । ଭଗବାନ ମହାପାତ୍ର ବଡ଼ବାବୁ ହେଲେ । ଏପରି ଭାବେ ଜଣେ ପରେ ଜଣେ ଉପରପାହ୍ୟାକୁ ଉନ୍ନୀତ ହେବା ଦ୍ୱାରା ଶେଷ କିରାଣୀ ଆସନଟି ଖାଲି ହେଲା । ସେଠାରେ କୃପାସିନ୍ଧୁକୁ ଅବସ୍ଥାପିତ କରାଗଲା ।

ଅବଶେଷରେ, ଏହିପରି ଭାବରେ କୃପାସିନ୍ଧୁ ଶ୍ରୀ ଭାରତେଶ୍ୱର ଶାସନର ଜଣେ ସ୍ଥାୟୀ ଚାକିରୀଆ ଭାବେ ପରଗଣିତ ହେଲା । ଏହି ଖବରଟି ସେ ସଙ୍ଗେ ସଙ୍ଗେ ତାର ବାପାଙ୍କୁ ଜଣେଇଦେଲା । ବାପା ଏ ଖବର ଶୁଣି ଖୁବ୍ ଗର୍ବୀତ ଓ ଆନନ୍ଦିତ ହେଲେ ।

ବାପାଙ୍କୁ ଖୁସି କରେଇ ପାରି ଥିବାରୁ କୃପାସିନ୍ଧୁ ଉତ୍ଫୁଲ୍ଲ ଥିଲା । ଆଉରି ଖୁସି ସେ ହୋଇ ଥିଲା ତାର ଚାକିରୀଟି ସ୍ଥାୟୀ ହୋଇ ଯାଇଥିବାରୁ । ସେତେବେଳକୁ ସହରର ସମସ୍ତେ ତାକୁ ଚିହ୍ନିସାରିଥିଲେ ଏବଂ ସମ୍ମାନ ଦେଖାଉଥିଲେ । କାରଣ ସେ ଜଣେ ସରକାରୀ ଚାକିରୀଆ ହୋଇଯାଇଥିଲା ।

ଅଳ୍ପ ଦିନ ପରେ ଇଷ୍ଟର ଛୁଟି (ବଡ଼ଦିନ ପରର) ପଡ଼ିବାରୁ କୃପାସିନ୍ଧୁ ଘରକୁ ଗଲା । ଯୋଗକୁ ସେଦିନ ଗାଁରେ ଗୋଟାଏ ସଭା ଡକାଯାଇଥିଲା । ଏଇ ଋତୁରେ ସେମିତି କିଛି ବେଶୀ ଚାଷବାସ କାମ ନ ଥାଏ । ଗ୍ରାମ ସଭାରେ ଗାଁର ମଉଜ ମହୋତ୍ସବ କିପରି ପାଳନ କରାଯିବ, ସେ ବିଷୟରେ ବିଚାର ବିମର୍ଷ ହେଲା । ଜଣେ ଗୋଟାଏ ପ୍ରସ୍ତାବ ଦେଲେ ଆଉଜଣେ ଆଉ ଗୋଟାଏ ପ୍ରସ୍ତାବ ଦେଉଥିଲେ । ଶେଷରେ

ବହୁମତରେ ସ୍ଥିର ହେଲା ଯେ ଗାଁରେ ଏଥର ଜୁଆଖେଳର ଆନନ୍ଦ ନିଆଯିବ ।

ପରବର୍ତ୍ତୀ କାର୍ଯ୍ୟକ୍ରମ ହେଲା ଏପରି ଦୁଇଜଣଙ୍କୁ ବଛାଯିବ ଯେଉଁମାନେ କି ଏଠାକାର କମ୍ପ୍ଲେନାଣ୍ଟ ହେବେ । ପ୍ରଥମେ ଭିକାରୀଚରଣ ପଟ୍ଟନାୟକଙ୍କ ନାମ ଉଠିଲା । ସେ ରାଜି ହେଲେ । ପରବର୍ତ୍ତୀ ଲୋକ ଜଣକ ଯିଏ ବଛା ହେଲେ ସେ ହେଲା କୃପାସିନ୍ଧୁ । କିନ୍ତୁ ସେ ସିଧା ଠିଆ ହୋଇ ଅନିଚ୍ଛା ପ୍ରକାଶ କଲା ଓ ଏମିତି କାମ ତା ଜୀବନରେ କେବେ କରିନାହିଁ ବୋଲି ତାର ଅସହାୟତା ପ୍ରକାଶ କଲା ।

'ହେ ମୋର ପ୍ରିୟ ଗ୍ରାମବାସୀ ଗଣ । ମୁଁ ଏଇ ହାଲି ଜଣେ କିରାଣୀ ରୂପେ ଜିଲା କଲେକ୍ଟରେଟ୍‌ରେ (ଜିଲ୍ଲାପାଳ ଅଫିସରେ) ଯୋଗ ଦେଇଛି । ତେଣୁ ଏହି କାଳ୍ପନିକ ମାମଲାରେ ମୋର ମୁଖ୍ୟ ଅଂଶ ନେବା ଠିକ୍ ହେବ ନାହିଁ । ଯଦି ଗୋଟାଏ ମିଛ କେଶ୍ ଗାଁ ଲୋକଙ୍କ ପାଇଁ କରିବି ତ ମୋ ସାଇବ ମୋତେ ଚାକିରୀରୁ ବରଖାସ୍ତ କରିଦେବେ । ଏକଥା ଗାଁ ପାଇଁ ଅତ୍ୟନ୍ତ ଲଜ୍ଜ୍ୟା ଓ କ୍ଷୋଭର ବିଷୟ ହେବ । ତେଣୁ ମୋତେ ଏ ଦାୟିତ୍ୱରୁ ରିହାତି ଦେବାକୁ ମୁଁ ହାତ ଯୋଡୁଛି ।' ମଧୁସୂଦନ ମଧ ପୁଅପଟ ନେଇ ଠିଆହୋଇ ସେ କଥା ଠିକ୍ ହେବନି ବୋଲି କହିଲେ ।

'ମୋ ପୁଅର ବଡ଼ ଭାଗ୍ୟ ଯେ ସେ ଜଣେ ସରକାରୀ ଚାକିରୀଆ ହୋଇପାରିଛି । ଦିନେ ସେ ଆହୁରି ବଡ଼ଲୋକ ହେବ ଏବଂ ଗାଁର ମାନ ବଢ଼ାଇବ । ଯଦି ସେ ଜଣେ ମାମଲତକାର ବା ମିଛ ମକଦ୍ଦମା ବାଜ ହୋଇ ବଦ୍‌ନାମ ଅର୍ଜନ କରିବ ତ ପ୍ରଥମରୁ ତାର ଏହି ଉଜ୍ଜ୍ୱଳ ଭବିଷ୍ୟତ ନଷ୍ଟ ହୋଇ ଯିବ ।'

ଏକଥାରେ ଜଣେ ଗାଁବାଲା ଉଠିପଡ଼ି କହିଲା, 'ଏଗାଁର ରୀତିନୀତି ଭାଙ୍ଗିବାକୁ କୃପାସିନ୍ଧୁ କିଏ ?'

କୃପାସିନ୍ଧୁ ପୁଣି ଥରେ ଉଠି କହିଲା, "ହେ ମୋର ପ୍ରିୟ ଭାଇମାନେ, ଏଇ ଥରକ ମୋତେ ଯଦି କ୍ଷମା କରିଦେବ ତେବେ ମୁଁ ତୁମମାନଙ୍କ ପାଇଁ ଗୋଟାଏ ଭଲ କାମ ନିଶ୍ଚୟ କରିଦେବି । ମୁଁ ଏଠାକାର ମୁବାଲା ମାନଙ୍କୁ ସହରର ଜଣେ ନାମଜାଦା ଓକିଲଙ୍କ ପାଖକୁ ନେଇ ଯିବି ଯେଉଁଠି ତୁମର ଜମାନବନ୍ଦୀ ସବୁ କେମିତି ବି ଠିକ୍ ଭାବରେ ଲିପିବଦ୍ଧ ହୋଇ ପାରିବ । ସେଇ ବ୍ୟବସ୍ଥାର ଦାୟିତ୍ୱ ମୋର ହେବ । ଟାଉଟରିଆ ଦଲାଲ ମାନଙ୍କ ଅପେକ୍ଷା ଏ କାମଟି ମୁଁ ଢେର ଭଲରେ କରାଇ ଦେବି ଓ ଏଥିପାଇଁ କଉଡ଼ିଟିଏ ମଧ ପାରିଶ୍ରମିକ ନେବି ନାହିଁ ।"

କୃପାର ଏକଥାରେ ଗାଁ ବାଲାଏଁ ସହମତ ହେଲେ । କୃପା ହେଲା ଜଣେ ସରକାରୀ କର୍ମଚାରୀ ତେଣୁ ତାକୁ ରିହାତି ଦିଆଯାଉ । ବ୍ରଜମୋହନ ପଟ୍ଟନାୟକଙ୍କୁ ଏ

କାମ ପାଇଁ ନିର୍ବାଚିତ କରାଗଲା । ପ୍ରତ୍ୟେକ ମୁଦାଲା ସାତଟି ଲେଖାଏଁ ସାକ୍ଷୀ ଯୋଗାଡ଼ କରିବେ ଠିକ୍ ହେଲା ।

ଚାକିରୀ କ୍ଷେତ୍ରରେ ବାଲେଶ୍ୱରକୁ ଫେରିବା ବେଳେ ମୁଦାଲା ଓ ସାକ୍ଷୀମାନେ ତା ସହିତ ଗଲେ । ସହର ବାହାରେ ଥିବା ତୋଟାରେ ସେମାନଙ୍କୁ ଅପେକ୍ଷା କରିବାକୁ କହି ସେ ନିଜେ ଓକିଲ ଖୋଜିବାକୁ ବାହାରିଗଲା । ମୁକ୍ତାରଖାନାକୁ ଯାଇ କହିଲା ଯେ ସେ ସେମାନଙ୍କ ପାଇଁ ମୁଦାଲା ଓ ମୁଦେଇ, ଦିଟାଯାକ ପାର୍ଟି ଆଣିଛି । ଅବଶ୍ୟ ଯେଉଁ ମୁକ୍ତାର ତାକୁ ବେଶୀ ପଇସା ଦେବ ତାଙ୍କୁ ହିଁ ନେଇ ସେମାନଙ୍କୁ ଭେଟେଇବ । ତାପରେ ତୋଟାରେ ଅପେକ୍ଷା କରିଥିବା ମୁଦାଲା ଓ ସାକ୍ଷୀମାନଙ୍କୁ ନେଇ ଉତ୍ସାହୀ ମୁକ୍ତାର ମାନଙ୍କଠାରେ ଜୁଟେଇ ଦେଲା ।

ପ୍ରଥମଥର ପାଇଁ ଏହି ପ୍ରକାରେ କିଛି ଟଙ୍କା କମେଇ ପାରିଥିବାରୁ କୃପାର ଆନନ୍ଦର ଅନ୍ତ ନଥିଲା । ଏଇ ଆୟଟି ପାଇଁ ସେ ଖୁବ୍ ଖୁସି ଥିଲା । କାରଣ, ବ୍ରିଟିଶ ରାଜରେ ଜଣେ ସ୍ଥାୟୀ କର୍ମଚାରୀ ହିସାବରେ ତାର ପ୍ରଥମ ମାସର ଆୟଟାରେ ବଡ଼ବାବୁଙ୍କ ହାତ ଚିକଣେଇବାଟା ବ୍ୟବହାର ସିଦ୍ଧ ନିୟମ ଥିଲା । ଆହୁରି ସେ ଖୁସିଥିଲା ଯେ ତାର ଗାଁ ଭାଇଭଉଣୀମାନେ ତାକୁ ସମ୍ମାନର ସହିତ ମୁଦାଲା ପଣିଆ କରିବାରୁ ରିହାତି ଦେଇଦେଲେ ।

ଏବେ ସେ ଜଣେ ସ୍ଥାୟୀ ସରକାରୀ କର୍ମଚାରୀ ।

## ପଞ୍ଚମ ପରିଚ୍ଛେଦ

କୃପାସିନ୍ଧୁ ସହିତ ତା ମେସ୍‌ରେ ରହୁଥିବା ତାର ଦୁଇଜଣ ବନ୍ଧୁଙ୍କର ମଧ୍ୟ ପଦୋନ୍ନତି ହୋଇ ଗଲା । ତେଣୁ ଅଫିସ କାମ ଠିକ୍ ଭାବେ ତୁଲେଇବା ପାଇଁ ସେମାନେ ଏଣିକି ଘରେ ରୋଷେୟାଟିଏ ରଖିଲେ । ପ୍ରାୟ ଚାରିବର୍ଷ ଧରି କୃପା ଅଫିସରେ ଖୁବ୍ ମନ ଲଗେଇ କାମ କଲା । ତାର ଜୀବନଧାରା ସ୍ୱଚ୍ଛନ୍ଦ ଭାବରେ ଆନନ୍ଦର ସହ ଗଡ଼ିଚାଲିଲା । ଇଂରାଜୀ ଅଫିସରେ ଅବସ୍ଥାପିତ ହୋଇଥିଲେ ମଧ୍ୟ ମଝିରେ ମଝିରେ ଅନ୍ୟ ବିଭାଗମାନଙ୍କୁ ତାକୁ ପଠାହେଉ ଥିଲା । ତେଣୁ ଆସ୍ତେ ଆସ୍ତେ ସେ ଜିଲା କଲେକ୍ଟରେଟରେ ସବୁ ବିଭାଗର କାମରେ ସିଦ୍ଧହସ୍ତ ହୋଇଗଲା ।

ବର୍ଷକୁ ତିନିଥର ସେ ଗାଁକୁ ଯାଉଥିଲା । ଏଇ ଇଷ୍ଟର ଛୁଟି, ପୂଜାଛୁଟି ଏବଂ

ଗ୍ରୀଷ୍ମମାସ ଛୁଟି ଗୁଡ଼ିକ ସେଥିପାଇଁ ଯଥେଷ୍ଟ ଥିଲା । ତେଣୁ ତାର ଆଉ ଅଧିକ ଛୁଟି ନେବା ଲୋଡ଼ା ନ ଥିଲା । ଏଇ ଛୁଟିମାନଙ୍କରେ ତାର ବାପା, ଭାଇ ହରିବନ୍ଧୁ ଏବଂ ପୁଲିସ ଇନ୍ସପେକ୍ଟର ଭାଇ ଦୟାନିଧି ସହ ଦେଖା ହେଉଥିଲା । ତା ଭାଇର ସ୍ତ୍ରୀ ପିଲା ଓ ନିଜ ଝିଅ ନିଶିବାଳାକୁ ମଧ୍ୟଦେଖି ଆସୁଥିଲା । ତାର ପୁରୁଣା ଚିହ୍ନାଜଣା କେତୋଟି ଜାଗା, ପିଲାଦିନେ ଗାଧୋଇବା ଏବଂ ପହଁରି ଶିଖିଥିବା ବୁଢ଼ାବଳଙ୍ଗର ଘାଟ, ଗାଁ ଦେବତୀଙ୍କ ପୀଠ, ଏବଂ ସେଠାରେ ଥିବା ମରହଟ୍ଟା ଅମଳର ଚଉରିକୋଣିଆ କୂଅ ଚନ୍ଦିନୀ ଇତ୍ୟାଦି ସ୍ଥାନ ମାନଙ୍କରେ ବୁଲି ଆସୁଥିଲା । ଏଇ କୂଅଟିର କାନ୍ଥ ଚଉରିକୋଣିଆ ଥିଲା । ଅବଶ୍ୟ ଆଜି କାଲିକାର କୂଅ ଗୁଡ଼ିକର ଆକାର ଗୋଲିଆ ।

ଏବେ ସେ ସବୁ ସ୍ଥାନ ମାନଙ୍କରେ  ବୁଲିବା ବେଳେ ତା ସହିତ ଗୋଟାଏ ଦୁଃଖର ଛାଇ ଯେପରି ଘୂରିବୁଲେ । କାରଣ ପିଲାଦିନେ ନିର୍ମଳାବାଳା ସହିତ ଏ ସବୁ ସ୍ଥାନ ମାନଙ୍କୁ ସେ ଅନେକଥର ଆସିଛି । ଏବେ ତ ସାଙ୍ଗରେ ଆଉ ନିର୍ମଳାବାଳା ନଥିଲା । ଥରେ ଥରେ ଏସବୁ ଜାଗାରେ ବୁଲିଲାବେଳେ ସେଇ ସ୍ମୃତି ତା ଆଖିରେ ଲୁହଭରି ଦିଏ । ଏବେ ପରିବାରଟି ତା ଭାଇମାନଙ୍କ ପିଲାଙ୍କର ହସଖୁସି କଳରୋଳରେ ଉଚ୍ଛୁଳି ଉଠୁଛି । ତଥାପି ତା ଭାଇମାନଙ୍କର ସ୍ତ୍ରୀ ସବୁ ମରିଯାଇ ଥିବାରୁ ଦୁଃଖ ବି କମ୍ ନଥିଲା । ସେମାନେ ମଧ୍ୟ ଅଳ୍ପଦିନରୁ ପିଲାଜନ୍ମ କରିବା ବେଳେ ମରିଥିଲେ । ଅବଶ୍ୟ ଏବେ ତାର ଭାଇମାନେ ପୁଣି ଥରେ ବାହା ହେଲେଣି ।

କୃପାସିନ୍ଧୁଙ୍କୁ ଲାଗେ ଯେ ଘରକୁ ଆସିବାର ଆନନ୍ଦଠାରୁ ତାର ସ୍ମୃତିର ଯନ୍ତ୍ରଣା ହୁଏତ ବେଶୀ ତୀବ୍ର । ପୁନଶ୍ଚ ଯେବେ ସେ ତାର କିରାଣୀ ଜୀବନର ବ୍ୟସ୍ତତା ଭିତରକୁ ଫେରିଯାଏ, ସେତେବେଳେ ସେ ବେଶ୍ ଖୁସି ରହେ ।

ଦିନଟା ସାରା ଅଫିସରେ ସେ କାମରେ ଲାଗିଯାଏ, ସଞ୍ଜବେଳଟା ଅନ୍ୟକିରାଣୀ ମାନଙ୍କ ସହ ଗପସପ କରି, ସିଗାରେଟ୍ ପିଇ ଓ ଗୀତଶୁଣି କଟାଏ । କେବେ କେବେ ସେଇ ଚଞ୍ଚଳନୟନା ଝିଅଟି ପାଖକୁ ବି ଯାଏ । ସ୍ୱାସ୍ଥ୍ୟ ଠିକ୍ ରଖିବାକୁ ସେ କେବେ କେବେ ବୁଲିଯାଏ । ମାଛ ଧରିବା ସେ ଛାଡ଼ି ଦେଇଥିଲା । କାରଣ ନିର୍ମଳାବାଳାର ସ୍ମୃତି ତାକୁ ମାଛଧରିବା ବେଳେ ଭୀଷଣ ଯନ୍ତ୍ରଣା ଦିଏ ।

ନୂଆ ଜୀବନର ଗତାନୁଗତିକତା ଏବଂ ନିରାପତ୍ତା ତାକୁ ଖୁସି ରହିବା ପାଇଁ ଖୋରାକ ଯୋଗାଉଥିଲା । ସେ ଯେ ସୁଖି ଥିଲା କି ନଥିଲା, ସେକଥା ସେ ହିଁ ଜାଣେ । ବରଂ ସେ ଭାବୁଥିଲା ଯେ ଘରକୁ ଯାଇ ଆଉ ଦୁଃଖରେ ମୋହ୍ୟମାନ ହେବା ଠିକ୍ ହେବନି । ତେଣୁ ସେ ଠିକ୍ କଲା ଯେ ଏଣିକି ସେ ଇଷ୍ଟର ଛୁଟି ବେଳେ ଅଳ୍ପଦିନ

ପାଇଁ ଘରକୁ ନଯାଇ ବଡ଼ଦିନ ଓ ପୂଜା ଛୁଟିରେ ହିଁ ଘରକୁ ଯିବ । ଘରର ଭଲମନ୍ଦ ଜଣାଇ ବରାବର ଚିଠିଦେବାକୁ ସେ ହରିବନ୍ଧୁକୁ ନିର୍ଦ୍ଦେଶ ଦେଲା ।

ଆପ୍ରେଣ୍ଟିସ ଚାକିରୀ ବାଦେ କୃପାସିନ୍ଧୁର ଯେତେବେଳେ ପାଞ୍ଚବର୍ଷର ସରକାରୀ ଚାକିରୀ ପୂରିଗଲା, ଠିକ୍ ସେତିକି ବେଳେ, ବନ୍ଧୁକ ଲାଇସେନ୍ସ ବାଣ୍ଟୁଥିବା ସ୍ଥାନର କିରାଣୀ ଜଣକ ମରିଗଲେ । ତେଣୁ କୃପାସିନ୍ଧୁକୁ ତାଙ୍କ ସ୍ଥାନରେ ଅବସ୍ଥାପିତ କରାଗଲା । ଏହି ସବୁ କାର୍ଯ୍ୟ ଭଗବାନ ବାବୁଙ୍କର ସୁପାରିଶରେ ହୋଇପାରିଲା । ହରିଦାସ ବୋଷଙ୍କର ଛଟେଇ ହେବା ପରଠାରୁ ସେ କୃପାର ପରମବନ୍ଧୁ ଏବଂ ପୃଷ୍ଠପୋଷକ ହୋଇ ଯାଇଥିଲେ । ଏହି ପଦବୀ ପାଇ କୃପାସିନ୍ଧୁ ଖୁସି ହୋଇଗଲା । କାରଣ ଏହି ସିଟ୍‌ରେ ଉପୁରି କମେଇବାର ସୁଯୋଗ ଅଛି । ମାତ୍ର ସେ କିପରି ସେସବୁ ଆରମ୍ଭ କରିବ ସେ ବିଷୟରେ କିଛି ଜାଣି ନଥିଲା । ବରିଷ୍ଠ କିରାଣୀମାନଙ୍କଠାରୁ ସେ କଥା ସେ ପଚାରି ବୁଝିନେଇ ପାରିଥାନ୍ତା । କିନ୍ତୁ ସେମାନଙ୍କୁ ସେ ବିଶ୍ୱାସ କରିପାରୁ ନଥିଲା । ସେ ଭାବୁଥିଲା ଯେ ଆପେ ଆପେ ସେ ସବୁ ଅନୁଭୂତି ସାଉଁଟିବା ବରଂ ଚଲାକି ହେବ । ମାତ୍ର ତାର ଏହି ନୂଆ ସିଟର ନିୟମିତ କାର୍ଯ୍ୟଧାରା ବିଷୟରେ ସର୍ବପ୍ରଥମେ ବୁଝିନେବା ହିଁ ଉଚିତ କଥା ହେବ ।

ଠିକ୍ ବଡ଼ଦିନ ପରେ ପରେ ହିଁ ବନ୍ଧୁକ ଲାଇସେନ୍ସ ଦେବାର ସମୟ ଆସିଯାଏ । ପୋଲିସ ଫାଣ୍ଡିର ଅଫିସର କାହାକୁ ଲାଇସେନ୍ସ ଦେବା ପାଇଁ ବା ଲାଇସେନ୍ସ ନବୀକରଣ କରିବାପାଇଁ ଆବେଦନ କରିଥାନ୍ତି । ଲାଇସେନ୍ସ ନବୀକରଣ ସଂକ୍ରାନ୍ତୀୟ କିଛି ଆବେଦନ ଆସିଲେ କୃପା ତାକୁ ନେଇ ଡେପୁଟୀ ମାଜିଷ୍ଟ୍ରେଟଙ୍କ ଇଜିଲାସରେ ଉପସ୍ଥାପିତ କରେ । କୌଣସି ଝାମେଲା ନ ଥିଲେ ଚିରାଚରିତ ରୀତିରେ ଲାଇସେନ୍ସ ଦିଆଯାଏ । ପ୍ରତ୍ୟେକଟି ଆବେଦପତ୍ର ପାଇଁ କୃପାକୁ କିଛି କିଛି ସାଲାମୀ ମିଳୁଥିଲା । କିନ୍ତୁ ନୂଆ ଲାଇସେନ୍ସ ନିମନ୍ତେ ଆବେଦନ ପତ୍ରରେ ଡେପୁଟୀ କଲେକ୍ଟରଙ୍କ ବଦଳରେ ଖୋଦ କଲେକ୍ଟରଙ୍କର ସମ୍ମତି ଓ ଦସ୍ତଖତ ଆବଶ୍ୟକ ହେଉଥିଲା । ପ୍ରଥମେ କୃପାସିନ୍ଧୁ ଆବେଦନପତ୍ର ଠିକ୍ ଅଛି କି ନାହିଁ ଯାଞ୍ଚ କରି ଦେଖୁଥିଲା ଏବଂ ତାହା ଉପରେ ନୋଟ ଦେଇ ଡେପୁଟୀ ମାଜିଷ୍ଟ୍ରେଟଙ୍କ ପାଖକୁ ପଠାଉଥିଲା । ଡେପୁଟୀ ତାଙ୍କ ମତାମତ ଦେଇ ପୁଣି କଲେକ୍ଟରଙ୍କ ପାଖକୁ ସେଇଟିକୁ ପଠାଉଥିଲେ । କେବେକେବେ ଏହି ଦରଖାସ୍ତଟି ସଙ୍ଗେ ସଙ୍ଗେ ସହମତ ସହ ଦସ୍ତଖତ ହୋଇ ଯାଉଥିଲା । ଆଉ କେବେ କଲେକ୍ଟରଙ୍କ ସମ୍ମତି ମିଳୁ ବି ନଥିଲା । ପୁଣି କେବେ ଏହି ଦରଖାସ୍ତ ପୋଲିସ ଅନୁସନ୍ଧାନ ପାଇଁ ମଧ୍ୟ ପଠେଇଦିଆ ହେଉଥିଲା । ଆବେଦନପତ୍ରଟି ସମ୍ମତି ପ୍ରାପ୍ତ

ନେଲା ପରେ ଶେଷରେ କୃପାସିନ୍ଧୁ ପାଖକୁ ଆସେ । ସେ ଲାଇସେନ୍ସ ସାର୍ଟିଫିକେଟ ତିଆରି କରି ସାହେବଙ୍କ ଦସ୍ତଖତ ପାଇଁ ପୁଣି ତାଙ୍କ ପାଖକୁ ପଠେଇଦିଏ । ଶେଷରେ ଦସ୍ତଖତ ମିଳିସାରିଥିବା ଲାଇସେନ୍ସ ଗୁଡ଼ିକୁ କୃପା ତାର ନିଜ ଟେବୁଲ୍ ଡ୍ରରେ ରଖିଦିଏ । ଯେବେଯାଏ ଲାଇସେନ୍ସ ଆବେଦନକାରୀ,ସେ ବିଷୟରେ ବୁଝିବାକୁ ନ ଆସିଛି ।

କିପରି ଉପୁରି ଆଦାୟ କରାଯାଇପାରେ ତାହା ଏଣିକି କୃପା ଜାଣିଗଲା । କୃପାସିନ୍ଧୁର ଆୟର ବାଟ ଏଥର ଫିଟିଗଲା । କେହି ଧନୀ ଜମିଦାରଙ୍କୁ ଲାଇସେନ୍ସ ଦିଆହେବାର ଥିଲେ, ତାଙ୍କର କେହି ଲୋକ ଅଫିସକୁ ଲାଇସେନ୍ସ ନେବାକୁ ଆସନ୍ତି । ଲାଇସେନ୍ସ ପ୍ରସ୍ତୁତ ହୋଇ ନାହିଁ କହି କୃପାସିନ୍ଧୁ ତାଙ୍କୁ ଫେରାଇ ଦିଏ । କିଛିଦିନ ଛାଡ଼ି ସେ ଲୋକ ଆସେ ତ କୃପାସିନ୍ଧୁ ତାକୁ ବୁଝାଏ ସାହେବଙ୍କର ଫୁରସତ ନାହିଁ । ଗଦାଗଦା ଫାଇଲ ଦସ୍ତଖତ ପାଇଁ ପଡ଼ିରହିଛି । ତୃତୀୟ ଥର ପାଇଁ ସେ ଲୋକ ଆସିଲେ ବି ସେଇ ଉତ୍ତର ଦିଏ । ଥରେ ସେ ଲୋକ କୃପାସିନ୍ଧୁର ଘରକୁ ସଂଜବେଳେ ଆସି କହିଲେ, 'କୃପାସିନ୍ଧୁ ବାବୁ ଆମ ଖାଉନ୍ଦଙ୍କ ବଂଧୁକ ଲାଇସେନ୍ସ ପାଇଁ ଆସିଥିଲି । ଆସନ୍ତାକାଲି  ଭିତରେ ହୋଇଯିବ ତ ?' କହୁ କହୁ ସେ ମୋଟାଏ ଦଶଟଙ୍କିଆ ନୋଟ ପକେଟରୁ କାଢ଼ି କୃପାକୁ ଦେଲେ । କୃପା ଗଣିକରି ଦେଖିଲା ଯେ ସେଥିରେ ପାଞ୍ଚଖଣ୍ଡ ନୋଟ ଅଛି । ଟଙ୍କାଟା ଫେରାଇ ଦେଇ ସେ କହିଲା ଯେ ସାହେବ ବଡ଼ ବ୍ୟସ୍ତ ଅଛନ୍ତି, କାଲି ଭିତରେ କାମ ହୋଇଯିବା ପରି ଲାଗୁନାହିଁ । ଲୋକଟି ଆଉକିଛି ଟଙ୍କା କାଢ଼ି ଗଣିଲା ଏବଂ ତାହା କୃପାକୁ ଦେଇସାରି କହିଲା-, "ଦେଖନ୍ତୁ ବାବୁ, ତଥାପି କଣ କାଲି ସୁଦ୍ଧା ଦସ୍ତଖତ ହୋଇ ପାରିବନି ?'ଦଶଟା ନୋଟ ଅଛି ବୋଲି କୃପା ଗଣିକରି ଦେଖିଲା ଏବଂ ତାପରେ କହିଲା ହଁ, କାଲି ହୋଇଯିବ ।"

ଲୋକଟି ଫେରିଗଲା ପରେ କୃପାସିନ୍ଧୁ ବଡ଼ବାବୁ ଭଗବାନବାବୁଙ୍କ ଘରକୁ ଯାଇ କହିଲା, ' ସେ ଜମିଦାର ବାବୁଙ୍କ ଲୋକ କାଲି ସଂଧ୍ୟାରେ ଆମ ଘରକୁ ଆସିଥିଲା । ମୁଁ ତାଙ୍କୁ କାଲି ତାଙ୍କ ବନ୍ଧୁକର ଲାଇସେନ୍ସ କରି ଦେବି କହିଛି । କହୁ କହୁ ପାଞ୍ଚଟି ଦଶଟଙ୍କିଆ କାଢ଼ି ସେ ଭଗବାନ ବାବୁଙ୍କୁ ଦେଲା ।

ତାହେଲେ ତୁମେ ମାତ୍ର ଶହେ ଟଙ୍କା ନେଲ ? ତୁମେ ତ ପାଞ୍ଚଶହ ଟଙ୍କା ଆଦାୟ କରିବା କଥା  -ଭଗବାନବାବୁ କହିଲେ । କଥାଟି ଶୁଣି କୃପାସିନ୍ଧୁ ଖୁବ୍ ଖୁସି ହୋଇଗଲା । ସେ ବୁଝିଗଲା ଯେ ଅଧେ ଟଙ୍କା ବଡ଼ବାବୁଙ୍କୁ ଦେଇ ସେ ଠିକ୍ କରିଛି ।

ଏଇ ଘଟଣା ପରେ ଆଉ ଯେଉଁମାନେ ବନ୍ଧୁକ ଲାଇସେନ୍ସ ପାଇଁ ଆସିଲେ,

ସେମାନଙ୍କଠାରୁ ସେ ପାଞ୍ଚଶହ ଟଙ୍କା ଲେଖାଏଁ ନେଲା । ଆବେଦନକାରୀ ସେତେ ଧନୀ ହୋଇ ନଥିଲେ ଏବଂ ସେତେ ଦେଇପାରିବ ନାହିଁ ବୋଲି ଅସହାୟତା ପ୍ରକାଶ କଲେ, ସେ କମ୍ ଟଙ୍କା ମଧ୍ୟ ଗ୍ରହଣ କରୁଥିଲା ।

ଏଣିକି ସେ ଭାବିଲା, ଲାଇସେନ୍ସ କରିବା ପୂର୍ବରୁ କେତେଟଙ୍କା ସେ ନେବ ସେକଥା ତାର ପାର୍ଟି ସହିତ ବୁଝାମଣା ହୋଇଯିବା ଉଚିତ । ଆବେଦନ ପତ୍ର ପାଇଲା ମାତ୍ରେ ଟଙ୍କା ବିଷୟରେ ବୁଝାମଣା ପରେ ହିଁ ଏଣିକି ସେ ସାହେବଙ୍କ ଦସ୍ତଖତ ପାଇଁ ପଠାଏ । ଟଙ୍କା ନ ମିଳିବା ଯାଏଁ କାମ ଆରମ୍ଭ କରେ ନାହିଁ । ଲୋକଟି ଯଦି ପାଞ୍ଚଶହ ଜାଗାରେ ଦୁଇଶହ ଦେବ କହେ ତ ସେ ଆବେଦନ ପତ୍ର ଉପରେ ସେ ନୋଟ୍ ଦିଏ ଯେ ଆର୍ଥିକ ଅସ୍ୱଚ୍ଛଳତା କାରଣରୁ ପ୍ରାର୍ଥୀ ବନ୍ଧୁକ ଲାଇସେନ୍ସ ପାଇବା ଠିକ୍ ହେବ ନାହିଁ । ତାହେଲେ ଡେପୁଟି ମାଜିଷ୍ଟ୍ରେଟ ନିର୍ଦ୍ଦେଶ ଦେବେ ଯେ ସୁପାରିଶ ହେଲାନାହିଁ ଏବଂ କଲେକ୍ଟର ସାହେବ ନିଜର ବ୍ୟସ୍ତତା କାରଣରୁ କିଛି ନପଢ଼ି ଦରଖାସ୍ତ ଉପରେ ନିଜର ସ୍ୱାକ୍ଷର ଦେଇ ଦେବେ ।

ଆଜିକାଲି ତାର ଯଥେଷ୍ଟ ପଇସା ହୋଇଯାଇ ଥିଲା । ତେଣୁ କୃପା ଭାବିଲା ଯେ ଝିଅକୁ ତ ଦଶ ବର୍ଷ ହେଲାଣି, ବାହା ଦେଇ ଦେଲେ ଭଲ ହେବ । ଏକଥା ଦୟାନିଧିକୁ ଜଣେଇ ଦେଲା । ଦୟାନିଧି ଗୋଟାଏ ଫାଣ୍ଡି ଦାୟିତ୍ୱରେ ପୋଲିସ ଅଫିସର ଥିଲା ।

ସବୁ ଦୋଷ ଗୁଣ ନିର୍ବିଶେଷରେ ଦୟାନିଧିକୁ ଜଣେ ଚଲାକ ଲୋକ କହିବା ଠିକ୍ ହେବ । ପୋଲିସ କାମରେ ବି ସେ ଖୁବ୍ ଧୂରୀଣ । ଏତେ ଧୂରୀଣ ସେ ଥିଲା ଯେ ଫାଣ୍ଡିର ଦାୟିତ୍ୱ ନେଉ ନ ନେଉ ସେ ଏକଚୋର ଦଳକୁ ବାଗେଇ ଦେଇଥିଲା । ଯେଉଁମାନେ ଚୋରୀ ଧନ୍ଦା କରି ଚାଲି ଯାଇଛନ୍ତି ଏବଂ ଯେଉଁମାନେ ଟଙ୍କା ଦେଇ ଖସିଯାଇଛନ୍ତି, ସେମାନଙ୍କ ନାମ ଏବଂ ଅନ୍ୟ କାରଣରୁ ଯେଉଁମାନେ ମୁକ୍ତି ପାଇଛନ୍ତି ସେମାନଙ୍କର ନାମ ସବୁ ସେଇ ତାଲିକାରେ ରଖିଲା ।

କିଛିଦିନ ପରେ ନିଶିବାଲା ଲାଗି ଗୋଟାଏ ଉପଯୁକ୍ତ ପାତ୍ର ସନ୍ଧାନ ହୋଇଯାଇଛି ବୋଲି ସେ କୃପାସିନ୍ଧୁକୁ ଚିଠି ଲେଖିଲା । ପୁଅର ବାପା ଯୌତୁକ ନେବାକୁ ଝୁଙ୍କ ଲଗେଇବେ ନାହିଁ ବୋଲି ମଧ୍ୟ କହିଥିଲା କାରଣ ତାଙ୍କର ପୁଲିସବାଲା ମାନଙ୍କ ପ୍ରତି ସମ୍ମାନ ଅଛି ।

ତା ନିଜର ଓ ଭାଇମାନଙ୍କର କମ୍ ବୟସର ସ୍ତ୍ରୀମାନଙ୍କ ଅବସ୍ଥା କଥା ଚିନ୍ତା କରି କୃପା କହିଲା ଯେ ବାହାଘର ପରେ ଖୁବ୍ ଅଳ୍ପଦିନ ପାଇଁ ନିଶି ତାର ଶ୍ୱଶୁର ଘରେ

ରହିବ । ତାକୁ ପୂରାପୂରି ତେରବର୍ଷ ନ ପୂରିବା ପର୍ଯ୍ୟନ୍ତ ସେ ତାର ସ୍ୱାମୀ ପାଖକୁ ମଧ୍ୟ ଯିବ ନାହିଁ ।

ଏପ୍ରକାର ସର୍ତ୍ତସହ ବାହାଘର ହେଲା । ପ୍ରଥମଥର ପାଇଁ ଚାକିରୀରୁ ଛୁଟିନେଇ କୃପାସିନ୍ଧୁ ଝିଅର ବାହାଘର ଖୁବ୍ ଧୂମଧାମରେ କଲା । ଗାଁଟା ସାରା ଧନ୍ୟ ଧନ୍ୟ କଲେ । ପଡ଼ିଶାମାନଙ୍କ ଆଗରେ ତାର ସମ୍ମାନ ବଢ଼ିଗଲା । ସେମାନଙ୍କଠାରୁ ପ୍ରଶଂସା ପାଇଲା ପରେ ଅନ୍ୟମାନ୍ୟଗଣ୍ୟ ବ୍ୟକ୍ତିମାନଙ୍କଠାରେ ସେ କିପରି ସମ୍ମାନାସ୍ପଦ ପରିଗଣିତ ହେବ ସେଇ ଆଶାରେ ରହିଲା ।

ସେତେବେଳେକୁ ତାକୁ ମାତ୍ର ଅଠେଇଶବର୍ଷ ବୟସ ହୋଇଥିଲା । ସେ ଏବେ ଜଣେ ମାଲ୍‌ଦାର ସରକାରୀ ଚାକିରିଆ । ତାର ଭାଇ ବି ଜଣେ ପୋଲିସ ଇନ୍‌ସପେକ୍ଟର । ସେ ଅନୁଭବ କଲା ଯେ ସେ ଗୋଟେ ବେଶ୍ୟା ଘରକୁ ଯିବା ଶୋଭନୀୟ ନୁହେ । ତାଛଡ଼ା ସେ ଯେଉଁଝିଅଟି ପାଖକୁ ଯାଉଥିଲା, ସେ ଗୋଟାଏ ଭୟଙ୍କର ବ୍ୟାଧିରେ ପୀଡ଼ିତା ହୋଇପଡ଼ିଥିଲା । ତେଣୁ ତା ପାଖକୁ ଯିବାକୁ ସେ ଆଉ ଡ଼ରିଲା । ସେ ଜଣେ ହିନ୍ଦୁ ଓ କରଣ ଜାତିର ଲୋକ । ମଲାବେଳେ ତା ମୁହଁରେ ନିଆଁ ଦେବାକୁ ପୁଅଟିଏ ତାର ନାହିଁ । ହିନ୍ଦୁ ଧର୍ମରେ ଏଇଟା ନିହାତି ଧରାଯାଏ । ଏସବୁ ଦିଗରୁ ସେ ପୁଣିଥରେ ବାହାହେବା କଥା ଚିନ୍ତା କଲା । ପ୍ରଥମେ ସେ ଏ ବିଷୟରେ ତାର ବାପାଙ୍କ ମତାମତ ନେଲା ଓ ତାପରେ ଦୟାନିଧି ପାଖକୁ ଚିଠି ଲେଖିଲା ।

ବଡ଼ଦିନ ଛୁଟି ହେବାରୁ ନିଜ ଭାଇ ସହ ଦେଖା କରି ଏସବୁ ବିଷୟ ଜାଣିବା ଉଦ୍ଦେଶ୍ୟରେ ସେ ଆଗ୍ରହର ସହିତ ଗାଁକୁ ଗଲା । ଭାଇ ସହିତ ଦେଖାହେଲା ମାତ୍ରେ ତାକୁ ଗୋଟାଏ କୋଣକୁ ଡାକିନେଇ ଖବର କଣ ଅଛି ବୋଲି ପଚାରିଲା ।

'କେଉଁ ଖବର ବିଷୟରେ ପଚାରୁଛୁ ?' ଦୟାନିଧି କହିଲା, । "ମୋ ବାହାଘର ବିଷୟରେ । ଝିଅଫିଅ କେଉଁଠି କିଛି ଦେଖିଲୁ ନା ନାହିଁ ?" "ହଁ ରେ ବାବୁ, ଝିଅଟିଏ ଅଛି । ଅତି ଭଲ ଓ ସୁନ୍ଦର । କିନ୍ତୁ ଖୁଣଟିଏ ତାର ଅଛି । ବୟସ୍କ ଝିଅଟିଏ । ଏବେ ତାକୁ ଚଉଦ ଚାଲିଛି ।" "ତେବେ ତ ଠିକ୍ ଅଛି । ନିରାପଦ ପିଲାଜନ୍ମ କରିବା ପାଇଁ ତାରି ବୟସର ଝିଅଟି ଉପଯୁକ୍ତ ।"

'ଶୁଣ ଭାଇ, ଡେପୁଟୀମାଜିଷ୍ଟ୍ରେଟଙ୍କ ଘର ମୋ ଅଧୀନ ଇଲାକାରେ । ତାଙ୍କର ଗୋଟାଏ ଜମିଦାରୀ ଅଛି । କିନ୍ତୁ ତାହା ଏବେ ବଂଧକ ପଡ଼ିଛି । ଜଣେ ଦୁର୍ଭାଗା ଲୋକଟିଏ ସେ । ତାଙ୍କର ସାତସାତଟି ଝିଅ । ସେଥିରେ ଛଅଟିର ବାହାଘର ସରିଚି । କିନ୍ତୁ ସାନଟିକୁ ଏ ଯାବତ୍ ଦେଇପାରି ନାହାନ୍ତି । ବଡ଼ ଛଅଟି ଝିଅଙ୍କୁ ବାହା ଦେଇ

ସଙ୍କଟରେ ପଡ଼ିଛନ୍ତି । ତେଣୁ ସାନଟିକୁ ଚଉଦ ହେଲାଣି, ତଥାପି ବି ବାହା ଦେଇ ପାରିନାହାନ୍ତି ।

'ଝିଅଟି କଣ ଦେଖିବାକୁ ଗୋରୀ ?'

'ମୁଁ ନିଜେ ତ ଦେଖି ନାହିଁ, ତେବେ ଗୋରୀ ବୋଲି ଶୁଣିଛି । ତାଙ୍କର ଜାତିଗୋତ୍ର ମଧ୍ୟ ଉଚ୍ଚ ।'

"ତୁମେ ବଡ଼ ଭଲାକି କାମ କରିବ । ସେମାନେ ଋଣଗ୍ରସ୍ତ ହୋଇଥିଲେ ହୁଅନ୍ତୁ, କିନ୍ତୁ ଜଣେ ଡେପୁଟୀ ମାଜିଷ୍ଟ୍ରେଟ ସହ ସମ୍ବନ୍ଧ ସ୍ଥାପନ କରିବା କମ୍ କଥା ନୁହେଁ । ଏପରି ସ୍ଥଳେ, ଝିଅଟିକୁ ମୁଁ ବିନା ଯୌତୁକରେ ବାହାହେବି । ଯଦି ସେ ତୁମର କଥା ମାନିବେ ତ ସବୁଦିନ ଆଉ ତାଙ୍କୁ ଋଣରେ ବୁଡ଼ି ରହିବାକୁ ହେବନି ।"

'ସେ କଥା ତ ଠିକ୍ । ତେବେ ବାହାଘର କଥା ଚଳେଇବି କି ?'

'ହଁ ବଡ଼ ଭାଇ, ଯଦି ତୁମେ କଷ୍ଟକରି ଟିକେ ଯୋଗାଯୋଗ କରନ୍ତ ତ ଭଲ ହୁଅନ୍ତା । ଝିଅର ବାପାଙ୍କୁ ସାହାଯ୍ୟ ଦରକାର ପଡ଼େ ଯଦି କରିବ ।'

'ଠିକ୍ ଅଛି । ମୁଁ ତାଙ୍କର ନାମ ଦାତା ତାଲିକାରୁ କଟେଇ ଦେବି ।' ଏହିପରି ଭାବେ ଦୟାନିଧି କୃପାସିନ୍ଧୁର ବିବାହ ଯୋଗାଡ଼ କରିବାରେ ଲାଗି ପଡ଼ିଲା, ମାତ୍ର ବାହାଘର ମୌସୁମ ଆସିବା ଯାଏ ବ୍ରାହ୍ମଣଙ୍କ ମତାମତରେ ଭଲଦିନକୁ ଅପେକ୍ଷା କରିବାକୁ ହେଲା । ପୁଣି କୃପାସିନ୍ଧୁ ମାସକ ପାଇଁ ଛୁଟି ନେଲା ବାହାହେବା ପାଇଁ ।

ନୂଆ ସ୍ତ୍ରୀ ସହିତ କୃପା ବେଶ୍ ଖୁସିଥିଲା । ସେ ଗୋରୀ ସୁନ୍ଦରୀ ଏବଂ ଭଲ ସ୍ୱଭାବର ଥିଲା । ପୁଣି ସେ ବଡ଼ଘରର ଝିଅ । କୃପାସିନ୍ଧୁ ଧୀରେ ଧୀରେ ଅନୁଭବ କଲା ଯେ ଝିଅଟା କେବଳ ଟିକେ ଗର୍ବୀ ।

ବାହାଘରର କିଛିଦିନ ପରେ ସେ କହିଲା, 'ମହାଶୟ, ଘରକାମରେ ସାହାଯ୍ୟ କରିବାକୁ ଚାକରାଣୀ ଝିଅଟିଏ ଯୋଗାଡ଼ କଲେ ଠିକ୍ ହେବ ।' 'ଆମେ ତ ରାଜା ମହାରାଜା ଘର ହୋଇନାହୁଁ ଯେ ଆମ ଘରେ ଚାକର ଚାକରାଣୀ ଖଟିବେ ।'

'ଆମ ଘରେ ଚାକର-ଚାକରାଣୀ ଖଟିବାର ମୁଁ ସାନବେଳୁ ଦେଖି ଆସିଛି ଠିକ୍ ରାଜାମହାରାଜାଙ୍କ ଘର ଭଳି । ମୋର ବଡ଼ଭଉଣୀର ବାହାଘରବେଳେ ସାତଟି ଚାକରାଣୀ ସେମାନଙ୍କ ସଂଗରେ ଯାଇଥିଲେ, ଅନ୍ୟମାନେ ଦୁଇ ତିନୋଟି ଲେଖାଏଁ ଚାକରାଣୀ ସାଙ୍ଗରେ ନେଇଥିଲେ । କାରଣ ସେତେବେଳକୁ ମୋ ବାପାଙ୍କର ଆର୍ଥିକ ଅବସ୍ଥା କ୍ରମେ ଖରାପ ହୋଇ ଆସିଥିଲା । ମୋ ବେଳକୁ ତ ଜଣେ ବି ନାହିଁ । ଆମ ଘରେ ଏବେ ମାତ୍ର ଦି'ଜଣ ଚାକରାଣୀ ମା'କୁ ସାହାଯ୍ୟ କରିବାକୁ ଅଛନ୍ତି । ଆମର

ଏଠାରେ କେହି ଚାକରାଣୀ ନଥବାରୁ ମୋତେ ଲାଜ ଲାଗୁଛି ।'

'ମୁଁ କାହାରିକୁ ଦରକାର କରେ ନାହିଁ । ତୁମେ ଥିଲେ ସବୁ ଅଛି ।'

'ଉହୁଁ, ଏଇଟା ତ ମାନସମ୍ମାନର କଥା । ଆମ ଘରେ ଚାକରାଣୀଟିଏ ରହିବା ଉଚିତ ।' ନୂଆ ସ୍ତ୍ରୀ କୃପାଙ୍କୁ ଏମିତି କହିଲାରୁ କୃପା ଏବିଷୟରେ ତାର ବାପା ସହ କଥା ହେଲା । ତାର ବାପା ପ୍ରଥମେ ଏଥିରେ ଅରାଜି ହେଉ ଥିଲେ ମାତ୍ର ପରେ ଭାବିଲେ ଯେ ପୁଅମାନେ ତ ଉଚ୍ଚ ପଦପଦବୀରେ ଅଛନ୍ତି ତେଣୁ ସେମାନଙ୍କ ସ୍ତ୍ରୀମାନେ ମଧ୍ୟ ବଡ଼ଘରର ସ୍ତ୍ରୀମାନଙ୍କ ଭଳି ଚଳିବା ଉଚିତ ।

ଗାଁରେ କାମ କରି ପେଟପୋଷୁଥିବା ବିଧବା ସ୍ତ୍ରୀଲୋକଟିଏ ଆଣି ସେ ତାଙ୍କର ଘରର ସ୍ତ୍ରୀ ଲୋକଙ୍କ ବୋଲହାକ କରିବା ପାଇଁ ନିଯୁକ୍ତ କଲେ । କିଛିଦିନ ପରେ ଗୋପାଳ ଜାତିର ସ୍ତ୍ରୀ ଲୋକଟେ ମିଳିଲା । ମାତ୍ର ତା'ର ଏତେ ଛୁଆଥିଲେ ଯେ,ସେ କ'ଣ କରିବ କିଛି ବୁଝିପାରୁନଥିଲା । ତାଠାରୁ ମଧୁସୂଦନ ଦୁଇଟି ଝିଅ କିଣିଲେ । ଝିଅ ଦିଓଟି ମଧୁସୂଦନଙ୍କ ଘରେ ପିଲାମାନଙ୍କ ସହ ଖେଳାଖେଳି କରି କାମ ଶିଖିବା ଯାକେ ଦିନ କଟେଇଲେ ।

କୃପାସିନ୍ଧୁର ଶ୍ୱଶୁର ଜଣେ ଡେପୁଟୀ ହୋଇ ଥିବାରୁ ତାର ଖୁସି ଓ ଗର୍ବର ସୀମା ନଥିଲା । ତାର ସ୍ତ୍ରୀ ବି ବେଶ୍ ଖୁସିଥିଲା କାରଣ ଅନ୍ୟ ଧନୀମାନୀ ସ୍ତ୍ରୀ ଲୋକଙ୍କ ପରି ତାଙ୍କ ପାଖରେ ବି ଚାକରଚାକରାଣୀ ଥିଲେ ।

## ଷଷ୍ଠ ପରିଚ୍ଛେଦ

ଅନ୍ୟାନ୍ୟ ଭାରତୀୟ ସ୍କୁଲ ପିଲାଙ୍କ ପରି ନିଜର ଛାତ୍ର ଜୀବନରେ କୃପାସିନ୍ଧୁ ଗୋଟାଏ ବହି ପୁରସ୍କାର ପାଇଥିଲା -ବହିଟି ଥିଲା- 'ଲର୍ଡଚେଷ୍ଟରଫିଲ୍ଡସ୍ ଲେଟରସ୍ ଟୁ ହିଜ ସନ୍ ।' ବହିଟା ତା ଭାବୀ ଜୀବନ ପାଇଁ କିପରି ଉପଯୋଗୀ ହୋଇ ପାରିବ, ସେ କଥା ବହିଟି ପଢ଼ି ଖୋଜି ବାହାର କରିବାରେ ସେ ଲାଗିଲା । ବହିଟିର ସୁନ୍ଦର ଲିଖନ ଶୈଳୀ ଏବଂ ଭାବର ଗମ୍ଭୀରତା ତାକୁ ମୁଗ୍ଧ କରିଥିଲା । କିନ୍ତୁ ସେଇ ମହାମାନ୍ୟ ଲେଖକଙ୍କର କେତୋଟି କଥାରେ ସେ ଏକମତ ହୋଇ ପାରୁ ନଥିଲା । ଚେଷ୍ଟର ଫିଲ୍ଡଙ୍କ ମତରେ ବନ୍ଧୁତା ବୌଦ୍ଧିକତାରୁ ହିଁ ସୃଷ୍ଟ, ସହୃଦୟତାରୁ ନୁହେଁ । ତେଣୁ ସାଧାରଣ ଭାବେ ଉପଯୋଗିତା ସୁବିଧା ସୁଯୋଗ ଏବଂ ପରସ୍ପର ସାହାଯ୍ୟ ସହାନୁଭୂତି ଉପରେ ତାହା ପର୍ଯ୍ୟବେସିତ ହେବା ଉଚିତ । ଯୁବସୁଲଭ ଆବେଗଧର୍ମୀ ବନ୍ଧୁତା ପ୍ରତି

ସେ ଭ୍ରୂକୁଟି କରିଥିଲେ ।

ଏହି କଥାରେ ହିଁ କୃପାସିନ୍ଧୁ ଚେଷ୍ଟର ଫିଲ୍ଡଙ୍କ ମହାନତା ସମ୍ବନ୍ଧରେ ସନ୍ଦୀହାନ ଥିଲା । କାରଣ ଖୁରସିଦ୍ ଅଲ୍ଲୀ ସହିତ ବନ୍ଧୁତାକୁ ସେ ତା ଜୀବନରେ ଏକ ମହନୀୟ କଥା ବୋଲି ଧରିନେଇ ଥିଲା ଓ ତାହା ଚିରଦିନ ଅବିଚ୍ଛେଦ୍ୟ ରହୁ ବୋଲି କାମନା କରୁଥିଲା । ବହୁଦିନ ଧରି ଦେଖା ସାକ୍ଷାତ ନ ହେଲେ ବି ସେମାନଙ୍କର ବନ୍ଧୁତାରେ ଆଞ୍ଚ ଆସୁ ନଥିଲା । ଦୀର୍ଘଦିନର ବିଚ୍ଛେଦ ମଧ୍ଯ ତାହା ଛିଣ୍ଡାଇ ପାରି ନଥିଲା । ପୁଣି ଥରେ ଦେଖାହେଲେ ସେମାନେ ଆଗଭଳି ଖୋଲା ପ୍ରାଣରେ ଚଳୁଥିଲେ । ବାରମ୍ବାର ଦେଖା ସାକ୍ଷାତ ହେବା ବନ୍ଧୁତାରେ ବେଶୀ ଆବଶ୍ୟକତା ନଥିଲା । ଏବେ, ସେ ଦୁହେଁ ଭିନ୍ନ ଭିନ୍ନ ବିଭାଗରେ କର୍ମରତ ଥିଲେ । ତେଣୁ ପରସ୍ପର ସହିତ ଖୁବ୍ କମ୍ ଦେଖାସାକ୍ଷାତ ହେଉଥିଲା । ହରିବନ୍ଧୁର ଚିଠିରୁ ଏଇ ଭଲଖବର ପାଇବାପରେ ସେ ତାର ମେସ୍ ସାଙ୍ଗ କି ଜାତି ଭାଇ ସାଙ୍ଗ କାହାକୁ ବି ନ କହି ଏଇ ପ୍ରିୟ ସ୍କୁଲ ବେଳର ବନ୍ଧୁଟିକୁ କହିବାକୁ ଗଲା । ସାରାଦିନର କାମପରେ ବସାଫେରନ୍ତି ବାଟରେ ସେ ଖୁରସିଦ୍‌କୁ ଦେଖିଲା ଏବଂ ଚିଠିଟାକୁ ଉଡ଼େଇ ଧରି ତାର ପଛେ ପଛେ ଧାଇଁଲା ।

"ହେ ଖୁରସିଦ୍, ରହରହ, ମୁଁ ଗୋଟାଏ ବଢ଼ିଆ ଖବର ଆଣିଛି ।" ଖୁରସିଦ୍ ତାକୁ ଏତେ ଖୁସି ହେବାର ଦେଖି ପଚାରିଲା, 'କଥା କଣ' ଗୋଟାଏ ବାଜି ଜିତି ଯାଇଛୁ କି ?"

'ନାଇ ନାଇଁ, ଅନୁମାନ କଲୁ, କଣ ହୋଇ ଥାଇପାରେ ?'

'କାହାଠୁ ଟଙ୍କା ମିଳିଯାଇଛି ?'

'ନା, ନା ।'

'ତେବେ ତୋର ସ୍ତ୍ରୀ ଗୋଟାଏ ପୁଅ ନିଶ୍ଚୟ ଜନ୍ମ କରିଛି ?'

'ହଁ, ଠିକ କହିଛୁ , ମୋର ପୁଅଟିଏ ହୋଇଛି ।'

'ହୃଦୟର ସହିତ ଅଭିନନ୍ଦନ ଜଣାଉଚି ବନ୍ଧୁ । ଆଶା କରେ ମା ଓ ପୁଅ ଉଭୟେ ସୁସ୍ଥ ଥିବେ ।'

'ହଁ, ସେମାନେ ଠିକ୍‌ଠାକ୍ ଅଛନ୍ତି ।'

'ବଡ଼ ଖୁସିର କଥା, ନା ?'

"ନିଶ୍ଚୟ ! ଦେଖ, ମୁଁ କେତେ ଭଲାଖ । ଗୋଟାଏ ବୟସ୍କ ଝିଅକୁ ଦାହାହୋଇ ମୁଁ କଣ ଠିକ୍ କରିନାହିଁ ? ତାକୁ ଏବେ ପନ୍ଦରବର୍ଷ ବୟସ ହୋଇଚି ।"

'ତୋର ଏ ଖୁସି ଖବର ଶୁଣି ମୁଁ ସତରେ ଖୁବ୍ ଖୁସି । ଯା'ହେଉ, ତୋର ତ

ଗର୍ବ କରିବା କଥା ।'

'ଓଃ ନିଶ୍ଚୟ'

କୃପାସିନ୍ଧୁ ତାର ଏଇ ବନ୍ଧୁ ସହିତ ପିଲାଟାର ଶିକ୍ଷାଦୀକ୍ଷାର କଥା ଆଲୋଚନା କଲା । ଖୁରସିଦ୍‌କୁ ମେସରେ ଛାଡ଼ି ସେ ମନେମନେ ଉତ୍‌ଫୁଲ୍ଲ ହୋଇ ନିଜ ବସାକୁ ଗଲା । ଥରେ ଭାବିଲା, ତାର ସ୍ତ୍ରୀକୁ ଗୋଟାଏ ଅଭିନନ୍ଦନ ଟେଲିଗ୍ରାମ କରିବ କି ? ମାତ୍ର ପରକ୍ଷଣରେ, ବେଶୀ ପଇସା ଖର୍ଚ୍ଚ ହୋଇଯିବ ବୋଲି ପୋଷ୍ଟକାର୍ଡଟିରେ ଚିଠି ଲେଖିଲା ।

ପ୍ରାୟ ଏକମାସ ପର୍ଯ୍ୟନ୍ତ କୃପାସିନ୍ଧୁ ନିଜକୁ ଭାଗ୍ୟବାନ ଏବଂ ଅତ୍ୟଧିକ ଯୋଗ୍ୟ ବ୍ୟକ୍ତିଟିଏ ବୋଲି ଭାବି ଉତ୍‌ଫୁଲ୍ଲିତ ରହିଲା । ମାତ୍ର ଘରୁ ଯେଉଁ ଚିଠିଟି ପରେ ସେ ପାଇଲା ତାହା ଦୁଃସମ୍ବାଦପୂର୍ଣ୍ଣ ଥିଲା । ତେଣୁ ପୁଣି ସେ ନିଜର ସେଇ ପ୍ରିୟବନ୍ଧୁ ପାଖକୁ ସମ୍ବେଦନା ଆଶାରେ ଧାଇଁଲା ।

ତାକୁ ଦେଖି ଖୁରସିଦ୍ ପଚାରିଲା, 'ତୁ ଭାରି ଦୁଃଖି ଜଣା ପଡୁଛୁ । କଥା କଣ ?'

'ଘରୁ ଚିଠିଟିଏ ଆସିଛି ।'

'ସବୁ କୁଶଳ ତ ?'

'ନାଇଁ କିଛି ଭଲ ନାହିଁ ।'

'ଦୁଃଖିତ ହେଉଚି ମୁଁ । ମା' ଓ ପୁଅଙ୍କ ଦିହ ଭଲ ଅଛି ତ ?'

'ସେମାନେ ସୁସ୍ଥ ସବଳ ଅଛନ୍ତି । କିନ୍ତୁ ଆଉ ଗୋଟାଏ କଥା ମୋତେ ଦୁଃଖ ଦେଉଛି ।'

'ସେଇଟା ପୁଣି କଣ ?'

'ମୋର ଭାଇ ଦୟାନିଧି ପୁଣି ଆସି ଘରେ ବସିଛନ୍ତି ।'

'ସତେ ନା କଣ ! କାହିଁକି ?' ସବୁ କିଛି ଅନୁମାନ କରିବା ଭଂଗୀରେ ଖୁଦସିଦ୍ ପଚାରିଲା ।

'ସେ ନିଲମ୍ବିତ ହୋଇଛନ୍ତି । ପୋଲିସ ସାହାବ ଗୋଟାଏ ଅନୁସନ୍ଧାନ କମିଟି ବସେଇଛନ୍ତି ସେଥିପାଇଁ ।' ଖୁରସିଦ୍ ଆଶ୍ୱାସନା ଦେଇ କହିଲା, 'ଓହୋ, ଏଥିପାଇଁ ଏତେ ଭୟ କରିବା କଣ ଦରକାର ? ଭବିଷ୍ୟତରେ କଣ ହୋଇଯିବ, ସେକଥା ଭାବି ଏବେ ଦୁଃଖି ହେବା ଅନୁଚିତ । ଏଇ ଲାଞ୍ଚ ମାମଲା ସବୁ ପ୍ରମାଣ କରିବା କଷ୍ଟକର । ହରିଦାସ ବୋଷ ପରି ଧନ କମେଇ ଥିଲେ କିଛି କ୍ଷତି ହୋଇ ନ ଥାନ୍ତା ।'

'କିନ୍ତୁ କେତେ ଲଜ୍ୟା ଓ ନିନ୍ଦା ହେଲା କହିଲୁ ? ଥରେ ଯଦି ଚାକିରୀ ଚାଲିଗଲା ତ ପୁଣି ପାଇବା କଷ୍ଟ ।'

'ସେ କଣ ସେମିତି କିଛି ଧନ ଠୁଳ କରି ନାହାନ୍ତି ?'

'ସେମିତି କିଛି ନୁହେଁ-ସେତ ପଇସା କମେଇବା ଆରମ୍ଭ କରିଥିଲେ ମାତ୍ର । ଫାଣ୍ଡି ଅଫିସର ପଦରେ ସେ ଯଦି ଆଉ ଦଶବାର ବର୍ଷ ରହିପାରିଥାନ୍ତା ତାହେଲେ ସିନା କିଛି ହୋଇଥାନ୍ତା । ଏବେ ତ ତାଙ୍କର ସଞ୍ଚୟ ତକ ସରିବା ପରେ ସାରାପରିବାର ଉପରେ ଗୋଟାଏ ବୋଝ ହୋଇ ଜୀବନଟା ଯାକ ରହିବେ ।'

'ଆରେ ମୋଟେ ବ୍ୟସ୍ତ ହୁଅନା ମ । ଲାଞ୍ଚ ମାମଲା ଜମାରୁ ପ୍ରମାଣିତ ହୋଇ ପାରିବନି । ସେ ପୁଣି ତାଙ୍କ ଚାକିରୀରେ ପୁର୍ନବସ୍ଥାପିତ ହେବେ । ସବୁ ଠିକ ହୋଇଯିବ ।'

ଏହି ପ୍ରକାରେ ଖୁରସିଦ୍ ଅଲ୍ଲୀ କୃପାକୁ ଆଶ୍ୱାସନା ସିନା ଦେଲା ହେଲେ, ସେ ଜାଣିଥିଲା ଯେ ଏ ମାମଲାରୁ ଖସିବା ଆଶା କ୍ଷୀଣ ।

ବିଭାଗୀୟ ଅନୁସନ୍ଧାନ ଧିରେ ସୁସ୍ଥେ ସାଧାରଣ ଭାବେ ଯେମିତି ଚାଲେ, ଚାଲିଲା । ଜଣେ ଟାଣୁଆ ଓକିଲକୁ ଦୟାନିଧି ନିଜ ପାଇଁ ଲଢ଼େଇଲା । ସାକ୍ଷୀମାନଙ୍କୁ ଘୁସ୍ ଦେଇ ବେଶ ପଇସା ଖର୍ଚ୍ଚ କଲା । ଶେଷରେ ଶୁଣାଣି ହେଲା ଓ ସେ ଚାକିରୀରୁ ବରଖାସ୍ତ ହେଲା । ତାପରେ ପୁଣି ତାର ଓକିଲକୁ ଆଉରି ବେଶୀ ପଇସା ଦେଇ ଉପରକୋର୍ଟରେ ଅପିଲ କଲା । ପୂର୍ବର ଅନୁସନ୍ଧାନରେ କିଛି ଅନିୟମିତତା ରହି ଯାଇଥିବାରୁ ପୁଣି ଅନୁସନ୍ଧାନ ଚାଲିଲା । ଶେଷକୁ ପୁଣି, ଆଉଥରେ ତାକୁ ବରଖାସ୍ତ ଆଦେଶ ମିଳିଲା । ଲେଫନାଣ୍ଟ ଗଭର୍ଣ୍ଣର ପର୍ଯ୍ୟନ୍ତ, ଯେତେ ଯେତେ ଅପିଲ କରି ଲଢ଼ିଲେ ବି କିଛି ସୁଫଳ ମିଳିଲା ନାହିଁ । ଓକିଲମାନଙ୍କ ପକେଟ ଭରିବା ସାର ହେଲା ଯାହା ।

ଏବେ ଦୟାନିଧି ନିକିମା ହୋଇ ଘରେ ଅଶାନ୍ତିରେ ବସି ରହିଲା । ବାପା ଓ ଭାଇଙ୍କୁ ସେ ଚାଷକାମରେ ସାହାଯ୍ୟ କଲା । ଆଉ ଗୋଟାଏ ଚାକିରୀ ବି ଖୋଜିଲା ।

ଦୟାନିଧିର କେଶ୍ ଚାଲିଥାଏ, ପୂଜା ଛୁଟି ଆସିଲା । କୃପା ପ୍ରଥମଥର ପାଇଁ ତାର ପାଞ୍ଚମାସର ପୁଅକୁ ଦେଖିବା ପାଇଁ ଘରକୁ ଆସିଲା । ବାପକୁ ଦେଖି ଶିଶୁଟି ହସିଲା । ଏହା ଦେଖି କୃପା ଉଲ୍ଲାସ ଓ ଗର୍ବରେ ଫାଟି ପଡ଼ିଲା ।

ବଡ଼ଦିନ ଛୁଟିରେ ପୁଣି ସେ ଘରକୁ ଆସିଲା । ଏଥର ତାର ସ୍ତ୍ରୀ ପୂରାପୂରି ସୁସ୍ଥ ଏବଂ ସୁଶ୍ରୀ ଦେଖାଯାଉଥିଲା । ଅଧିକନ୍ତୁ ସେ କୃପାକୁ ପୁଅଟିଏ ଜନ୍ମ କରି ଦେଇଥିବାରୁ

କୃପା ତାକୁ ବହୁତ ଆଦର କଲା । କିନ୍ତୁ ନିର୍ମଳାବାଳାକୁ ସେ ଯେଉଁ ପ୍ରକାରେ ଭଲ ପାଉଥିଲା, ସେ ପ୍ରକାର ପ୍ରେମ ଏ ସ୍ତ୍ରୀକୁ ଦେଇପାରିଲା ନାହିଁ ।

ଛୁଟି ଶେଷରେ ସେ ପୁଣି ନିଜ କର୍ମସ୍ଥଳୀକୁ ଫେରିଲା । ଗଲାବେଳେ ଚିଠି ଦେବାକୁ ସାନଭାଇକୁ ତାଗିଦ୍ କରି କହିଗଲା । ଫେବୃଆରୀ ମାସରେ  ତାର ସାନଭାଇ ହରିବନ୍ଧୁ ଚିଠି ଲେଖି ଜଣାଇଲା ଯେ କୃପାର ସ୍ତ୍ରୀ ପୁଣି ଗର୍ଭବତୀ ହୋଇଅଛି ।

ଏକଥା ଜାଣି କୃପା ଖୁବ୍ ଖୁସିହେଲା । ଏଥରକ ତା'ର ପୁଅ ହେବ କି ନାହିଁ ବୋଲି ଭାବି ହେଲା । ପ୍ରାୟ ସବୁବେଳେ ସେ ତାର ସ୍ତ୍ରୀ, ପୁଅ ଏବଂ ଭାବି ସନ୍ତାନ ବିଷୟରେ ଭାବିହେଲା । ଏବେ ଆଉ ସେ ନିର୍ମଳାବାଳା ବା ନିଶିବାଳା କଥା ସେତେ ବେଶୀ ମନେପକାଉ ନଥିଲା । ପୁଣି କିଛିଦିନ ଉତ୍ତାରେ ଗୋଟାଏ ଚିଠିର ସମ୍ବାଦ ତାର ଚିନ୍ତାଧାରାକୁ ନୂଆ ମୋଡ଼ ଦେଲା ।

ଏ ଚିଠିଟି ନିଶିବାଳାର ଶ୍ୱଶୂରଙ୍କଠାରୁ ଆସିଥିଲା । ବାହାଘର ତିଥି ସବୁ ଆଗକୁ ପଡୁଥିବାରୁ, ଗୃହଯୋଗ୍ୟା ନିଶିକୁ ତାର ସ୍ୱାମୀ ପାଖକୁ ପଠେଇବାକୁ ବ୍ୟବସ୍ଥା କରିବା ପାଇଁ ସେ କୃପାକୁ ଅନୁରୋଧ କରିଥିଲେ । କୃପା ଭାବିଲା ନିଶିକୁ ମାତ୍ର ୧୨ବର୍ଷ ବୟସ ହୋଇଛି । ତେଣୁ ଏତେ ଅଳ୍ପବୟସରେ ଶାଶୂଘରକୁ ନ ଯାଇ ଆଉ ବର୍ଷେ ପରେ ସେ ବ୍ୟବସ୍ଥା କଲେ ଠିକ୍ ହେବ । ମାତ୍ର କୃପାର ବାପା କହିଲେ ଯେ କରଣ ଜାତିର ନିୟମ ଅନୁସାରେ ନିଶିବାଳା ଆଉ ବେଶୀ ଦିନ ବାପାଘରେ ରହିବା ଠିକ୍ ହେବ ନାହିଁ । ତେଣୁ ଠିକ୍ ହେଲା ଯେ ନିଶିକୁ ଶ୍ୱଶୂର ଘରକୁ ଯିବାକୁ ହେବ ।

ବ୍ରାହ୍ମଣ ପୁରୋହିତ ଶୁଭଲଗ୍ନ ଠିକ୍ କଲେ । ନିଶିର ସ୍ୱାମୀ ଆସିବେ ଏବଂ ପୁର୍ନବିବାହ ପ୍ରଥା ପୂରଣ ହେବ । ତାପରେ ନିଶିବାଳାକୁ ସାଙ୍ଗରେ ନେଇ ସ୍ୱାମୀ ତାଙ୍କ ଘରକୁ ଯିବେ ।

ଏକଥା ଜାଣି ନିଶି ମନେମନେ କୁରୁଳି ଉଠିଲା । ସ୍ୱାମୀସହ ରହିବାର ଭୟ ଓ ଆନନ୍ଦର ଦ୍ୱୈତଭାବରେ ସେ ଉତ୍ତେଜିତ ହୋଇଗଲା । ଭୟ ଓ ଦୁଃଖରେ ପୁଣି ମ୍ରିୟମାଣ ହୋଇ ପଡ଼ିଲା। କାରଣ ତାକୁ ଜେଜେ, କକା ଖୁଡ଼ୀ ଓ ସାଙ୍ଗ ହୋଇ ଖେଳୁଥିବା ଭାଇଭଉଣୀଙ୍କଠାରୁ ବିଦାୟ ନେଇ ଜଣେ ଅଜଣା ଲୋକର ଅମାନତ ଓ ଖେଳଣା ହୋଇ ଅଜଣା ଘରେ ରହିବାକୁ ପଡ଼ିବ । ସେ ଯେ ପରିବାର ପ୍ରତି ଅତ୍ୟନ୍ତ କାତର ସ୍ୱଭାବର ଝିଅଟିଏ, ଏକଥା ନିଜେ ସେ ଭଲ କରି ଜାଣିଥିଲା । ଏଣେ ଛୁଆଜନ୍ମ କରିବା କଥାଟି ତାକୁ ଭୟ ଦେଉଥିଲା ।

ଶୁଭଲଗ୍ନ ସ୍ଥିର ହୋଇ ପୂଜାବିଧି ସରିବାବେଳକୁ ନିଶିର ଶ୍ୱଶୂର ଘରୁ ଜଣେ

ଆସି ଖବର ଦେଲା ଯେ ନିଶିର ସ୍ୱାମୀ ମରିଗଲେ । ଏ ଖବରଟିକୁ ହରିବନ୍ଧୁ ସଙ୍ଗେ ସଙ୍ଗେ ପତ୍ର ଲେଖି କୃପାକୁ ଜଣେଇଲା । ଦୁଃଖିନୀ ନିଶିବାଳା ଉପରେ ଏପ୍ରକାର ବିପତ୍ତି ପଡ଼ିବାର ଦେଖି କୃପା ଭୀଷଣ କଷ୍ଟ ପାଇଲା । ବିଚାରୀ ନିଶିଟି ଯୁବାଅବସ୍ଥାରେ ହିଁ ବିଧବା ହୋଇଗଲା । ଏଣିକି ଏଇ ବିଧବା ଅବସ୍ଥାରେ ତାକୁ ସାରାଜୀବନ କଟାଇବାକୁ ପଡ଼ିବ । କୃପାସିନ୍ଧୁ ତାର ବାପା ଓ ଭାଇଙ୍କୁ ତାଗିଦ କରି ଲେଖିଲା ଯେ ନିଶିବାଳାକୁ ଯେପରି ଶ୍ୱଶୂର ଘରକୁ ପଠା ନ ହୁଏ ଓ ସବୁ ପ୍ରକାର ଆନନ୍ଦ ଓ ଯତ୍ନ ସହକାରେ ନିଶିକୁ ତାଙ୍କ ଘରେ ରଖାଯାଏ, ଯେଉଥିପାଇଁକି ତାକୁ ତାର ବୈଧବ୍ୟ ଯନ୍ତ୍ରଣା ବାଧିବ ନାହିଁ । ନିଶିର ଶ୍ୱଶୂର ଘର ମଧ ତାକୁ ନିଜ ଘରକୁ ନେବାକୁ ମନା କରିଦେଲେ ।

ବିଧବା ହୋଇସାରିଛି ଜାଣିବା ପରେ ନିଶିବାଳା ପୁରାପୂରି ଭାଙ୍ଗିପଡ଼ିଲା । ତାର ଚୂଡ଼ୀ ଭାଙ୍ଗି ଦିଆଗଲା, ରଙ୍ଗୀନ ଶାଢ଼ୀ ବଦଳରେ ତାକୁ ଧଳାଶାଢ଼ୀ ଦିଆଗଲା । ତାର ରୂପାଗହଣା ଉତାରି ରଖି ରଙ୍ଗୀନ ଶାଢ଼ୀଗୁଡ଼ିକୁ ତାର ସାବତମା ଓ ଅନ୍ୟ ଭଉଣୀମାନଙ୍କ ଭିତରେ ବାଣ୍ଟି ଦିଆଗଲା । ସାମାଜିକ ନିୟମାନୁଯାୟୀ ସେ ସ୍ୱାମୀ ଶୋକରେ କାନ୍ଦିଲା । କିନ୍ତୁ ଭିତରେ ଭିତରେ ସେ ଖୁସିଥିଲା କାରଣ ତାକୁ ଆଉ ନିଜର ଘରଛାଡ଼ି ଆଉ ଲୋକର ଘରକୁ ଯିବାକୁ ହେବ ନାହିଁ । ବୈଧବ୍ୟ କଣ ବୋଲି ଜାଣିବାର ବୟସ ତାର ହୋଇ ନଥିଲା । ଏବେ ତ ସେ ବାଳିକାଟିଏ ମାତ୍ର । ପୁରୁଷର ପ୍ରେମ ପାଇଁ ତା ମନରେ ବାସନା ତଥାପି ଜାଗ୍ରତ ହୋଇ ନଥିଲା ।

ନିଶିବାଳାର ଜୀବନରେ ଦୁଃଖ ଓ ସୁଖ ଛନ୍ଦାଛନ୍ଦି ହୋଇ ରହିଥିଲା ସିନା, କୃପାର ଜୀବନଟି କିନ୍ତୁ ଚାକିରୀ ଓ ପଇସା ଆୟ କରିବା ଭିତରେ ଠିକ୍ ଚାଲିଥିଲା । କେବଳ ବିଧବା ଝିଅଟି କଥା ମନେ ପଡ଼ିଲେ ସେ ଖୁବ୍ ଦୁଃଖି ହୋଇ ଯାଉଥିଲା । ଆଉ ଯେବେ ତାର ସ୍ତ୍ରୀ, ପୁଅ ଓ ଆଉ ଗୋଟାଏ ସନ୍ତାନ ହେବା କଥା ଭାବୁଥିଲା ତ ସେତେବେଳେ ଖୁବ୍ ଖୁସି ହୋଇଯାଉଥିଲା । ସବୁବେଳେ ସେ ମନେମନେ ଭାବୁଥିଲା ଯେ, ତାର ଭାବୀ ସନ୍ତାନଟି ନିଶ୍ଚୟ ପୁଅଟିଏ ହେବ । ହରିବନ୍ଧୁ ଘରର ଚାଷବାସ ଓ ପରିବାରର ସୁଖଦୁଃଖ କଥା ଲେଖି ନିୟମିତ ତାକୁ ଚିଠି ଦେଉଥିଲା । ଦୟାନିଧି ତାର କେଶ୍, ଅପିଲ, ଓ ଓକିଲଙ୍କର ପଇସାଖିଆ ମନୋଭାବ କଥା ଲେଖି ମଝିରେ ମଝିରେ ତାକୁ ଚିଠି ଦେଉଥିଲା । ପୁଣି କୃପାର ପୁଅଟିଏ ହେଲା । ଏକଥା ସେ ଖୁରସିଦ୍ ଅଲ୍ଲୀକୁ ଜଣାଇଲା ଓ ଦୁହେଁ ମିଶି ଖୁସି ମନେଇଲେ । ନିଜର ଦୁଇ ପୁଅଙ୍କର ନାମ ସେ ଯଥାକ୍ରମେ ଗୁରୁଚରଣ ଏବଂ ସାଧୁଚରଣ ରଖିଲା ।

ଏଇ ଭଳି ନୂଆ ଖୁସି ଉତ୍ସବ ଅବସରରେ ଗୋଟାଏ ଅଡୁଆ ମଧ୍ୟ ଜୁଟିଗଲା । କଥାଟା ମଧୁସୂଦନ ଏବଂ ତାଙ୍କର ଜମିଜମାକୁ ନେଇ, ଯାହା ଚାଷୀ ଜୀବନରେ ଥରେ ଅଧେ ଦେଖାଯାଏ । ଦୟାନିଧିର ଗଣ୍ଡଗୋଳକୁ ଆୟତ୍ତ କରିବାର ଅନୁଭୂତି କ୍ଷମତା ଥିବାରୁ ମଧୁସୂଦନ ତାକୁ ପଠେଇଦେଲେ । ଧାନ ପାଚିଲା ପରେ ଦୟାନିଧି ତାର ଭଡ଼ାଟିଆ ଗୁଣ୍ଡାକୁ ନେଇ ଧାନ ଅମଳ ପାଇଁ ଗଲା । ବିରୋଧି ଦଳ ବି ଅମଳ ପାଇଁ ସଜବାଜ ହୋଇ ଆସିଥିଲେ । ଦି'ଦଳ ଭିତରେ ଲାଠିମାଡ଼ ହେଲା । କେତେକ ଖଣ୍ଡିଆ ଖାବରା ହେଲେ । କୋର୍ଟରେ କେଶ୍ ଏବଂ କାଉଣ୍ଟର କେଶ୍ ବି ଫାଇଲ ହେଲା । ଗଣ୍ଡଗୋଳିଆ ଜମି ପାଖରେ ଥିବା ଅନ୍ୟ ଜମି ମାଲିକମାନଙ୍କୁ ବେଶ୍ ପଇସା ଦେଇ ଦୟାନିଧି ସେମାନଙ୍କୁ ସାକ୍ଷୀ ହିସାବରେ ବାଲେଶ୍ୱର ନେଇଗଲା । ସେମାନେ ସମସ୍ତେ ସାକ୍ଷ୍ୟ ଦେଇ କହିଲେ ଯେ ଜମିଟି ପ୍ରକୃତରେ ମଧୁସୂଦନର । ବିପକ୍ଷ ଦଳ ମଧ୍ୟ ସାକ୍ଷୀ ନେଇଗଲେ । ପାଖ ଜମି ସବୁ ସେମାନଙ୍କର ବୋଲି ସେମାନେ କହିଲେ । ଏମିତି ଗଣ୍ଡଗୋଳ ବଢ଼ିବଢ଼ି ଗାଁର ଅଧା ଲୋକ ସେଥିରେ ଜଡ଼ିତ ହୋଇ ପଡ଼ିଲେ । ମାଡ଼ଗୋଳ ଏବଂ କଳିକଜିଆର କଥାଟା ବିରାଟ ହୋଇଗଲା । ଗୋଟାଏ ସାକ୍ଷୀ ପ୍ରମାଣ ଉପରେ ଆଉ ଗୋଟାଏ ମିଛସତ ସାକ୍ଷୀ ହୋଇ କେଶ୍‌ଟି ଏମିତି ଜଟିଳ ହୋଇ ପଡ଼ିଲା ଯେ , ମାଜିଷ୍ଟ୍ରେଟ ତା'ର ବିନ୍ଦୁ ବିସର୍ଗ କିଛି ଧରିପାରିଲେ ନାହିଁ । ଯେତେଯେତେ କେଶ୍ ବଢୁଥାଏ, ଓକିଲଙ୍କ ପକେଟ ସେତେ ଓଜନ ହେଉଥାଏ । ସେମାନେ ବେଶ୍ ଖୁସିଥାନ୍ତି । ପୋଲିସଙ୍କୁ ବି ବେଶ୍ ବେଶୀ କାମ ପଡ଼ିଲା । ସେମାନେ ଅବଶ୍ୟ ଆପତ୍ତି କଲେ ନାହିଁ । କାରଣ ଗାଁବାଲାଙ୍କଠାରୁ ପଇସା ଶୋଷିବାର ବାଟ ସେମାନେ ଆପଣେଇ ନେଇଥିଲେ ।

ପ୍ରଥମେ ପ୍ରଥମେ ଗାଁ ବାଲାମାନେ ଘଟଣାଟିକୁ ଏକ ମହାମନୋରଞ୍ଜକ ଘଟଣା ଭଳି ଧରିନେଇ ଥିଲେ । କିଏ ଜିତିବ ଓ କିଏ ହାରିବ ତାହାହିଁ ଦେଖିବାକୁ ପାର୍ଟିକୁ ଉସକାଉଥିଲେ । ଅବଶେଷରେ ସେମାନେ ଅନୁଭବ କଲେ ଯେ ଘଟଣାଟି ଏକ ଖର୍ଚ୍ଚବହୁଳ ଓ ଖତରନାକ ଘଟଣା । ଦୟାନିଧି ଓକିଲମାନଙ୍କୁ ଫିସ୍ ଓ ସାକ୍ଷୀମାନଙ୍କୁ ଭଡ଼ା ଦେଇ ଦେଇ ଏମିତି ଖର୍ଚ୍ଚାନ୍ତ ହେଲା ଯେ କୃପାସିନ୍ଧୁକୁ ଶେଷରେ ପଇସା ପଠେଇବାକୁ ହେଲା । ଭାଗ୍ୟକୁ ସେ ବନ୍ଧୁକ ଲାଇସେନ୍ସ ବାବଦରୁ ଢ଼େର ମୁନାଫା କମାଉ ଥିବାରୁ ଟଙ୍କା ଯୋଗାଇ ପାରିଲା ।

ଏମିତି ଭାବରେ ସମସ୍ୟା ଓ ଜଂଜାଳର ଘେର ଭିତରେ ଖର୍ଚ୍ଚବହୁଳ ଯୋଗ ପଡ଼ିଥିବା ବର୍ଷଟିର ଅନ୍ତ ହେଲା ।

# ସପ୍ତମ ପରିଚ୍ଛେଦ

୧୯୦୭ ମସିହାର କଥା । ଜୁନ୍ ମାସଯାଏ ସବୁ ଠିକ୍‌ଠାକ୍ ଚାଲିଥିଲା । ତାପରେ ପରେ ଭଲ ବର୍ଷା ବି ହେଲା । ଜମିସବୁ ଭଲଭାବେ ବତୁରି ଯିବାରୁ ଚାଷୀମାନେ ନିଜନିଜର ଚାଷବାସ କାମରେ ଲାଗିପଡ଼ିଲେ । ଜୁଲାଇ ପନ୍ଦର ତାରିଖ ଯାଏ ସବୁ ଠିକ୍‌ରେ ଚାଲିଥିଲା । ଆଉ ଟିକେ ଅଧିକ ବର୍ଷାହେଲେ ତଳି ରୁଆରୁଇ କରିବାକୁ ଚାଷୀକୂଳ ଅପେକ୍ଷା କରି ରହିଥିଲେ । କିନ୍ତୁ ତାପରେ ପ୍ରବଳ ବର୍ଷା ହେଲା । ସମତଳ ଅଞ୍ଚଳ ମାନଙ୍କରେ ବର୍ଷାର ପ୍ରକୋପ ଟିକେ କମ୍ ଥିଲା । କିନ୍ତୁ ପାହାଡ଼ର ଉପର ମୁଣ୍ଡରେ ଜୋରରେ ବର୍ଷା କଚିଲା । ରାଞ୍ଚି ମାଳଭୂମିର ଗଡ଼ଜାତ ଓ ପାହାଡ଼ିଆ ଅଂଚ଼ଳ, ଛୋଟନାଗପୁରର ପାହାଡ଼ିଆ, ଢ଼ାଲୁ ଅଞ୍ଚଳରେ ମୂଷଳ ଧାରାରେ ବର୍ଷାହେଲା । ତେଣୁ ମହାନଦୀ, ବ୍ରାହ୍ମଣୀ, ସୁବର୍ଣ୍ଣରେଖା ଏବଂ ବୁଢ଼ାବଳଙ୍ଗ ଇତ୍ୟାଦି ନଦୀରେ ପ୍ରବଳ ବନ୍ୟାର ପ୍ରକୋପ ଦେଖାଦେଲା । ସବୁ ନଦୀରେ ଏକା ସାଙ୍ଗରେ ବନ୍ୟା ଆସିବାରୁ ଓଡ଼ିଶାର ଜମି ସବୁ ପାଣିରେ ବୁଡ଼ି ରହିଲା । ମାଟିଘର ସବୁ ଭୁଶୁଡ଼ି ପଡ଼ିଲା । ଅନେକ ମଣିଷ ଓ ଗୋରୁଗାଈ ଭାସିଗଲେ । ତଥାପି ବି ଜମିର ଚାଷକୁ ସମ୍ଭାଳି ନେବା ପାଇଁ ସମୟ ଥିଲା । ବର୍ଷା ଥମିଗଲା । ଚାଷୀମାନେ ଜମିରୁ ପାଣି ଛାଡ଼ିବାକୁ ଅପେକ୍ଷା କରି ରହିଲେ କାରଣ ଜମିରୁ ପାଣି ଛାଡ଼ିଲେ ହିଁ ରୁଆରୁଇ କାମ ଆରମ୍ଭ ହେବ ।

ଯାପରେ ବି ପୁଣି ବର୍ଷା ହେଲା ଏବଂ ମୂଷଳଧାରାରେ ଅବିରତ ବର୍ଷା ଲାଗି ରହିଲା । ନଈମାନଙ୍କରେ ପୁଣି ପାଣି ଆସିଲା । ବ୍ରାହ୍ମଣୀ, ବୁଢ଼ାବଳଙ୍ଗ, ମହାନଦୀ ଓ ସୁବର୍ଣ୍ଣରେଖା ଇତ୍ୟାଦି ନଈ ଗୋଟାକ ପରେ ଗୋଟାଏ ପାଣିରେ ଉଛୁଳି ଉଠିଲେ । ପୂର୍ବ ଅପେକ୍ଷା ଆହୁରି ପ୍ରବଳ ଭାବରେ ପାଣି ସୁଅ ଛୁଟିଲା । ଏଥରକ ବି ବହୁ ମଣିଷ ଓ ଗୋରୁଗାଈ ପାଣି ସୁଅରେ ଭାସି ମରିଗଲେ । ନଈକୂଳିଆ ଘରସବୁ ପାଣିରେ ଭାସିଗଲା । ନଈକୂଳର ଗାଁ ସବୁ ନଦୀଗର୍ଭରେ ଲୀନ ହୋଇଗଲା । ସରକାର ତିଆରି କରିଥିବା ଉଚ୍ଚବନ୍ଧ ମାନଙ୍କରେ ଯାଇ ଲୋକମାନେ ଆଶ୍ରୟ ନେଲେ । କୃପାସିନ୍ଧୁ ଆଶ୍ୱସ୍ତ ଥିଲା ଯେ ତାର ଘରଟି ନଦୀ ପତ୍ତନଠାରୁ ଯଥେଷ୍ଟ ଉଚ୍ଚରେ ଥିବାରୁ ସେଠାରେ ବନ୍ୟାପାଣି ଯାଇ କ୍ଷତି କରି ପାରିବ ନାହିଁ ।

ନଈଗୁଡ଼ିକ ପାହାଡ଼ରୁ ଅତି ପ୍ରବଳ ବେଗରେ ଝରି ଆସୁଥିଲେ । ବାଟରେ ଗୋଟାଏ ନଈର ପାଣି ଆଉ ଗୋଟାଏର ସାଥିରେ ମିଶି ଗାଁ ସାରା ପ୍ରବଳ ବେଗରେ ମାଡ଼ି ଯାଉଥିଲା । ଧାନତଳି ଗୁଡ଼ିକ ଧୋଇ ହୋଇ ଯାଇ ସମୁଦ୍ର ଗର୍ଭକୁ ଚାଲିଗଲା । ଟିଙ୍ଗିଜିଆ ନାମକ ଏକ ପ୍ରକାର ଧାନ ଯାହାର ଲମ୍ବାଲମ୍ବା ସିକଡ଼ ଯେତେବେଶୀ ପାଣି

ହେଲେ ବି ଉପରକୁ ଉଠି ରହେ ଓ ସହଜରେ ପାଣିରେ ବୁଡ଼େ ନାହିଁ । ସେଇ ପ୍ରଜାତିର ଧାନ ମଧ୍ୟ ପାଣିର ପ୍ରାବଲ୍ୟରେ କ୍ଷତିଗ୍ରସ୍ତ ହେଲା ।

ବର୍ଷା ଥମିଲା ଓ ବନ୍ୟା ଛାଡ଼ିଲା । ସେତେବେଳକୁ ପୁଣି ଧାନ ବୁଣିବାର ସମୟ ନ ଥିଲା । ଅଭିଜ୍ଞ ଚଷୀମାନେ ଆକାଶର ତାରାମାନଙ୍କୁ ଚହିଁ ଗଣନା କଲେ ଯେ ଏବେ ଧାନ ବୁଣିଲେ ଭଲ ହେବ । ଏଣିକି ଯୋଗପାଗ ଭଲ ପଡ଼ିବ । ଯେଉଁ ଚଷୀମାନଙ୍କର ତଳି ଧୋଇ ଯାଇଥିଲା ସେମାନେ ଜମିରେ ଧାନ ରୋଇବା ପାଇ ଧାନତଳି କିଣିବା ନିମନ୍ତେ ଏଣେତେଣେ ଧାଁ ଧାପଡ଼ ଚଳେଇଲେ ସିନା, ହେଲେ ଫଳ କିଛି ହେଲା ନାହିଁ ।

ଯେଉଁମାନଙ୍କର ବଳକା ଧାନ ବିହନ ଥିଲା ସେମାନେ ପୁଣି ଥରେ ଧାନ ବୁଣିଲେ । ଗରୀବ ଲୋକମାନେ ନିଜନିଜର ଜିନିଷପତ୍ର ବନ୍ଧା ପକେଇ ଟଙ୍କା କରଜ କଲେ ଓ ସେଥିରେ ଧାନ ବିହନ କିଣିଲେ । ସରକାର ମଧ୍ୟ ଚଷୀମାନଙ୍କୁ ଅଳ୍ପ ସୁଧରେ ଋଣ ଯୋଗାଇଲେ । ଶେଷରେ ପ୍ରାୟ ସବୁ ଜମିମାନଙ୍କରେ ଚଷବାସ କାମ ସମ୍ପୂର୍ଣ୍ଣ ହୋଇଗଲା ।

ଧାନବିହନ କିଣିବା ଆବଶ୍ୟକ ହେବାରୁ କୃପାସିନ୍ଧୁର ଗାଁରେ ମତାନ୍ତର ମେଣ୍ଟିଲା। କାରଣ ଆଉ ସେସବୁରେ ଖର୍ଚ୍ଚବାର୍ଚ୍ଚ କରିବାକୁ ଲୋକମାନଙ୍କର ସାମର୍ଥ୍ୟ ନଥିଲା । ମାଜିଷ୍ଟ୍ରେଟମାନେ କୋର୍ଟରେ ବସିବସି ହାଇ ମାରିଲେ । କାରଣ ଚଷୀମାନେ ଅଯଥା ମାଲିମକଦ୍ଦମାରେ ମାତିବା ପାଇଁ ଆଉ ସମର୍ଥ ନ ଥିଲେ ।

ବର୍ଷା ବନ୍ଦ ହେଲା । ଆଉ ଜମାରୁ ବର୍ଷା ହେଲାନି । ବନ୍ୟାଜଳ ନଈକୁ ଫେରିଗଲା । ନଈଗୁଡ଼ିକ ଖରାଦିନର ନଈପରି କ୍ଷୀଣଗର୍ଭା ହୋଇଗଲେ । ଯେଉଁ ଖାଲୁଆ ଜାଗାଗୁଡ଼ିକ ପାଣିରେ ଭରି ରହିଥିଲା, ସେଗୁଡ଼ିକ ମଧ୍ୟ ଶୁଖିଗଲା । କୂଅଗୁଡ଼ିକ ଶୁଖିବାକୁ ଲାଗିଲେ । ପିଇବା ପାଣି ଅଭାବରୁ ବହୁତ ପଶୁପକ୍ଷୀ ମରିଗଲେ । ପାଗ ଅତ୍ୟଧିକ ଗରମ ହୋଇଗଲା । ଜମିସବୁ ଶୁଖିଗଲା । ପିଇବା ପାଣି ଅଭାବରୁ ସମୁଦ୍ରକୂଳିଆ ଗାଁମାନଙ୍କରୁ ନୋଳିଆମାନେ ଉଠି ଆସିଲେ । କାମ ଆଶାରେ ସେମାନେ ପୂର୍ବ ଅଞ୍ଚଳମାନଙ୍କୁ ଚଳିଗଲେ ।

ଫଗୁତି (ପ୍ରଳୟଙ୍କରୀ ଝଡ଼) ପରେ ମରୁଡ଼ି ଆସିଗଲା । ପୃଥିବୀର ଛାତି ଶୁଖି ଫାଟି ଗଲା । ଧାନସବୁ ପାଣି ଅଭାବରୁ ମରୁଡ଼ିରେ ଜଳିଗଲା । ଲୋକମାନେ ଆତଙ୍କିତ ହୋଇ ପଡ଼ିଲେ । ଏଥର ଆଉ ଚଷ ହେବାର ସମ୍ଭାବନା ଆଦୌ ନ ଥିଲା ।

ବର୍ଷାଋତୁ ଶେଷ ହେବାବେଳକୁ ପୁରୁଖା ଚଷୀମାନେ ମତ ଦେଲେ ଯେ

ବର୍ଷାହେବ ବୋଲି ତ ଭବିତବ୍ୟ କହୁଚି । ଗାଁରୁ ଗାଁ,ଚାଷୀମାନେ ବର୍ଷା ହେବା ପାଇଁ ପ୍ରାର୍ଥନା କରି ଗ୍ରାମଦେବତୀମାନଙ୍କୁ ପୂଜାର୍ଚ୍ଚନା କରିବାକୁ ଲାଗିଲେ । ବର୍ଷା ହେଲେ, କିଛି ନ ହେଲେ ବି ରବିଚାଷ ତ ହୋଇ ପାରିବ । ଲୋକେ ଟଙ୍କା କରଜ କରି ପାଖରେ ରଖିଲେ । ବର୍ଷା ଆସିଲେ ରବିଚାଷ କରିବେ ବୋଲି । ହେଲେ ବର୍ଷା କାହିଁ ?

ଶୀତଋତୁ ଆସିଗଲା । ବଡ଼ଦିନ ହେଲା । କିନ୍ତୁ ବର୍ଷାର ଦେଖା ନାହିଁ । ଲୋକମାନଙ୍କର ଭାଲେଣି ପଡ଼ିଗଲା । କୁଲିଗିରି କରିବାକୁ ହଜାର ହଜାର ଓଡ଼ିଆ ପୂର୍ବାଞ୍ଚଳକୁ ଚାଲିଗଲେ । କେତେକ ମାଲିକାମ କଲେ ତ ଆଉ କେତେକ ପାଲିଙ୍କି ବୋହିଲେ । କେତେକ ବି ଘରୋଇ ଚାକର ରୂପେ ଘରଧନ୍ଦା କାମ କରିବାକୁ ରହିଲେ ।

ସମୁଦ୍ରକୂଳିଆ ଗାଁ ମାନଙ୍କରୁ କେଉଟମାନେ ପୂର୍ବାଞ୍ଚଳକୁ ଚାଲି ଯାଇଥିଲେ ଏବଂ ଆଉ ଯେଉଁମାନେ ନ ଯାଇ ରହିଥିଲେ ସେମାନେ ଲୁଣମାରିବା କାମ କରି ଚଳିଲେ । ଲୁଣ ମାରିବା ପାଇଁ ଅନେକ କଟକଣା ରହିଥିଲା । ଯଦି କେହି ଅବକାରୀ ବିଭାଗର ଲୋକ ବିଚାରୀ ଗରିବ କେଉଟଟିଏକୁ କେଉଁଠି ଭେଟିଲା ତ ମୁହଁ ବୁଲାଇ ଦେଇ ସେ ଚାଲିଯାଉଥିଲା । ଯାହାହେଉ, ଏଇ ଗରୀବମାନେ ବେନିୟମ ଲୁଣମରାରୁ ଅନ୍ତତଃ କିଛି ଆୟ କରି ପେଟ ପୋଷି ହେଇ ପାରିଲେ ।

ଯେଉଁ ଓଡ଼ିଆମାନେ ପୂର୍ବଦେଶ ମାନଙ୍କୁ ଚାଲିଯାଉଥିଲେ, ସେମାନେ ସେଠାରେ ଭଲ ମୂଲ ପାଇଲେ ଏବଂ ପୋଷ୍ଟଅଫିସ ମାଧ୍ୟମରେ ଘରକୁ ମନି ଅର୍ଡର ଦ୍ୱାରା ଟଙ୍କା ପଠାଇଲେ । ଏମିତି ଭାବରେ ବହୁ ଓଡ଼ିଆ ଲୋକ ବାହାରର ଟଙ୍କା ପାଇ ଚଳିଲେ । ମାତ୍ର ବୁଢ଼ୀ, ବିଧବା, ଛୋଟା, କୁଜା, ଅନ୍ଧ ଭଳି ଅପାରଗମାନେ ଓ କୁଷ୍ଠରୋଗୀ, ପାଗଳ ଏବଂ ମୁର୍ଖମାନେ ଖୁବ୍ କଷ୍ଟ ଭୋଗିଲେ । ଏମାନେ ସେମାନଙ୍କ ସମ୍ପର୍କୀୟ ବା ପଡ଼ିଶା ମାନଙ୍କ ଦୟାରୁ ଜୀବନ ବଂଚୁଥିଲେ । ଏବେ ସେମାନେ ଭିକମାଗି ଚଳିବା ଛଡ଼ା ଭିନ୍ନ ବାଟ ନଥିଲା । ବିଭିନ୍ନ ସ୍ଥାନ ମାନଙ୍କରେ ସରକାର ଅନ୍ନଛତ୍ର ଏବଂ ରୋଷେଇଖାନା ଖୋଲିଲେ । ଲୋକଙ୍କୁ ନୂଆ ରାସ୍ତା ତିଆରି ଅବା ପୁରୁଣା ରାସ୍ତା ମରାମତି କାମରେ ବି ଲଗେଇଲେ । ଦିନକୁ ଦିନ ଓଡ଼ିଶାର ଦୁର୍ଦ୍ଦଶା ବଢ଼ିଲା । ଗରୀବ ଲୋକମାନେ ନିଜର ପିଲାମାନଙ୍କୁ ବିକ୍ରି କଲେ ନତୁବା ଛାଡ଼ି ପଳେଇଲେ । ଏମିତି ହେଲା ଯେ ଭୋକ ଜ୍ୱାଳାରେ ପିଲାମାନେ ସେମାନଙ୍କର ବାପା ମା'ଙ୍କଠାରୁ ବିଚ୍ଛିନ୍ନ ବି ହୋଇଗଲେ । ବହୁତ ଛୋଟ ଛୋଟ କାମ ବା ଭିକ୍ଷା ବୃତ୍ତି ଅଥବା ଚୋରୀବଟବାରୀ କରି ଜୀବନ ବଂଚିଲେ ।

ସେଥର ଗ୍ରୀଷ୍ମମାସ ଛୁଟିପରେ କୃପାସିନ୍ଧୁ ତାର ଅଫିସକୁ ଫେରିଲା ଏବଂ ଦେଖିଲା ଯେ ଅଧନଂଗଳା ଲୋକମାନେ କଚେରୀ ହତାରେ ବସି ରହିଛନ୍ତି । ସେ ଯାଇ ବଡ଼ବାବୁଙ୍କୁ ଏକଥା କହିଲା । ବଡ଼ବାବୁ ଅଫିସରୁ ବାହାରକୁ ଆସି ଲୋକମାନଙ୍କୁ କଣ ପାଇଁ ସେଠାରେ ବସିଛନ୍ତି ବୋଲି ପଚାରିଲେ । ଲୋକମାନେ ବଡ଼ବାବୁଙ୍କୁ ଖାଇବା ଦେବା ପାଇଁ ମାଗିଲେ ଏବଂ ସେମାନେ ଟ୍ରିବ୍ୟୁଟାରୀ ଅଂଚଳରୁ ଆସି ଅଛନ୍ତି ବୋଲି କହିଲେ । ସେମାନଙ୍କର ରାଜା ସେମାନଙ୍କୁ ଖାଇବା ଦେବାକୁ କିଛି ବ୍ୟବସ୍ଥା କରି ନାହାନ୍ତି । ତେଣୁ ମୋଗଲ ଅଞ୍ଚଳ ଅଧୀନ ରାଜ୍ୟରେ ଶାସକ ସେମାନଙ୍କ ପ୍ରଜା କଥା ବୁଝୁଛନ୍ତି ଜାଣି ସେମାନେ ଏଠାକୁ ପଳାଇ ଆସିଛନ୍ତି । ଏସବୁ ଶୁଣି ରାଜ୍ୟରେ ଦୁର୍ଭିକ୍ଷ ପଡ଼ିଛି ବୋଲି କୃପାସିନ୍ଧୁ ବୁଝିପାରିଲା ।

କମିଶନଙ୍କ କାନକୁ ଏ ଖବର ଗଲାମାତ୍ରେ ସେ ତାଙ୍କର ବନ୍ଧୁ ରାଜାଙ୍କୁ ଏଇ ଭୋକିଲା ଲୋକଙ୍କ ପାଇଁ କିଛି ସୁବ୍ୟବସ୍ଥା କରିବାକୁ ଅନୁରୋଧ କରି ଚିଠି ଲେଖିଲେ ।

ଏବେ ସହରମାନଙ୍କରେ ଦୁଃଖି ରଙ୍କିଙ୍କର ଏବଂ ବାସହୀନ ଲୋକଙ୍କର ଭିଡ଼ ଲାଗିଗଲା । ରେଙ୍ଗୁନରୁ ହଜାର ହଜାର ଟନ୍ ଚାଉଳ ଆମଦାନୀ କରି କଲେକ୍ଟର ଗ୍ରାମପଞ୍ଚାୟତ ମାନଙ୍କରେ ଅଭୁକ୍ତ ଗରୀବଙ୍କ ମଧ୍ୟରେ ବିତରଣ କରିବାକୁ ପଠେଇଦେଲେ ।

ପ୍ରତ୍ୟେକମାସ ଗାଁର ଖବର ଜଣେଇ ହରିବନ୍ଧୁ କୃପାସିନ୍ଧୁ ପାଖକୁ ଚିଠି ଲେଖୁଥିଲା । ସେ ଲେଖିଥିଲା ଯେ ସରକାରୀ ଚାଉଳ ବାଣ୍ଟିବା ପାଇଁ ଗାଁରେ ଯେଉଁ କମିଟି ଗଢ଼ା ହୋଇଛି ସେଥିରେ ତା'ର ବାପା ଜଣେ ସଭ୍ୟ ଅଛନ୍ତି । ଏହି କମିଟିର ବେଶ୍ ଦାୟିତ୍ୱ ରହିଚି । କାରଣ ବିନା ପଇସାରେ ଚାଉଳ ମିଳୁଛି ଜାଣି ଲୋକେ ଆଉ କଷ୍ଟକାମ ପାଇଁ ଯିବେ ନାହିଁ । ମାତ୍ର ଯେଉଁମାନେ କାର୍ଯ୍ୟକ୍ଷମ ସେମାନଙ୍କୁ ଚାଉଳ ନ ଦେବା ପାଇଁ ନିର୍ଦ୍ଦେଶ ଅଛି । ତେଣୁ କିଛି ଲୋକ ଜାଣିଶୁଣି ଭୋକିଲା ରହି ନିଜକୁ ଏମିତି କ୍ଷୀଣ କରି ଦେଉଛନ୍ତି, ଯେମିତିକି ସେମାନେ ଅକ୍ଷମ ଭଳି ଦେଖା ଯିବେ । ତେଣୁ କାମକୁ ନଯାଇ ମୋଫତରେ ଚାଉଳ ପାଇବେ ।

୧୯୦୮ ମସିହାର ସାରାବର୍ଷଟା ଏମିତି ଦୁର୍ଯୋଗ ଲାଗି ରହିଲା । କିଛି ଲୋକ ପୂର୍ବାଞ୍ଚଳକୁ ଗଲେ । କିଛିଲୋକ କାମପାଇଁ ଖାଦ୍ୟ ଯୋଜନାରେ କାମ କରି ପେଟପୋଷିଲେ । କେତେଜଣ ଛାଡ଼ ଚାଉଳ ବି ପାଇଲେ । କଲେକ୍ଟର ସାହେବ ହଜାର ହଜାର ଟନ୍ ଚାଉଳ ଆଣି ବାଣ୍ଟିଲେ, କେହି ଯେପରି ଭୋକ ଉପବାସରେ ନ ରହିବେ ବୋଲି । କେହି ଉପବାସରେ ଯେପରି ନ ରହନ୍ତୁ ବୋଲି ତଦାରଖ

କରିବାକୁ ପୋଲିସ ବାଲାଙ୍କୁ କଡ଼ା ନିର୍ଦ୍ଦେଶ ଦିଆ ହୋଇଥିଲା । କେହି ଉପବାସ - ମରଣ ନ ମରନ୍ତୁ ବୋଲି ପୋଲିସବାଲାଏ ସତର୍କ ଦୃଷ୍ଟି ରଖିଲେ । କିନ୍ତୁ ଯଦି ଉପବାସରେ କେହି କେଉଁଠି ମରିଗଲା ତ ସେ କେଶ୍‌ଟିକୁ କଲେରାରେ ମୃତ୍ୟୁ ଘଟିଚି ବୋଲି ରିପୋର୍ଟ କରାଗଲା ।

ପୁଣି ବର୍ଷାଋତୁ ଆସିବାରୁ କଲେକ୍ଟର ନିର୍ଦ୍ଦେଶ ଦେଲେ ଯେ ଚାଷୀମାନଙ୍କୁ କମ୍ ସୁଧରେ ଋଣ ଯୋଗାଇ ଦିଆଯାଉ । ଏହା ଦ୍ୱାରା ସେମାନେ ସୁବିଧାରେ ଚାଷ କରିପାରିବେ । ସେ ବର୍ଷ ଠିକ୍ ସମୟରେ ବର୍ଷା ହେଲା ଏବଂ ଚାଷୀମାନେ ଖାଦ୍ୟ ପାଇଁ କାମ କରିବା ଛାଡ଼ି ଚାଷରେ ମନ ଦେଲେ ନିଜ ନିଜର ଜମିକୁ ଚାଷ କରି ଧାନ ବୁଣିବା ନିମନ୍ତେ ପ୍ରସ୍ତୁତ କରି ରଖିଲେ ।

ତାପରେ ନଦୀରେ ବନ୍ୟାଜଳ ଆସିଲା କିନ୍ତୁ ସବୁ ନଈ ଏକସଂଗରେ ଉଛୁଳିଲେ ନାହିଁ । ବନ୍ୟା ବି ପ୍ରବଳ ହେଲା ନାହିଁ । ବନ୍ୟା ପାଣି ଜମିରୁ ଶୀଘ୍ର ଛାଡ଼ିଗଲା ଉତାରୁ ଚାଷୀମାନେ ରୁଆ ବେଉଷଣ କଲେ ।

ଆଉ ଥରେ ପୁଣି ନଈଗୁଡ଼ିକ ବନ୍ୟାପାଣିରେ ଉଛୁଳିଲେ । ବନ୍ୟା ହେଲା ଏବଂ ବନ୍ୟା ଛାଡ଼ିବା ଉତାରୁ ସ୍ତର ପରେ ସ୍ତର ପଟୁମାଟି ଜମି ଉପରେ ଲାଖି ରହିଲା । ଜମିଗୁଡ଼ିକ ଏଣିକି ସବୁଜିମାରେ ଭରିଗଲା । ସରକାରଙ୍କର ସାହାଯ୍ୟ ଏବଂ ଯତ୍ନ ପାଇ ନ ଥିଲେ ଲୋକମାନେ ଖାଇବାକୁ ପାଇ ନଥାନ୍ତେ ।

ଅମଳ ସମୟ ହେବା ଯାଏ ମଝିରେ ମଝିରେ ବର୍ଷାହେଉଥିଲା । ଏ ବର୍ଷ ଯେମିତି ଫସଲ ହୋଇଥିଲା ଗତ କୋଡ଼ିଏ ବର୍ଷ ଧରି ସେମିତିକା ଫସଲା ହୋଇ ନଥିଲା । ଲୋକମାନେ କହିଲେ, 'ବ୍ରିଟିଶ ସାମ୍ରାଜ୍ଞୀଙ୍କର ଆର୍ଶୀବାଦ ଓ ପଇସା ନେଇ ଚାଷ କରିଥିବାରୁ ସେ ବର୍ଷ ଏପରି ଭଲ ଚାଷ ହୋଇଛି । କେତେକ କହିଲେ ରେଳ ଯୋଗାଯୋଗର ଆଶିଷରୁ ଚାଷ ଭଲ ହୋଇଛି । କାରଣ ବାଷ୍ପୀୟ ଇଞ୍ଜିନର ପବିତ୍ର ଧୂଆଁ ଆମ ପକ୍ଷରେ ଶୁଭ । ସ୍ତ୍ରୀ ଲୋକମାନେ ରେଳ ଗାଡ଼ି ଚାଲିବା ବେଳେ ତାକୁ ଜୁହାର କରି ରେଳଧାରଣାରେ ସିନ୍ଦୂର ଲଗେଇ ପୂଜା କଲେ । ସେମାନଙ୍କର ଏହି ଧାରଣା ହୁଏତ ଠିକ୍ ଥିଲା । କାରଣ ରେଳଗାଡ଼ି ନ ଥିଲେ ଏତେ ପ୍ରଚୁର ପରିମାଣରେ ଚାଉଳ ଗାଁକୁ ଦେବେ ବି ଆସିପାରି ନଥାନ୍ତା ।

ଶୀତଋତୁରେ କେତେକ ଚାଷୀ ଡାଲୁଅ ଧାନ ଅମଳ କରୁଥିଲେ ତ ଆଉ କେତେକ ନିଜର ଜମିର ଉପଯୋଗୀତାକୁ ଲକ୍ଷ୍ୟ କରି ରବିଚାଷ କରୁଥିଲେ । । ବଡ଼ଦିନ ସମୟରେ ମଝିରେ ମଝିରେ ବର୍ଷା ହେଲା । ତାହା ରବିଚାଷ ପାଇଁ ଅନୁକୂଳ।

ଲୋକଙ୍କ ମନରେ ନୂଆ ଆଶାର ସଂଚ୍ଚର ହେଲା । ପୂର୍ବାଞ୍ଚଳକୁ ଯାଇଥିବା ଓଡ଼ିଆମାନେ ଗାଁକୁ ଫେରିଆସିଲେ । ନୋଳିଆମାନେ ମଧ୍ୟ ନିଜର ସମୁଦ୍ରକୂଳିଆ ଗାଁକୁ ଫେରିଲେ । କାମପାଇଁ ଖାଦ୍ୟ ଯୋଜନା ବନ୍ଦ ହେଲା । ମାତ୍ର ଛାଡ଼ଛତ୍ର (ଅନ୍ନଛତ୍ର) କିଛିଦିନ ପାଇଁ ଖୋଲା ରହିଲା ।

ସେବର୍ଷ ଶୀତଋତୁରେ ବ୍ରିଟିଶ ପାର୍ଲାମେଣ୍ଟର ଦୁଇ ଜଣ ନେତା ସାହେବ ଇଂଲଣ୍ଡରୁ ଆସିଲେ । କେତେଜଣ ନେତାସ୍ଥାନୀୟ ବାବୁ ସରକାରଙ୍କୁ ବଦ୍‌ନାମ କରିବାକୁ ଦୁର୍ଭିକ୍ଷ ବିଷୟ ସେମାନଙ୍କ କାନରେ ପକେଇଲେ । ଲୋକମାନେ ସବୁ ଭୋକରେ ମରୁଥିଲେ । ଏସବୁ ଶୁଣି ସାହେବ ଦୁଇଜଣ କଟକ କଲେକ୍ଟରଙ୍କ ପାଖରେ ପହଞ୍ଚିଲେ । ସେଠାରେ ସେ ଉତ୍ତର ଦେଲେ ଯେ ଦୁର୍ଭିକ୍ଷ ଏବେ ସରିଆସିଲାଣି । ଏବର୍ଷ ତ ଭଲ ଫସଲ ହୋଇଛି । ସେମାନେ ଦେଖିବାକୁ ଚାହିଁଲେ ଦେଖିପାରନ୍ତି । ତେଣୁ ବାବୁମାନେ ତାମ୍‌ଜାନ୍‌ର ବ୍ୟବସ୍ଥା କଲେ । ଆଠଜଣ ବୋହିବା ଲୋକ ବି ଠିକ୍ କଲେ । ସାହେବମାନେ କାଠଯୋଡ଼ୀ କୂଳର ଚାଷଜମି ସବୁ ଦେଖିବାକୁ ବାହାରିଲେ ।

ଏବେ ବର୍ଷା ଋତୁରେ କାଠଯୋଡ଼ୀର ବିଶାଳ ଶଯ୍ୟାରେ ମାଟିଆ ରଙ୍ଗର ପାଣି ସୁଅ ଛୁଟୁଥିଲା । ଖରାଦିନରେ ଏଇ ନଈଟି ବାଲିରେ ସରୁଧାରଟିଏ ହୋଇ ମଝିରେ ମଝିରେ ବାଟ ଭାଙ୍ଗି ବୋହି ଯାଉଥିଲା । ନଈର ଦୁଇକୂଳରେ ଉଚ୍ଚବନ୍ଧ ଥିଲା ଯାହା ବନ୍ୟାଜଳକୁ ଉପର ଜମିକୁ ଆସିବାରେ ବାଧା ଦେଉଥିଲା । ଜଣେ ନଈ ମଝିରେ ଠିଆ ହେଲେ କୂଳ ଜମିଗୁଡ଼ିକୁ ଦେଖିବାକୁ ଏଇ ବନ୍ଧ ଯୋଗୁ ସମ୍ଭବ ହେଉ ନଥିଲା । କୂଳର ଜମି ଅତ୍ୟନ୍ତ ଉର୍ବର ଥିବାରୁ ଆଖୁ, ବିନ୍ ଓ ଧାନ ଇତ୍ୟାଦି ଚାଷ ଖୁବ୍ ଭଲ ହେଉଥିଲା ।

ଏ ଦୁଇଜଣ ସାହେବ ସେ ସବୁ କାହୁଁ ବୁଝନ୍ତେ । ସେମାନେ କାଠଯୋଡ଼ୀ ବକ୍ଷର ବିସ୍ତୀର୍ଣ୍ଣ ବାଲୁକା ପ୍ରାନ୍ତର ଛଡ଼ା ଆଉ କିଛି ଦେଖିପାରିଲେ ନାହିଁ । ତେଣୁ ସମ୍ବାଦପତ୍ରକୁ ରିପୋର୍ଟ ଦେଇ ସେମାନେ ଲେଖିଲେ ଯେ ସାରାରାଜ୍ୟଟା ଖାଁ ଖାଁ ମରୁଭୂମି ହୋଇ ପଡ଼ିଛି ।

ଏ ଖବରଟି କାଗଜରୁ ପଢ଼ି ଖୁରସିଦ୍ ଅଲ୍ଲୀ କୃପା ସହିତ ଆଲୋଚନା କରିବାକୁ ଧାଇଁଲା । ମେସ୍‌ର ମେଲା ଭିତରେ ସେତେବେଳେ କୃପାସିନ୍ଧୁ ବ୍ରଜାନନ୍ଦ ଦାସ ସହିତ ବସିଥିଲା । ଖବରକାଗଜଟି ନେଇ ଖୁରସିଦ୍ କୃପାସିନ୍ଧୁଙ୍କୁ ଦେଖାଇଲା ।

'ଏମାନେ ପରା ଇଂରେଜ ଲୋକ ? କଳା ଲୋକଙ୍କ ପରି ମିଛ କହୁଛନ୍ତି କାହିଁକି ?'

ବ୍ରଜବାବୁ କହିଲେ, 'ତୁମେ ବୁଝିପାରିବ ନାହିଁ । ଏମାନେ ଆମ ସାହେବଙ୍କ ଭଳି ସ୍ୱର୍ଗରୁ ଆସି ନାହାନ୍ତି । ସେମାନେ ପାର୍ଲ୍ୟାମେଣ୍ଟର ଲୋକ । ସ୍ୱର୍ଗରେ ଜନ୍ମ ହୋଇଥିବା ସାହେବଙ୍କ ପରି ଏମାନେ ଯେ ସମ୍ମାନସ୍ପଦ ହେବେ ବା ସତ କହିବେ, ସେ ଆଶା କରିବା ଠିକ୍ ହେବ ନାହିଁ ।'

କୃପାସିନ୍ଧୁ କହିଲା,'ବ୍ରଜବାବୁ ଠିକ୍ କହିଛନ୍ତି । ଏମାନେ ସବୁ ରାଜନୀତି କରୁଛନ୍ତି ଯେତେବେଳେ ମିଛ ତ ନିଶ୍ଚୟ କହୁଥିବେ । ତେଣୁ ଯାହା କହୁଥିବେ, ସେସବୁ ସତ ବୋଲି ଆଶା କରିବା ମୂର୍ଖତା ହେବ ।'

ଖୁରସିଦ୍ କହିଲା, 'ତୁମ କଥା ନିଶ୍ଚୟ ସତ ହୋଇଥିବ ।' କୃପା ଓ ସେ ଦୁହେଁ ଏକମତ ହେଲେ ଯେ ଜଣେ ସତ୍‌ମଣିଷ କେବେ ରାଜନୀତି କରିବା ଉଚିତ ନୁହେଁ ।

୧୯୦୯ ମସିହାରେ ବି ଠିକ୍ ସମୟରେ ବର୍ଷା ହେଲା । ବର୍ଷା ଦ୍ୱାରା ନଦୀରେ ବନ୍ୟା ଆସିଲା । କିନ୍ତୁ ବନ୍ୟା ଭୟଙ୍କର ନ ଥିବାରୁ ଚାଷର ଉପକାର ହେଲା । ଏମିତି ଭାବରେ ଦୁର୍ଭିକ୍ଷର ଅନ୍ତ ହେଲା । ଅଫିସର ମହଲ ଶାନ୍ତିରେ ନିଶ୍ୱାସ ମାରିଲେ ଏବଂ ହିସାବ ନିକାଶ ନଥିରେ ଡ଼ୋରି ବାନ୍ଧିବାରେ ମନ ଦେଲେ ।

## ଅଷ୍ଟମ ପରିଚ୍ଛେଦ

ଦୁର୍ଭିକ୍ଷ ପ୍ରଭାବ ବଢ଼ିବା ସହିତ ଅନାଚାର ମଧ୍ୟ ବଢ଼ି ଚାଲିଲା । କିଛି ଲୋକ ପୂର୍ବାଞ୍ଚଳକୁ, କାମ ପାଇଁ ଖାଦ୍ୟ, ଓ କିଛି ଲୋକ ଭିକ ମାଗିବାକୁ ଚାଲିଗଲାବେଳେ, ଅନ୍ୟ କେତେକ ନା ଭିକମାଗିଲେ ନା କାମ କରିପାରିଲେ । ଛୋଟ ଜାତିର ଏମିତି କିଛି ଲୋକ ବା ଯେଉଁମାନେ ଚୋରୀରେ ଅଭ୍ୟସ୍ତ ସେମାନେ ଚୋରି ଓ ରାହାଜାନୀ କରିବାକୁ ଲାଗିଲେ । ଆଉ କେତେକ ବି ଥିଲେ ଯେଉଁମାନେ ଏଭଳି ଛୋଟ କାମ କରି ନିଜକୁ ଛୋଟ କରି ପାରିଲେ ନାହିଁ, ଏମାନଙ୍କ ଭିତରେ ଥିଲେ ଉଚ୍ଚ ଚାଷୀକୂଳର କିଛି ଯୁବକ । ଭିକମାଗି ପେଟ ପୋଷିବାକୁ ତାଙ୍କର ଆତ୍ମସମ୍ମାନକୁ ବାଧୁଥିଲା । ଅପରଛନିଆ ଛୋଟଜାତିର ଲୋକଙ୍କ ସଂଗେ ମିଶି ଖାଦ୍ୟ ପାଇଁ କାମ କରିବାକୁ ସେମାନେଙ୍କୁ ଦୟନୀୟ ଲାଗୁଥିଲା । ଘରଛାଡ଼ି ପୂର୍ବରାଜ୍ୟ ମାନଙ୍କୁ କାମ କରିବାକୁ ସେମାନେ ଯାଇ ପାରୁନଥିଲେ କାରଣ ନିଜ ନିଜ ଜମିଚାଷ କରି ସ୍ୱାଭିମାନୀ ଓ ସ୍ୱାଧୀନ ଭାବେ ଚଳିବା ତାଙ୍କର ଲକ୍ଷ୍ୟ ଥିଲା । ତେଣୁ ଏମାନଙ୍କୁ ପେଟ ପାଇଁ ଯେବେ

କିଛି ପାପ କରିବାକୁ ପଡ଼ିଲା ତ ଚୋରୀ ହି ଶ୍ରେଷ୍ଠ ପନ୍ଥା ଥିଲା ।

ସେମାନେ ଡ଼କାୟତ ଦଳ ଗଢ଼ିଲେ । ଗୋଟାଏ ଦଳରେ କୋଡ଼ିଏରୁ ତିରିଶ ଯାଏଁ ଯୁବକ ଓ ଗୋଟାଏ ବ୍ରାହ୍ମଣ ରାନ୍ଧୁଣିଆ ଥିଲା ।

ଖ୍ରୀଷ୍ଟମାସ ଛୁଟିରେ କୃପାସିନ୍ଧୁ ଗାଁରେ ଥିଲାବେଳେ ଦଳେ ଡକାୟତ ଗାଁ ଭିତରକୁ ପଶିଲେ । ଜଙ୍ଗଲ ଭିତରେ ଯେଉଁ ଭଙ୍ଗା ଚର୍ଚ୍ଚ ଘରେ କୃପା ଓ ନିର୍ମଳାବାଲା ଖେଳୁଥିଲେ, ସେଇଠି ଆସି ସେମାନେ ସୂର୍ଯ୍ୟାସ୍ତ ସମୟରେ ପହଞ୍ଚିଲେ । ରାତିରେ ବ୍ରାହ୍ମଣ ରାନ୍ଧୁଣିଆ ଖାଦ୍ୟ ରାନ୍ଧି ପରଶିବା ଯାଏ ସେମାନେ ଅପେକ୍ଷା କଲେ ଏବଂ ଶେଷରେ ବଣିଆ ଜନାର୍ଦ୍ଦନ ଜେଠୀ ଘରକୁ ଲୁଟ୍ କରିବା ଉଦ୍ଦେଶ୍ୟରେ ବାହାରି ପଡ଼ିଲେ । ଚୋରୀ କରିବା ସମୟରେ ହିନ୍ଦୁସ୍ଥାନୀ ମାନଙ୍କ ପରି ଦେଖାଯିବା ପାଇଁ ସେମାନେ ମୁଣ୍ଡରେ ଠେକା ଭିଡ଼ିଲେ । ଲୁଟ୍ କରିସାରି ନାଆଘାଟ ପାରି ହୋଇ ବାଲେଶ୍ୱର ପଳେଇବେ ଏବଂ ସେଠାରୁ ରେଳ ଯୋଗେ ଦୂରକୁ ଚାଲିଯିବେ ବୋଲି ଯୋଜନା ଥିଲା । ସେମାନେ ଅନୁକୂଳ କରି ବାହାରିବା ବେଳେ ବ୍ରାହ୍ମଣ ପୁଝାରି ହାଣ୍ଡିଟି ଭାଙ୍ଗିଦେଲା । ଅନ୍ୟାନ୍ୟ ଜିନିଷ ଗୋଟେଇ ପାଟେଇ କରି ନେଇ ନଈକୂଳରେ ଥିବା ବୁଦାମୂଳରେ ସେ ଯାଇ ଲୁଚି ରହିଲା ଯେପରିକି ଅନ୍ୟମାନେ ଫେରିଲେ ସେମାନଙ୍କ ସହ ମିଶି ସୁବିଧାରେ ପଳାଇ ଯାଇପାରିବ ।

ଜନାର୍ଦ୍ଦନ ଜେଠୀ ଜଣେ ସୁନାରୂପା ବ୍ୟବସାୟ କରୁଥିବା ବଣିଆ ଏବଂ କରଜ ଦେଉଥିବା ମହାଜନ । ବେଳକୁ ବେଳ ସେ ବେଶୀ ଧନୀ ହୋଇ ଉଠୁଥାଏ । ବେଶ୍ କିଛି ଚାଷଜମି କିଣି ଜଣେ ଗଣ୍ୟମାନ୍ୟ ଜମିଦାରର ପରିଚିତି ପାଇବାକୁ ସେ ଆଶାୟୀ ଥିଲା । ତେଣୁ ସେ ଭାବିଲା ଯେ ଗୋଟାଏ ବନ୍ଧୁକ ରଖିଲେ ତାର ସମ୍ମାନ ବଢ଼ିଯିବ । ସେଇ ବିଷୟରେ କଥାବାର୍ତ୍ତା କରିବାକୁ ସେଦିନ ସଂଧ୍ୟାବେଳେ ସେ କୃପାସିନ୍ଧୁଙ୍କୁ ନିଜ ଘରକୁ ଡାକିଥିଲା । ଡେରି ରାତିଯାଏ କୃପା ତାଙ୍କଘରେ ବସିବସି ରାତ୍ରିଭୋଜନ ଖାଇବା ସମୟ ହେବାରୁ ନିଜ ଘରକୁ ଲେଉଟି ଆସିଲା । କାରଣ ଗୋଟାଏ ବଣିଆ ଜାତିର ଲୋକଘରେ ସେ ଅନ୍ନ ଛୁଇଁବ ନାହିଁ । ଭଙ୍ଗାପାନ ଖାଇ ଜନାର୍ଦ୍ଦନ ଜେଠୀ କୃପା ସହିତ ଡେରି ରାତିଯାଏ ଗପୁଥିଲା । ବନ୍ଧୁକଟିଏ ପାଇଁ କେତେ ପଇସା ଖର୍ଚ୍ଚ ହେବ ଏବଂ ତାର ଲାଇସେନ୍ସ କିପରି ହୋଇ ପାରିବ, ସେସବୁ ଜାଣିବା ପାଇଁ ସେ କୃପାକୁ ଘରକୁ ଡାକିଥିଲା । କାଳେ ସେପାଇଁ କୃପା ଅତିବେଶୀ ଲାଞ୍ଚ ମାଗି ଦେବ, ସେଲାଗି ମଧ୍ୟ ତାର ଭୟ ଥିଲା । କୃପା ମଧ୍ୟ କେତେବେଳେ ଜନାର୍ଦ୍ଦନ ଜେଠୀ ପଇସା କଥା ଉଠେଇବ, ତାହାକୁ ହିଁ ମନେମନେ ଅପେକ୍ଷା କରି ରହିଥିଲା ।

ମାତ୍ର ଜନାର୍ଜନ ଜେଠୀ ଟଙ୍କାର ପ୍ରଶ୍ନ ଉଠେଇଲା ନାହିଁ । କାରଣ ସେ ଯେତେ ଦେବାକୁ ଇଛା କରିବ କୃପା ତାହାଠାରୁ ଦିଗୁଣ ଅଧିକ ମାଗିବ । ଦିଜଣଙ୍କ ମଧ୍ୟରୁ କେହି ହେଲେ ସେ ପ୍ରସଙ୍ଗ ଉଠେଇଲେ ନାହିଁ । ଖାଲି କଥା କହିଚାଲିଲେ ଓ କହିଚାଲିଥିଲେ ।

ସେମାନେ ଗପସପ କରୁଥିବା ବେଳେ ଚୋରମାନେ ଆସିଲେ । କେତେଜଣ ଚୋର ତାର ଘର ଚାରିପାଖେ ଘେରି ରହିଲେ ଏବଂ ଲାଠିକୁ ମାଟିରେ ଠୁକୁଠୁକୁ କରି ଗାଁ ଲୋକଙ୍କୁ ଭୁଆଁ ବୁଲେଇବା ପାଇଁ ପାଟି କରୁଥିଲେ, 'ମାର ମାର' । ଆଉ ଦଳେ ଦାଣ୍ଡ କବାଟକୁ ବାଡ଼େଇ କବାଟ ନ ଖୋଲିଲେ ଘରେ ନିଆଁ ଲଗେଇ ଦେବେ ବୋଲି ଧମକ ଦେଉଥିଲେ । ଡକାୟତ ଦଳଙ୍କୁ ଦେଖି ଜନାର୍ଜନ ଜେଠୀ ଦୌଡ଼ିଯାଇ ଅମାର ଭିତରେ ଲୁଚିକରି ବସିଲା । ପଛ କବାଟ ଦେଇ କୃପାସିନ୍ଧୁ ଖସିପଳେଇଗଲା । ସେଠାରେ ଚୋରମାନେ ଜଗି ନଥିଲେ । କିଛିକ୍ଷଣ ପରେ ଭୟାର୍ତ୍ତ ଭାବରେ ଜନାର୍ଜନ ଜେଠୀର ଜଣେ ଚାକର ଡକାୟତ ମାନଙ୍କୁ ଦାଣ୍ଡ କବାଟ ଖୋଲି ଦେଲା । ଟଙ୍କା ସୁନା ସବୁ କେଉଁଠି ଅଛି ବୋଲି ତାକୁ ପଚାରିବାରୁ ସେ କିଛି କହି ପାରିଲାନାହିଁ, ତେଣୁ ତାକୁ ଚୋରମାନେ ନିସ୍ତୁକ ମାଡ଼ ମାରିଲେ । ତାପରେ ସେମାନେ ସ୍ତ୍ରୀଲୋକମାନେ ରହୁଥିବା ମେଲାରେ ପହଞ୍ଚିଲେ । ଲାଠି ଅଗରେ ସ୍ତ୍ରୀମାନଙ୍କୁ କେଞ୍ଚାକେଞ୍ଚି କରି ଯେଉଁ ପର୍ଯ୍ୟନ୍ତ ଟଙ୍କା ସୁନା ବିଷୟରେ ସେମାନେ ସନ୍ଧାନ ନ ଦେଲେ ସେ ଯାବତ୍ ସେମାନଙ୍କ ନିର୍ଯାତନା ଦେଲେ । ଭୀଷଣ ଭାବରେ ଭୟଭୀତ ହୋଇ ସ୍ତ୍ରୀଲୋକମାନେ ଗୋଟାଏ କୋଣରେ ପରସ୍ପର ଉପରେ ଲଦାଲଦି ହୋଇ ଚିତ୍କାର କରିବାକୁ ଲାଗିଲେ । ଚୋରମାନେ ସବୁଘରର କବାଟ ଭାଙ୍ଗି ଜିନିପେତ୍ର ଖ୍ୟାନ୍‌ଭିନ୍ କରି ଜନାର୍ଜନ ଜେଠୀକୁ ଖୋଜିଲେ ।

ଚୋରମାନେ ଏଆଡ଼େ ଲୁଟ୍‌ପାଟ୍ କରୁଥିଲା ବେଳେ, କୃପାସିନ୍ଧୁ ଘରକୁ ଯାଇ ତାର ନିଦ୍ରିତ ଦୁଇ ଭାଇ ଦୟାନିଧି ଓ ହରିବନ୍ଧୁଙ୍କୁ ଉଠାଇଲା । ଭାଇମାନେ, ଉଠିପଡ଼ ଓ ଲାଠି ଧର । ଦୟାନିଧି, ତୁ ତୋର ପୋଲିସ ପୋଷାକ ପିନ୍ଧିପକା । ଜନାର୍ଜନ ଜେଠୀ ଘରେ ଡକେଇତି ଚାଲିଚି । ଚାଲ, ଚାଲ, ଶୀଘ୍ର ଉଠ ।

ଦୟାନିଧି ଓ ହରିବନ୍ଧୁ ଦୁହେଁ ଉଠିଲେ । ଦୟାନିଧି ତାର ପୋଲିସ ପୋଷାକ ପିନ୍ଧି ପକେଇଲା । ତାପରେ ହାତରେ ଲାଠିଧରି ଟପ୍‌ସି ଖଣ୍ଡାର (ଗାଁର ଦଫାଦାର) ଘରେ ଜଲଦି ଯାଇ ପହଞ୍ଚି ଗଲେ । ସମସ୍ତେ ଚୋର, ଚୋର ଡକେଇତି ଚାଲିଚି ବୋଲି ଉଚ୍ଚସ୍ୱରରେ ପାଟି କରୁଥିଲେ ।

ଗାଁର ଦଫାଦାର ସହିତ ଦୟାନିଧି ଓ ହରିବନ୍ଧୁ ଅନ୍ୟଲୋକମାନଙ୍କୁ ଉଠାଉଥିବା ବେଳେ କୃପା ଯାଇ ନଈଘାଟ ପାଖରେ ଥିବା ନାଉରୀକୁ ଭେଟିଲା । ଏ ଘାଟର ନାଆକୁ ସେ ପଟକୁ ନେଇ ଗୋଟାଏ ଛୋଟ ନାଆ ଓ ନାଉରୀ ସହିତ ସେଠାରେ ରହିବାକୁ କହିଲା । ତାହାହେଲେ, ଆରପଟରେ ଦୁଇଜଣ ଡକାୟତଙ୍କୁ ଜଣେ ନାଉରୀ ଆୟତ୍ତ କରିପାରିବ । କାରଣ ଛୋଟ ନାଆରେ ମାତ୍ର ଦୁଇଜଣ ଲେଖାଁଏ ଡକାୟତ ପାରିହୋଇ ପାରିବେ । ନାଉରୀ କହିଲା ଛୋଟନାଆଟିକୁ ସେପାଖରୁ ସେ ଫେରାଇ ଆଣିବ ନାହିଁ । କାରଣ ଦି'ଜଣ ଡକାୟତକୁ ଧରିପାରିଲେ ହିଁ ଯଥେଷ୍ଟ ହେବ । ସେଇ ଦି'ଜଣଙ୍କଠାରୁ ପୂରା ଦଳଟା ବିଷୟରେ ପୁଲିସ ଜେରା କରି ଅନ୍ୟମାନଙ୍କୁ ଠାବ କରିପାରିବ । ଜଣେ ବା ଦି'ଜଣକୁ ଧରିବା ଯାହା, ସାରା ଦଳଟାକୁ ଆୟତ୍ତ କରିବା ବି ସେୟା । ତାହାହିଁ ହେଲା, ସେପଟକୁ ଯାଇ ଜଣେ ଲୋକକୁ ସାଇକେଲରେ ପୋଲିସ ଷ୍ଟେସନକୁ ଦୌଡ଼ାଇ ଦିଆଗଲା । ସେ ତାର ଅନ୍ୟ ନାଉରୀଆବନ୍ଧୁଙ୍କୁ ଉଠାଇ ସେମାନଙ୍କୁ ଲାଠିଧରି ଜଗିରହିବା ପାଇଁ କହିଲା । ଦୌଡ଼ି ଓ କନାବିଣ୍ଡାକୁ ସଜ କରି ରଖାଗଲା । କାରଣ ଚୋରଙ୍କୁ ଧରିବା ମାତ୍ରେ କନାବିଣ୍ଡାରେ ସେମାନଙ୍କ ମୁହଁ ବାନ୍ଧି ଦେବାକୁ ସୁବିଧା ହେବ ।

ଥରେ ଥରେ କୁସ୍ତି କସରତ ଖୋର ଓ ଲାଠିଧାରୀ ଗୁଣ୍ଡା ପ୍ରକୃତିର ଲୋକମାନେ ନାଆରେ ଚଢ଼ୁଥିଲେ ଓ ବାହୁବଳ ଥିବାରୁ ନାଉରିଆକୁ ଭଡ଼ା ପଇସା ନ ଦେଇ ପାରି ହୋଇ ଓହ୍ଲେଇ ଯାଉଥିଲେ । ତେଣୁ ପ୍ରତ୍ୟେକ ନାଉରିଆ ସେଭଳି ଲୋକଙ୍କୁ ସାବାଡ଼ କରିବା ପାଇଁ ମଉକା ଖୋଜୁଥିଲେ । ଏଇ ନାଉରିଆ ଜଣକ ଜଣେ କସରତଖୋର ଗୁଣ୍ଡାକୁ ତାର ସହକର୍ମୀ ରୂପେ ରଖିଥିଲା । ଅନ୍ୟ ନାଉରିଆମାନଙ୍କୁ ମଧ୍ୟ ବଳବାନ୍ ସାହସୀ ଲୋକ ଦେଖି ଅନ୍ୟ ନାଉରିଆ ନିଯୁକ୍ତି କରିଥିଲା । ତେଣୁ ଡକାୟତମାନଙ୍କୁ ସେମାନେ ଡରିଲେ ନାହିଁ ।

ଡ଼କାୟତମାନେ ଜେଠୀର ଘରେ ପଶି ପ୍ରତ୍ୟେକ ରୁମ୍ , ବାହାରଘର ଓ ଘରର ସମସ୍ତ ଗଳିକନ୍ଦି ଯେତେ ଖୋଜାଖୋଜି କଲେ ମଧ୍ୟ ତାକୁ କେଉଁଠାରେ ପାଇଲେ ନାହିଁ । ଏଇ ଖୋଜାଖୋଜି ଚାଲିଥିବାବେଳେ ଗାଁ ବାଲାଏଁ ଚୋର ଚୋର ବୋଲି ଡକାପାରି ଜେଠୀର ଦୁଆରେ ପହଞ୍ଚି ଗଲେ । ଦୟାନିଧି ଓ ଗାଁର ଦଫାଦରକୁ ପୋଲିସ ପୋଷାକରେ ଦେଖି ଦୁଆର ମୁହଁରେ ଜଗିଥିବା ଡକାୟତମାନେ ପୋଲିସ ଆସିଗଲା ବୋଲି ଭାବିଲେ । ଜଣେ ଡକାୟତ ଦୌଡ଼ିଯାଇ ତାଙ୍କର ସର୍ଦ୍ଦାରକୁ ଏ ଖବର ଜଣାଇଲା । ସେତିକିବେଳେ ସର୍ଦ୍ଦାର ଜେଠୀକୁ କେଉଁଠାରେ ନପାଇ, ତାର ଅମାର

ଭାଙ୍ଗିବାକୁ ସାଥୀ ଓ ଡକାୟତମାନଙ୍କୁ ନିର୍ଦ୍ଦେଶ ଦେବାକୁ ଯାଉଥିଲା । ପୋଲିସ ଆସିବା କଥା ଜାଣି ତାର ସବୁ ଲୋକମାନଙ୍କୁ ପଳାଇବାକୁ ସତର୍କ କରି ଦେଇ, ସମସ୍ତେ ନଈ ଘାଟରେ ପହଞ୍ଚି ଗଲେ ।

ଘାଟରେ ପହଞ୍ଚି ଛୋଟ ଡଙ୍ଗାଟିଏରେ ନାଉରିଆକୁ ଦେଖିଲେ । ଦୁଇ ଦୁଇଜଣ କରି ଥରକେ ଡଙ୍ଗାରେ ନେଇ ପାରିକରିଦେବାକୁ ନାଉରିଆ କହିବାରୁ, ସର୍ଦ୍ଦାର ତାକୁ ବଡ଼ ଡଙ୍ଗାଟିଏ ଆଣିବାକୁ କହିଲା, ନାଉରିଆ ଉତ୍ତର ଦେଲା ଯେ, ରାତିରେ ବଡ଼ ଡଙ୍ଗା ଦେବାକୁ ଅତି ଦରକାର ନଥିଲେ, ମାଲିକ ରାଜି ହେବନାହିଁ । ତେଣୁ ବାଧ ହୋଇ ଦୁଇଜଣ ଲେଖାଏଁ ଥରକେ ପାରିହେବା କଥାହେଲା ।

ଏ ପଟେ ଗାଁ ବାଲାମାନେ ଡକାୟତମାନଙ୍କୁ ଗୋଡ଼ାଇ ଗୋଡ଼ାଇ ଯାଇ ନଈଘାଟ ପାଖରେ ପହଞ୍ଚିଲେ । ସେଠାରେ ଗାଁବାଲା ଓ ଡକାୟତମାନଙ୍କ ମଧ୍ୟରେ ଘମାଘୋଟ ଯୁଦ୍ଧ ଚାଲିଲା । ଗାଁବାଲା କେତେକ ଖଣ୍ଡିଆ ଖାବରା ହେଲେ । ମାତ୍ର ଦୟାନିଧି ଜଣେ ଡକାୟତକୁ କାବୁ କରିନେଲା । ଡକାୟତଟି ଉଠି ଠିଆ ହେବା ଆଗରୁ ଟପ୍‌ସି ଜଗୁଆଳୀ ତାର କୁରାଢ଼ୀ ଚେଟରେ ଡ଼କାୟତର ଜଙ୍ଘଟିକୁ ଭାଙ୍ଗି ଦେଲା । ଡକାୟତ ସର୍ଦ୍ଦାର ଏଥର ତାର ସବୁ ଡକାୟତଙ୍କୁ ଗାଁବାଲାଙ୍କ ପଛରେ ଲଗେଇ ଦେଲା । ଆହତ ଚୋରଟିକୁ ସେମାନେ ଟେକି କରି ଶୂନ୍ୟରେ ନେଇ ପଳେଇ ଗଲେ । ଏଣିକି ଗାଁବାଲା ବିଚରା ପିଛେ ମୋଡ଼ କରି ଛତ୍ରଭଙ୍ଗ ଦେଲେ ।

ଡ଼କାୟତମାନେ ଘାଟ ସେପାରିରେ ଥିବା ଡଙ୍ଗାଟିକୁ ଅପେକ୍ଷା କରିଥିବା ବେଳେ ଆଉ କାଳେ କିଛି ଘଟିବ ବୋଲି ସତର୍କ ହୋଇ କାନ ଡେରି ରହିଲେ । ସାନଡଙ୍ଗାର ନାଉରୀ ଦୁଇଜଣ ଡକାୟତଙ୍କୁ ନେଇ ସେପାରିରେ ପହଞ୍ଚିଲା ମାତ୍ରେ, ସେ ଦୁଇଜଣଙ୍କୁ କାବୁ କରିନେଇ ବେଶ୍ ଛେଚିଲା ଏବଂ ଦୁଇଜଣଙ୍କର ପିଠିକୁ ପିଠି ଯୋଡ଼ି ଏକତ୍ର ବାନ୍ଧି ପକେଇଲା । ସେମାନଙ୍କ ପାଟିରେ କନାବିଣ୍ଡା ଭରି ଗୋଟାଏ ଗଛ ମୂଳେ ସେମାନଙ୍କୁ ପକାଇଦେଲେ ।

ଡକାୟତ ଓ ନାଉରିଆ ଭିତରେ ଲଢ଼େଇ ଚାଲିଥିବାବେଳେ ସେମାନଙ୍କର ପାଟି ତୁଣ୍ଡ ଏବଂ ଲାଠିମାଡ଼ର ଶବ୍ଦ ଖୁବ୍ ଉଚ୍ଚରେ ଶୁଭୁ ଥିଲା । ପବନ ଅନୁକୂଳ ଥିବାରୁ ଏ ପାରିରେ ଥିବା ସର୍ଦ୍ଦାର ଓ ଚୋର ସାଥିମାନେ ସେମାନଙ୍କର ଚିତ୍କାର ଶୁଣି ପାରିଲେ । ଛୋଟ ଡଙ୍ଗାଟି ସେପାରିରୁ ଫେରିବାକୁ ଡ଼େରି ହେବାରୁ ସେମାନେ ଧରିନେଲେ ଯେ, ସେମାନଙ୍କର ଅନ୍ୟ ସାଥିମାନେ ହୁଏତ ଧରାପଡ଼ିଯାଇଛନ୍ତି ନହେଲେ ଭୟରେ ପଳାଇ ଯାଇଛନ୍ତି । ତେଣୁ ସେମାନେ ନଈର କୂଳେ କୂଳେ ଧାଇଁ

ପଳାଇଗଲେ । ଜଙ୍ଘ ଭାଙ୍ଗିଯାଇଥିବା ଡକାୟତକୁ ବୋହି ବୋହି ସେମାନେ ଦୌଡ଼ି ପାରିବେ ନାହିଁ ବୋଲି ତାହାକୁ ସେଠାରେ ପକାଇ ଦେଇ ପଳେଇଗଲେ ।

ଟିକେ ଦୂରରେ ଗାଁର ଲୋକମାନେ ଘେରଘେର, ମାର, ମାର ବୋଲି ଚିତ୍କାର କରୁଥିଲେ । ଡକାୟତମାନେ ଧାଇଁ ପଳାଉଥିବାର ଦେଖି ସେମାନେ ନଈକୂଳକୁ ଯାଇ ଜଙ୍ଘ ଭାଙ୍ଗିଯାଇଥିବା ଡକାୟତକୁ ଦେଖିଲେ । ଗାଁ ଜଗୁଆଳୀ ଟପସି ଲଣ୍ଠନଟିଏ ମାଗିନେଇ ଡକାୟତଟିକୁ ଚିହ୍ନିବାକୁ ଚେଷ୍ଟା କଲା । ମାତ୍ର ଡକାୟତମାନେ ତାର ମୁଣ୍ଡଟିକୁ କାଟିନେଇ ପଳାଇଥିଲେ । କାରଣ ମୁଣ୍ଡ ନଥିଲେ ଲୋକଟିକୁ କେହି ଚିହ୍ନି ପାରିବେ ନାହିଁ ।

ନଈଘାଟ ଓ ମଡ଼ାଟିକୁ ଜଗିବାର ବ୍ୟବସ୍ଥା କରି ଗାଁବାଲାମାନେ ଘରକୁ ଫେରିଲେ ।

ସକାଳ ହେବାରୁ ପୋଲିସ ଆସିଲେ । ନାଉରିଆମାନେ ବାନ୍ଧି ରଖିଥିବା ଦୁଇଟି ଡକାୟତଙ୍କର ବନ୍ଧନ ଖୋଲି ସେମାନଙ୍କୁ ହାତକଡ଼ା ପକେଇଲେ ଓ ସେମାନଙ୍କୁ ଗିରଫତାର କରିନେଲେ । ନଈ ପାରି ହୋଇ ସେପାରିକୁ ଯାଇ ବୁଦାମୂଳେ ଲୁଚିଥିବା ବ୍ରାହ୍ମଣ ରୋଷେୟାକୁ ପକଡ଼ି ନେଲେ । ତାପରେ ପୁଲିସ ସବ୍‌ଇନ୍‌ସପେକ୍ଟର ଜନାର୍ଜନ ଜେଠୀର ଘରକୁ ଗଲେ । ଗୋଟାଏ ଚେଆର ଆଣି ବାହାରେ ପକାଇ ଦେଇ ଦନାର୍ଦନ ଜେଠୀ ତାଙ୍କୁ ବସିବାକୁ ଦେଲା । ଇନ୍‌ସପେକ୍ଟରର ଅଣ୍ଟାର ବେଲ୍‌ଟରେ ଖଣ୍ଡା ଝୁଲୁଥିଲା ଏବଂ ସେ ବାହାରେ ଗଛ ଛାଇରେ ସେମିତି ବସି ରହିଲା ।

ଗାଁର ଲୋକମାନେ ବୟାନ ଦେବାକୁ ଆସି ସେଠାରେ ଜମା ହୋଇଗଲେ । କିନ୍ତୁ ଇନ୍‌ସପେକ୍ଟର କିଛି କାରବାହି ନ କରି ସେମିତି ବସି ରହିଲା ।

ସେମିତି ବସି ରହି ଇନ୍‌ସପେକ୍ଟର ଖାଲି ସମୟ ଗଡ଼େଇ କରି ଚାଲିଚି ବୋଲି ଦେଖି ଲୋକେ ଦୟାନିଧି ପାଖକୁ ଧାଇଁଲେ ଏବଂ ସେଇ ଇନ୍‌ସପେକ୍ଟରଟି କିଛି ନ କରି ବସି ରହିଚି କାହିଁକି ବୋଲି ଜଣେ ତାକୁ ପଚାରିଲା । ଦୟାନିଧି ଉତ୍ତର ଦେଲା ଯେ, ତାର ଅଣ୍ଟାରେ ଯେଉଁ ଖଣ୍ଡା ଲଗା ବେଲ୍ଟ ଝୁଲୁଚି, ସେଇଟା ତାକୁ ଅସୁବିଧା କରୁଛି ।

ଲୋକମାନେ ତଥାପି କିଛି ବୁଝିନପାରି କୃପାସିନ୍ଧୁ ପାଖକୁ ଗଲେ । ଭକ୍ତଚରଣ ପଟ୍ଟନାୟକ କହିଲେ, 'ସେ ଇନ୍‌ସପେକ୍ଟର କିଛି ନ କରି କାହିଁକି ଚୁପ୍ ଚାପ ବସି ରହିଚି ।' ଏପଟେ ଡକାୟତମାନେ ପହୁଞ୍ଚର ବାହାର ହୋଇଯିବେ ଯେ !'

କୃପାସିନ୍ଧୁ କହିଲା, 'ଭାଇମାନେ ବୁଝିପାରୁନାହଁ କି ତାର ପେଟଟା କେତେ

ବଡ଼ ହୋଇଚି ଏବଂ ବେଲ୍ଟଟି ଟାଣିକରି ଭିଡ଼ା ହୋଇଚି ।' ଯଦି ବେଲ୍ଟଟା ତାକୁ ଅସୁବିଧା କରୁଚି ତେବେ ସେ ସେଇଟିକୁ ପିନ୍ଧିଚି କାହିଁକି ? ଏକଥା ବିଚାରୀ ସରଳ ମଣିଷ ବ୍ରଜମୋହନ ପଟ୍ଟନାୟକ କହିଲା । 'ତୁମେ ସେଇଟାକୁ କାଢ଼ି ପକେଇବାକୁ କହିବ ବୋଲି ତ ସେ ସେଇଟିକୁ ପିନ୍ଧିଛି ।'

ଗାଁ ବାଲାଏଁ ସଙ୍ଗେ ସଙ୍ଗେ ଚାନ୍ଦା କରି ଇନ୍ସପେକ୍ଟରକୁ ବେଶ୍ କିଛି ନାତ ଗୁଞ୍ଜା ଦେଲେ ଏବଂ ମିଠା ଖୁଆଇଲେ । ଇନ୍ସପେକ୍ଟର ଖୁସିହୋଇ ତାଙ୍କର ଭୋଗ ଗ୍ରହଣ କଲେ ଏବଂ ବେଲ୍ଟ ବାହାର କରି ତାଙ୍କର କାରବାହି ଆରମ୍ଭ କଲେ ।

ସେଦିନ ସଂଜରେ କୃପାସିନ୍ଧୁ ଜନାର୍ଜନ ଜେଠୀକୁ ଭେଟିବାକୁ ତାର ଘରକୁ ଯାଇଥିଲା । ଜେଠୀ ଖୁସି ହୋଇ କୃପା ଡକାୟତଙ୍କୁ ଘଉଡ଼େଇବାକୁ ଗାଁବାଲାଙ୍କୁ ନେଇ ଚେଷ୍ଟା କରିଥିବାରୁ ତା ଠାରେ କୃତଜ୍ଞତା ପ୍ରକାଶ କଲା । ତାର ନିଜର ତିଆରି ଗୋଟାଏ ରୂପା ନିର୍ମିତ ମୟୂର ଅତରଦାନ କୃପାସିନ୍ଧୁକୁ ଉପହାର ଦେଲା ।

ଏଇଟି ଗୋଟାଏ ବଢ଼ିଆ ଜିନିଷ । ଖାଣ୍ଟି ନରମ ରୂପାରେ ତିଆରି । ସରକାରୀ ରୂପାଟଙ୍କା ପରି କଳା ରୂପାରେ ତିଆରି ନୁହେଁ ।

ଧନ୍ୟବାଦ ଦେବାକୁ ଯାଇ କୃପାସିନ୍ଧୁ ପୁଣି ସେଇ ବନ୍ଧୁକ ଲାଇସେନ୍ସ ପ୍ରସଙ୍ଗ ଉଠେଇଲେ । ବର୍ତ୍ତମାନ ତୁମେ ନିଶ୍ଚୟ ଅନୁଭବ କରୁଥିବ ଯେ ବନ୍ଧୁକଟିଏ ଥିଲେ କେତେ ଭଲ ହୋଇଥାନ୍ତା ।

'ସତରେ । ବନ୍ଧୁକଟିଏ କେବଳ ସମ୍ମାନ ରକ୍ଷା ପାଇଁ ମୁଁ କିଣିବାକୁ ଚାହୁଁଥିଲି । ମୁଁ ଭାବିପାରୁନି ଯେ ମୁଁ କେବେ ବନ୍ଧୁକ ଫୁଟାଇ ପାରିବି ।'

'ସେକଥା ଦରକାର ପଡ଼ିବନାହିଁ । କୃପା ଉତ୍ତର ଦେଲା ।'

"ବହୁତ ଲୋକ ବନ୍ଧୁକ ରଖିଚନ୍ତି କିନ୍ତୁ ଗୁଳି ରଖି ନାହାନ୍ତି । ଯଦି ଡକାୟତମାନେ ଥରେ ଜାଣିଗଲେ ତମ ଘରେ ବନ୍ଧୁକଟିଏ ଅଛି ସେଇଟା ଢେର ।"
"ତୁମେ କଣ ଭାବୁଛ ଯେ ମୁଁ ବନ୍ଧୁକଟିଏ ପାଇଁ ଆବେଦନ କଲେ ମାଜିଷ୍ଟ୍ରେଟ୍ ସାହେବ ମୋତେ ଲାଇସେନ୍ସ ଦେଇ ଦେବେ ?"

'ମୁଁ ଭାବୁଛି , ମୁଁ ସବୁ ଠିକ୍ କରିପାରିବି । ଆରବର୍ଷ ହୋଇଥିଲେ କିଛି ଅସୁବିଧା ନ ଥାନ୍ତା । କିନ୍ତୁ ଏବର୍ଷ ପଇସା ଖର୍ଚ୍ଚ କରିବାକୁ ପଡ଼ିବ ।'

'ଏବର୍ଷ ଆରବର୍ଷ ଅପେକ୍ଷା ବନ୍ଧୁକ ପାଇବାକୁ କାହିଁକି ଅସୁବିଧା ?'

କାରଣ ଆମର ଏବେ ଜଣେ ନୂଆ ସାହେବ ଆସିଛନ୍ତି । ପୁରୁଣାସାହେବ ସହଜରେ ଦସ୍ତଖତ କରିଦେଉ ଥିଲେ, ମାତ୍ର ଏ ସାହେବ କହୁଥିଲେ, ଏବର୍ଷ ଢେର

ଲାଇସେନ୍ସ ଦିଆଗଲା । ଆଉ ନୁହେଁ । ଖୁବ୍ କଷ୍ଟରେ ସାହେବ ଏଣିକି ବନ୍ଧୁକ ଲାଇସେନ୍ସ ଆବେଦନ ପତ୍ରରେ ସ୍ୱାକ୍ଷର କରୁଛନ୍ତି ।

'କିନ୍ତୁ ତୁମେ ତ କହୁଥିଲ ଅଳ୍ପ କିଛି ଖର୍ଚ୍ଚ କଲେ ସବୁ ଠିକ୍ ହୋଇଯିବ ବୋଲି ।'

'ହଁ, ଭାବୁଚି କରିହେବ । ତେବେ ପାଞ୍ଚଶହ ଜାଗାରେ ଏବର୍ଷ ହଜାରେ ଟଙ୍କା ଖର୍ଚ୍ଚ କରିବାକୁ ପଡ଼ିବ ।'

ମାଜିଷ୍ଟ୍ରେଟ ଅଫିସରେ ଏଇ ଧନ୍ଦା ବିଷୟରେ ଜେଠୀର କିଛି ସମ୍ୟକ୍ ଜ୍ଞାନ ନଥିଲା । ତେଣୁ ସେ ସବୁକଥାକୁ ବିଶ୍ୱାସ କରିଗଲା । କିଛି ସମୟ କଥାବାର୍ତ୍ତା ପରେ ପରଦିନ ଟଙ୍କା ଦେବ ବୋଲି କହିଲା । ତହିଁ ପରଦିନ କୃପା ତାର ଘରକୁ ପୁଣିଯାଇ ହଜାରେ ଟଙ୍କା ଆଣିଲା । ଗୋଟାଏ ଜାଲ ସୂତା ବ୍ୟାଗରେ ଟଙ୍କାତକ ପୂରେଇ ନେଇଗଲା । ଏଇ ବ୍ୟାଗଟି ତାର ଅଫିସର ପିଅନ ଘେରାଇ କରି ଟ୍ରେଜେରୀରୁ ଆଣି ତାକୁ ଦେଇଥିଲା ।

## ନବମ ପରିଚ୍ଛେଦ

ଦୁର୍ଭିକ୍ଷ ପରେ ପରେ ଲୋକେ ରାଜନୀତି ଚର୍ଚ୍ଚା କରିବାକୁ ଲାଗିଗଲେ । କୃପାସିନ୍ଧୁ ରାଜନୀତି ବିଷୟରେ କିଛି ନ କହୁଥିଲେ ମଧ୍ୟ ସେ ବିଷୟରେ ଚର୍ଚ୍ଚା ଶୁଣୁଥିଲା । ସମ୍ରାଟରାଜ କିଛି ସଂସ୍କାର ଆଣିବେ ବୋଲି ଶୁଣାଯାଉ ଥିଲା । କୃପାସିନ୍ଧୁ ଲକ୍ଷ୍ୟ କଲା ଯେ ଏ ବିଷୟରେ ବଂଗାଳୀମାନେ ଗୋଟାଏ କଥା କହୁଛନ୍ତି ତ ଓଡ଼ିଆମାନେ ଭିନ୍ନ କିଛି କହୁଛନ୍ତି । ବଙ୍ଗାଳୀମାନେ କହୁଥିଲେ ଯେ, ଯାହା କିଛି ବି ହେବ, ସେ ସବୁ ନାମକୁମାତ୍ର । ଆମେ ଆନ୍ଦୋଳନ ଚଳେଇ ରଖିବୁ । ଓଡ଼ିଆମାନେ କହୁଥିଲେ "ଆମେ ପରିବର୍ତ୍ତନ ଚାହୁଁ, ତା ହେଉଚି ସବୁ ବଙ୍ଗାଳୀମାନଙ୍କୁ ଓଡ଼ିଶାରୁ ବାହାର କରାଯାଉ ।"

୧୯୧୦ ମସିହା ଜାନୁଆରୀ ମାସର ପହିଲାରୁ ଏହି ସଂସ୍କାର ଲାଗୁ ହେବ ବୋଲି କୃପା ଶୁଣିଥିଲା । ତେଣୁ ସେତେବେଳଠୁଁ, କଣ ସବୁ ସଂସ୍କାର ହେବ ସେକଥାକୁ ଉତ୍ସୁକ ହୋଇ ଚାହିଁ ରହିଥିଲା । ମାତ୍ର କିଛି ବି ହେଲା ନାହିଁ । କିଛି ମାସ ପରେ ସେ କଥା ଥରେ ମନେପଡ଼ିବାରୁ ସେ ଖୁରସିଦ୍ ଅଲ୍ଲୀକୁ ସେ ବିଷୟରେ ପଚାରିବାକୁ ଦୌଡ଼ିଲା ।

"ମୁଁ ଶୁଣିଲି ଯେ ଲର୍ଡମର୍ଲେମିଣ୍ଟୁ ନା କିଏ, ( ଭଗବାନ ଜାଣନ୍ତି ତାଙ୍କୁ ) ସେ ବ୍ରିଟିଶ ରଜାଙ୍କୁ କିଛି ସଂସ୍କାର ଆଣିବାକୁ ପ୍ରବର୍ତ୍ତାଇ ଅଛନ୍ତି ।" କୃପା ଖୁରସିଦ୍‌କୁ ପଚାରିଲା ।

"ମୁଁ ବି ସେକଥା ଶୁଣିଛି । ହେଲେ କଣ ହେବ ?" ଖୁରସିଦ୍ ଉତ୍ତର ଦେଲା । ମୋର ବି କିଛି ହେବନି କହି କୃପା ସେ ବିଷୟରେ ଆଉ କିଛି ଭାବିବା ବନ୍ଦ କଲା ।

ଏହି ସମୟରେ କଲେକ୍ଟର ଅଫିସରେ ଟାଇପରାଇଟରର ପ୍ରଚଳନ ଆରମ୍ଭ ହେଉଥିଲା ଏବଂ ସର୍ଟହେଣ୍ଡରେ ଲେଖିବା ଗୋଟାଏ ଫେସନ ହୋଇ ଯାଇ ଥିଲା । ଯେଉଁ କିରାଣୀ ସର୍ଟହ୍ୟାଣ୍ଡରେ ଲେଖିପାରୁଥିଲା, କଲେକ୍ଟର ତାର ଦରମା ବଢ଼ାଇ ଦେବେ ବୋଲି ଆଶା ହେଉଥିଲା । ମାତ୍ର ବଡ଼ବାବୁ କହିଲେ ଯେ କେହିହେଲେ କିରାଣୀ ସର୍ଟହ୍ୟାଣ୍ଡରେ ଲେଖିବା ଜାଣନ୍ତି ନାହିଁ ।ତାପରେ, ବାଲେଶ୍ୱରରେ ତାହା ଶିଖାଇବାକୁ ଲୋକ ବି କେହି ନାହାନ୍ତି । ଜଣେ କିରାଣୀ ଲମ୍ବା ଛୁଟିରେ ରହି କଲିକତାରୁ ଏହି ସର୍ଟହ୍ୟାଣ୍ଡ ଶିଖିବାକୁ ଯାଇଛି ।

କୃପାର କଲିକତା ଯିବାକୁ ଇଚ୍ଛା ନ ଥିଲା । ମାତ୍ର ଏହା ଶିଖି ପାରିଲେ ଲାଭ ମିଳିବ ବୋଲି ସେ ଭାବି ହେଲା । ସେ ନିଜ ମୁଣ୍ଡ ଖଟେଇ ଭାବିଲା ଯେ ବାଲେଶ୍ୱରରେ ବି କେହି ଶିଖାଇବା ପାଇଁ ନାହାନ୍ତି କହିବା ବଡ଼ବାବୁଙ୍କ ପକ୍ଷେ ଠିକ୍ ହେଲାନି । ଆଚ୍ଛା ! ମିସନାରୀମାନେ ସେକଥା ଜାଣଛନ୍ତି ନା ନାହିଁ ?

ବାଲେଶ୍ୱରରେ ତିନିଟା ଚର୍ଚ୍ଚଥିଲା । ତା ମଧ୍ୟରୁ ଗୋଟିଏ ଜେସୁଟ ଫାଦରଙ୍କର ଦାୟିତ୍ୱରେ ଥିଲା । ସେଠାକୁ ଆସୁଥିବା ଲୋକେ ମୂଳତଃ ଖ୍ରିସ୍ତାନୀ । ଗୋଟାଏ ଛୋଟ ଚର୍ଚ୍ଚରେ ସାହେବମାନେ ଉପାସନା କରୁଥିଲେ । କିନ୍ତୁ ମିସନାରୀମାନେ ସେ ଦୁଇଟା ଚର୍ଚ୍ଚକୁ ଯାଉ ନଥିଲେ । ସେମାନଙ୍କର ନିଜସ୍ୱ ଚର୍ଚ୍ଚଟିଏ ଥିଲା । ଏଥିରୁ କୃପାସିନ୍ଧୁ ବୁଝିନେଲା ଯେ, ଖ୍ରୀଷ୍ଟିଆନମାନେ ମଧ୍ୟ ଭିନ୍ନ ଭିନ୍ନ ପ୍ରକାରର ଅଛନ୍ତି । ଯେପରି ମୁସଲମାନମାନେ ବିଭିନ୍ନ ସମ୍ପ୍ରଦାୟର ଥାନ୍ତି । ବୁଝାବୁଝି କରି ସେ ଜାଣିପାରିଲା ଯେ, ଯେଉଁ ଆମେରିକାନ୍ ବାପଟିଷ୍ଟମାନେ ଏଠାରେ ଅଛନ୍ତି ସେମାନଙ୍କୁ ମିସ୍‌ନାରୀ କୁହାହେଉଛି । ଆମେରିକାନ୍‌ମାନେ ଏକ ପ୍ରଗତିଶୀଳ ଚଲାକ୍ ଜାତି ବୋଲି ସେ ଶୁଣିଥିଲା । ତେଣୁ ସେମାନଙ୍କ ଭିତରୁ କେହି ସର୍ଟହ୍ୟାଣ୍ଡ ନିଶ୍ଚୟ ଜାଣିଥିବେ ବୋଲି ସେ ଅନୁମାନ କଲା ।

ଅତି ଲଜ୍ୟାବିନୀତଭାବେ ସେ ମଶନାରୀ ମୁଖ୍ୟଙ୍କ ପାଖକୁ ଗଲା । ମେମ୍‌ସାହେବ ତାଙ୍କୁ ଅଭିନନ୍ଦନ ଜଣାଇ ବସାଇଲେ । ସେ ବହୁତ ଗୋରୀ ଓ ଡେଙ୍ଗୀ

ତଥା ଦୟାଳୁ ସ୍ୱଭାବର ଥିଲେ । "ତମେ ମୋ ସ୍ୱାମୀଙ୍କ ସହ ସାକ୍ଷାତ ପାଇଁ ଆସିଛକି ?" ସେ ପଚାରିଲେ । "କିଛି ସମୟ ଅପେକ୍ଷା କର ସେ ବର୍ତ୍ତମାନ ଚିଠି ଲେଖାଉ ଅଛନ୍ତି । ସେ ତମକୁ ଦେଖିଲେ ନିଶ୍ଚୟ ଖୁସି ହେବେ ।"

ବାରଣ୍ଡାରେ ଅପେକ୍ଷା କରିବା ସମୟରେ କୃପାସିନ୍ଧୁ ଘର ଭିତରକୁ ଉଣ୍ଡି ଦେଖିଲା। ଘର ଭିତରଟା ସୁନ୍ଦରଭାବେ ସଜା ହୋଇଥିଲା । ସେଇଟା ଜଣେ ସାଧୁ ସନ୍ଥର ଘର ପରି ମନେ ହେଉ ନ ଥିଲା । ଜେସୁଟ୍ ଫାଦରମାନେ ତ ଗରୀବ ! ମିସନାରୀ ମୁଖ୍ୟଙ୍କର ଚିଠି ଡିକ୍‌ଟେସନ ଦେବାର ସେ ଶୁଣିପାରିଲା । ସେ ଠିଆ ହୋଇ ଟୋକା ମିସନାରୀକୁ ଚିଠିଟି ଡାକି ଦେଉଥିଲେ ଏବଂ ଟୋକାଟି ଚିଠିଟିକୁ ସର୍ଟହ୍ୟାଣ୍ଡରେ ଟିପି ନେଉଥିଲା ।

କାମ ସରିବା ପରେ ସେ ଘର ଭିତରୁ ବାହାରି ଆସି କୃପାସିନ୍ଧୁ ସହ ହାତ ମିଳେଇଲେ ଏବଂ କହିଲେ, 'ପ୍ରିୟବନ୍ଧୁ ! ତୁମକୁ ଦେଖି ଖୁବ୍ ଖୁସିହେଲି ମାତ୍ର ତୁମ ସହ କଥା ହେବାକୁ ଏବେ ମୋର ସମୟ ନାହିଁ କାରଣ ଗୋଟାଏ ମିଟିଂକୁ ଏବେ ମୁଁ ବାହାରୁ ଅଛି । କାଲି ଆମର ଗୋଟାଏ ପ୍ରାର୍ଥନା ସଭା ଅଛି । ଏଠାକୁ ଜଣେ ଇଭାଞ୍ଜେଲିଷ୍ଟ ଆମେରିକାରୁ ଆସି ଭାଷଣଦେବେ । ଆପଣମାନଙ୍କୁ ସେଠାରେ ଦେଖିଲେ ମୁଁ ଖୁବ୍ ଖୁସି ହେବି । ସଭାପରେ ସେଇଠି ମୁଁ ଆପଣଙ୍କ ସହ କଥା ହୋଇ ପାରିବି । ଏବେ ମୁଁ ଆସୁଛି । ଭଗବାନ ଆପଣଙ୍କର ମଙ୍ଗଳ କରନ୍ତୁ ।'

ମିସନର ଖୋଲାପଡ଼ିଆରେ ସଭା ହେଲା । ତେଣୁ ରାସ୍ତାଗଲା ଲୋକେ ବି ଟିକେ ଅଟକି ଯାଇ ଭିତରେ କଣ ଚାଲିଚ଼ି ବୋଲି ପାଚେରୀ ଉପରେ ଉଙ୍କିମାରି ଦେଖୁଥିଲେ । ଗୋଟାଏ ଉଚ୍ଚପେଣ୍ଡାଲ ଉପରେ ଗଞ୍ଜାମରୁ ଆସିଥିବା ଧର୍ମଯାଜକ ଠିଆ ହୋଇଥିଲେ । ତାଙ୍କ ଚାରିପାଖେ ଲୋକମାନେ ଚକାପକାଇ ବସିଥିଲେ । ଢେର ଲୋକ ରାସ୍ତାକଡ଼ ପାଚେରୀ ଉପରଦେଇ ଏସବୁ ଦେଖୁଥିଲେ । କୃପା ଭିତରେ ଚକାମାରି ବସିଥିବା ଲୋକଙ୍କ ଦଳରେ ବସିଥିଲା । ଜଣେ ମିସନାରୀ ପ୍ରାର୍ଥନାଟିଏ ପଢ଼ିବା ପରେ ଆଉଜଣେ ସ୍ଥାନୀୟ ପ୍ରବଚକ ତାହା ଓଡ଼ିଆରେ ବୁଝାଉଥିଲେ ।

"ହେ, ମୋର ବନ୍ଧୁମାନେ । ଏହି ଧର୍ମବାକ୍ୟ ବଡ଼ ଉପାଦେୟ । ଆପଣମାନେ ଜାଣିପାରିବେ, କେଡ଼େ ଉପାଦେୟ କଥା ସବୁ କହିବା ପାଇଁ ମୁଁ ସୁଦୂର ଆମେରିକାରୁ ଏଠାକୁ ଆସିଛି ।"

କୃପା ଭାବିଲା ଯେ ଆମେରିକୀୟମାନେ ସମସ୍ତେ ବାପଟିଷ୍ଟ ହୋଇଥିବା ସ୍ୱାଭାବିକ । ମାତ୍ର ସେମାନେ ଏ ଓଡ଼ିଆମାନଙ୍କୁ ଖ୍ରୀଷ୍ଟଧର୍ମର ଦୀକ୍ଷିତ କରିବାକୁ ଚାହୁଁଛନ୍ତି ।

କେଡ଼େ  ଖରାପ କଥା ଏଇଟା ! ତେଣୁ ସେ ଗଞ୍ଜାମୀ ପ୍ରବନ୍ଧକର ଓଡ଼ିଆ ସମୀକ୍ଷା ନ ଶୁଣି ମନେମନେ ସ୍ୱପ୍ନ ଦେଖୁ ଦେଖୁ ଢୁଳେଇ ଢୁଳେଇ ଭାଷଣ ସରିବା ଯାଏ ସେଠି ଅପେକ୍ଷାରେ ବସି ରହିଲା । ଭାଷଣ ସରିବା ପରେ ଧର୍ମଯାଜକ ଓ ଦୀକ୍ଷିତମାନେ ଗୋଟାଏ ପ୍ରାର୍ଥନା ଶ୍ଳୋକ ଗାଇଲେ ଯେଉଁଟା କି ଯେକୌଣସି ହିନ୍ଦୁ ଭଜନଠାରୁ ନିକୃଷ୍ଟ ଧରଣର ବୋଲି କୃପାର ମନେ ହେଲା । ସେ ସେହି ମିସନାରୀ ମୁଖ୍ୟଙ୍କୁ ଖୋଜି ଲାଗିଲା ! ବୃଦ୍ଧ ବଦ୍ରଲୋକ ତାର ହାତ ଧରି ଗୋଟାଏ ଘରେ ନେଇ ବସାଇଲେ ଓ ମଧୁର ଭାବରେ କହିଲେ,

– 'କହିଲ, ତୁମକୁ ଏ ପ୍ରାର୍ଥନା ସଭା ଭଲ ଲାଗିଲା ତ ?'

– 'ମହାଶୟ, ମୁଁ ଖୁବ୍ ମନଧ୍ୟାନ ଦେଇ ଶୁଣୁଥିଲି । ମାତ୍ର ଗୋଟାଏ କଥା କହିବାକୁ ଚାହେଁ ମହାଶୟ ।'

– 'କୁହ, କଣ କହୁନାହଁ ।'

'ସାର୍, ମୁଁ କଲେକ୍ଟର ଅଫିସରେ କିରାଣୀ ଅଛି । ସେଠାରେ ଜଣେ ଟାଇପିଷ୍ଟ ଷ୍ଟେନୋ ଦରକାର । ମୁଁ ନିଜକୁ ସେଥିପାଇଁ ଯୋଗ୍ୟ କରିବାକୁ ଚାହେଁ । ମୁଁ ଜାଣେ ସେ ଦିଗରେ ଆପଣ ମୋତେ ଦିଗଦର୍ଶନ ଦେଇ ପାରିବେ ।'

ଏକଥା ଶୁଣି ବୃଦ୍ଧ ଟିକେ ମୁହଁ ଖଟା କରି ନିଜ ଦାଢ଼ୀ ସାଉଁଳାଇ କିଛି ମିନିଟ ବସି ରହିଲେ । ତାପରେ ଅଳ୍ପ ହସିଲେ ।

– 'ଠିକ୍ କଥା । ଅଫିସରେ ଆଉରି ଅନେକ କିରାଣୀ ଥିବେ । ସେମାନେ ସର୍ଟହ୍ୟାଣ୍ଡ ଶିଖିବାକୁ ଇଛା କରୁଥିବେ । ଏଥିପାଇଁ ଆମେ ସଂଧ୍ୟା ବେଳେ ଗୋଟାଏ କ୍ଲାସ ନେଲେ ମନ୍ଦ ହୁଅନ୍ତାନି ।'

– "ସାର୍, ଆମେ ଓଡ଼ିଆମାନେ ଭୀଷଣ ଅଳସୁଆ । ଭବିଷ୍ୟତର ଉନ୍ନତି କଥା ବେଶୀ କିଛି ଭାବୁନା । ଅଧିକନ୍ତୁ, ମିସନଙ୍କୁ ଆସିବା ପାଇଁ ଆମେ ଆମ ଧର୍ମ ସମାଜର ତାଡ଼ନାକୁ ଭୟ କରୁଁ ।" ପ୍ରକୃତରେ ଜାତି ଭାଇଙ୍କ ଡରରୁ ସେ ଏକଥା କହିଲା ନାହିଁ । ସେ କେବଳ ନିଜେ ଏକଲା ସର୍ଟହ୍ୟାଣ୍ଡ କିପରି ଶିଖିବ ସେଇ ଉଦ୍ଦେଶ୍ୟରେ କହିଲା ଏକଥା ।

"ତା'ତ ସତକଥା । ତେବେ ତୁମେ ନିଶ୍ଚିତରେ ଏଠାକୁ ଆସି ସାହସିକତାର ପ୍ରମାଣ ନେଇଛ । ତମକୁ ଏଥିପାଇଁ ବାହାବା ଦେବା କଥା । ମୋର ସହାୟକ (Assistant) ସର୍ଟହ୍ୟାଣ୍ଡ ଜାଣେ । ତାକୁ ଡକାଇ ଏସଂକ୍ରାନ୍ତରେ କ'ଣ କରାଯାଇପାରିବ, ମୁଁ ଚିନ୍ତା କରିବି ।"

ଶେଷରେ ସ୍ଥିର ହେଲା ଯେ ସପ୍ତାହରେ ତିନିଦିନ କୃପାସିନ୍ଧୁ ସର୍ଟହ୍ୟାଣ୍ଡ ଶିଖିବାକୁ ମିସନକୁ ଆସିବ । ସେଥିପାଇଁ କିଛି ଫି ମିସନ ନେବନି । ମାତ୍ର ଫଣ୍ଡକୁ କିଛି ସାହାଯ୍ୟ ତାକୁ ପ୍ରତିମାସ ଦେବାକୁ ପଡ଼ିବ । ତେଣୁ ତାର ପର ୬ମାସରେ ସପ୍ତାହକୁ ତିନିଦିନ ସେ ମିସନ୍ ଯାଇ ସର୍ଟହ୍ୟାଣ୍ଡ ଓ ଟାଇପ ଶିଖିଲା ।

କେତେ ଆଗ୍ରହରେ କୃପାସିନ୍ଧୁ ନିଜ ଟ୍ରେନିଂରେ ଧୂରୀଣ ହେବାକୁ ଚେଷ୍ଟା କରୁଥିଲା । କାରଣ, ତାର ବିଶ୍ୱାସ ଥିଲା ଯେ, ୟାପରେ ସେ ନିଶ୍ଚୟ କଲେକ୍ଟରଙ୍କର ବ୍ୟକ୍ତିଗତ ଷ୍ଟେନୋ ହୋଇ ପାରିବ । ପୂର୍ବଭଳି ବନ୍ଧୁକ ଲାଇସେନ୍ସ ଦେଇ ତାର ଅର୍ଜନ ବଢ଼ି ଚାଲିଥିଲା । ଭାଗ୍ୟଦେବୀ ତା ପ୍ରତି ପ୍ରସନ୍ନ ଥିଲେ ବୋଲି ସେ ଖୁବ ଖୁସି ଥିଲା । ଏକମାତ୍ର ଦୁଃଖ ତାର ହେଲା ଯେ ତା ବାପାଙ୍କ ଦେହ ଆଗଭଳି ଭଲ ରହୁନଥିଲା । ତାଙ୍କୁ ମଝିରେ ମଝିରେ ଜ୍ୱର ଆସୁଥିଲା । କୃପା ଯେତେବେଳେ ଆନନ୍ଦର ଶୀର୍ଷରେ ଥିଲା ସେତେବେଳେ ଗୋଟାଏ ଦୁର୍ଭାଗ୍ୟଜନକ ଘଟଣା ଘଟିଲା ।

ଦୁର୍ଭିକ୍ଷ ବେଳେ କଲେକ୍ଟର ସାହେବ ଦୁର୍ଗତ ମାନଙ୍କର ଜୀବନ ରକ୍ଷା ପାଇଁ ଲାଗିପଡ଼ିଥିବା ବେଳେ ହିସାବନିକାଶକୁ ଗୁରୁତ୍ୱ ଦେଇ ପାରି ନଥିଲେ । ଦୁର୍ଭିକ୍ଷ ପରେ ହିସାବ ନିକାଶ କଲାବେଳକୁ ବହୁତ କିଛି ଏପଟସେପଟ ହୋଇଥିବାର ଜଣାପଡ଼ିଲା । ଜଣେ ଡେ଼ପୁଟୀ କଲେକ୍ଟରଙ୍କୁ ସାହେବ ଏସବୁ ତଦାରଖ କରିବାକୁ କହିଲେ । ଶିରସ୍ତାଦାରଙ୍କୁ ଗୋଟାଏ ଭଲ କିରାଣୀ ନିଯୁକ୍ତି ପାଇଁ ଡେପୁଟୀ କଲେକ୍ଟର ନିର୍ଦ୍ଦେଶ ଦେଲେ ।

ଦୁର୍ଭିକ୍ଷ ବେଳେ ସବୁ କିରାଣୀ ଓଭରଟାଇମ କରୁଥିଲେ । ଛୁଟି ମିଳିବା କଷ୍ଟକର ହୋଇ ପଡ଼ିଥିଲା । ଏବେ ସମସ୍ତେ ଛୁଟି ନେବାକୁ ଚାହିଁଲେ । ଦୁର୍ଭିକ୍ଷ ବେଳର ହିସାବ କରିବାକୁ କେହି ଇଚ୍ଛୁକ ହେଲେ ନାହିଁ । ପ୍ରଥମେ ନିଯୁକ୍ତ ହୋଇଥିବା କିରାଣୀଟି କିଛିଦିନ କାମ କରିବା ପରେ ଛୁଟି ନେବାକୁ ଚାହିଁଲା । ପିଲା ଜନ୍ମ ବେଳେ ତାର ସ୍ତ୍ରୀ ମରିଯାଇଥିବାରୁ ପିଲାଙ୍କ ଯତ୍ନ ନେବାକୁ ସେ ଚାହୁଁଥିଲା । ଦ୍ୱିତୀୟ କିରାଣୀଟି ତାର ସ୍ତ୍ରୀର ଅକର୍ମଣ୍ୟ ପଣ ପାଇଁ, ତାରି ଚିକିତ୍ସା ପାଇଁ ଛୁଟି ଆବେଦନ କଲା । ତୃତୀୟଟି ତାର ଅକର୍ମଣ୍ୟ ସ୍ତ୍ରୀକୁ ବାଲେଶ୍ୱର ଆଣି ଡାକ୍ତର ଦେଖାଇବାକୁ ଛୁଟି ମାଗିଲା । ଚତୁର୍ଥଟି ଇଂରାଜୀ ଜାଣିଥିବାରୁ ଖୁବ୍ ଗର୍ବ କରୁଥିଲା । ସେ ଆବେଦନ କଲା ଯେ ତାର ସ୍ତ୍ରୀ ରୋଗରେ ପୀଡ଼ିତା । ତେଣୁ କଲେକ୍ଟର ଏସବୁ ଛୁଟି ଆବେଦନ ପତ୍ରର କାହାଣୀ ପଢ଼ି ସମସ୍ତଙ୍କୁ ଛୁଟୀ ଦେଇ ଦେଲେ ଓ କୃପାକୁ ଡାକି ପଠେଇଲେ ।

"କୃପାବାବୁ, ତୁମେ ଆମ ଅଫିସର ଜଣେ ଅତ୍ୟନ୍ତ ପରିଶ୍ରମୀ ଏବଂ ଉଦ୍ୟମୀ

କିରାଣୀ । ଦୁର୍ଭିକ୍ଷ ଜନିତ ଖର୍ଚ୍ଚର ହିସାବ ନିକାଶ ପାଇଁ ତୁମକୁ ମୁଁ ଆବଶ୍ୟକ କରେ । ଏପାଇଁ ନିଯୁକ୍ତ ସବୁ କିରାଣୀ ନିଜ ନିଜର ସ୍ତ୍ରୀ ମାନଙ୍କ ଅକର୍ମଣ୍ୟତା ଆଳରେ ଛୁଟି ନେଇଛନ୍ତି । ମୁଁ ଭାବୁଛି, ତୁମେ ମୋତେ ସେମିତି ଧୋକ୍କା ଦେବ ନାହିଁ ।" କଲେକ୍ଟର କହିଲେ ।

ଏକଥା ଶୁଣିବାକୁ କୃପାକୁ ଭଲ ନ ଲାଗିଲେ ବି ତାପାଖରେ କଲେକ୍ଟରଙ୍କ କଥା ନ ମାନି ଗତ୍ୟନ୍ତର କିଛି ନଥିଲା । ସେ ଭାବିଲା, ସୁଯୋଗର ଉପଯୁକ୍ତ ବିନିଯୋଗ କରିବା ଉଚିତ ହେବ ।

କୃପାସିନ୍ଧୁ ନିଜ ସ୍ତ୍ରୀମାନଙ୍କ କଥା ବୟାନ ନ କରି ଏବେ ତାର ଏ କର୍ମ କରିବାରେ କିଛି ଅସୁବିଧା ନାହିଁ ବୋଲି ଜଣେଇ ଦେଲା ।

ବର୍ତ୍ତମାନ କୃପାସିନ୍ଧୁ ଦୁର୍ଭିକ୍ଷ ଖର୍ଚ୍ଚ ହିସାବ ବେଶ୍ ଶ୍ରମ ସ୍ୱୀକାର ସହ କରିବାକୁ ଲାଗିଲା । ୟା ଭିତରେ ହରିବନ୍ଧୁର ପରବର୍ତ୍ତୀ ଚିଠି ସେ ପାଇଲା । ହରିବଂଧୁ ଲେଖିଥିଲା ଯେ ବାପାଙ୍କ ଦେହ ଖୁବ୍ ଖରାପ ଅଛି । ସବୁବେଳେ ଜ୍ୱର ଲାଗି ରହୁଚି । ପେଟଟି ବି ଫୁଲି ରହିଛି । କଲେକ୍ଟର ଏ ସବୁ ଶୁଣି ଛୁଟି ଦେବାକୁ ଅମଙ୍ଗ ହେଲେ ଏବଂ ଶେଷରେ କହିଲେ ବାପାଙ୍କୁ ଆଣି ଶୀଘ୍ର ବାଲେଶ୍ୱର ହାସପାତାଲରେ ଦେଖାଇବାକୁ ।

ହାସ୍‌ପାତାଲ କଥା ଶୁଣିଲେ କୃପାସିନ୍ଧୁକୁ ଡ଼ର ଲାଗେ, କାରଣ ତା ପାଇଁ ଏଇଟା ଗୋଟାଏ ବିଦେଶୀ ସଂସ୍ଥା । ତେଣୁ ସେ ଡାକ୍ତରବାବୁଙ୍କ ପାଖକୁ ଯାଇ ହରିବନ୍ଧୁର କହିବା ଅନୁସାରେ ବାପାଙ୍କ ରୋଗର ଲକ୍ଷଣ ସବୁ କହିଲା । ଡାକ୍ତର ରୋଗଟାକୁ ମ୍ୟାଲେରିଆ ବୋଲି ଧରିନେଇ ଗୋଟାଏ ଘୋଳ ପିଇବାକୁ ନିଦାନ ଦେଲେ । ନିଦାନଟିର ଖୋରାକ ଦିନକୁ ତିନିଥର  କରି । କୃପାସିନ୍ଧୁ ମିଶ୍ରଣ ପ୍ରସ୍ତୁତ କରେଇ ବୋତଲଟି ସାଥୀରେ ନେଇଗଲା ।

ଦୁଇଟି ବୋତଲ ଔଷଧ ଖାଇ ସାରିବାପରେ ମଧୁସୂଦନ ବେଶ୍ ସୁସ୍ଥ ହୋଇ ଉଠିଲେ । କୃପାସିନ୍ଧୁ ବାଲେଶ୍ୱର ଫେରି ଆସିଲା । ଆଉ ଦୁଇଟି ବୋତଲ ହରିବନ୍ଧୁକୁ ଦେଇ ବାପା ଠିକ୍‌ରେ ସେ ଔଷଧ ଯେମିତି ନିଅନ୍ତି ତାହା ତାଗିଦା କରି ଆସିଲା ।

ଏଘଟଣାର ମାସେ ନ ଯାଉଣୁ ହରିବନ୍ଧୁ ପୁଣି ଲେଖିଲା ଯେ ବାପାଙ୍କର ଦେହ ଆହୁରି ଖରାପ । ତାଙ୍କ ପେଟ ଆଗ ଅପେକ୍ଷା ଆହୁରି ବେଶୀ ଫୁଲି ଯାଇଛି । ଏଥର ଯେମିତି ହେଉ କୃପାସିନ୍ଧୁ ଛୁଟି ନେଇ ଆସିବ । କାରଣ ବାପା ତାଙ୍କ ଆଦରର ପୁଅକୁ ମରିବାପୂର୍ବରୁ ଥରେ ଦେଖିବାକୁ ଚାହାନ୍ତି । କୃପା ଆଉ ଗୋଟାଏ ଛୁଟି ଦରଖାସ୍ତ ଦେବାରୁ ଡେପୁଟୀ କଲେକ୍ଟର କହିଲେ ଯେ କଲେକ୍ଟର ନିଶ୍ଚୟ ଏଇଟା ବରଖାସ୍ତ

କରିଦେବେ । ବରଂ ସେ ନିଜେ ଦରଖାସ୍ତଟି ନେଇ କଲେକ୍ଟରଙ୍କ ପାଖକୁ ଯାଉ । କାରଣ କେହି ସାହେବ ତାକୁ ମନା କରିବା ଭଳି ହୃଦୟହୀନ ନୁହେଁ ବୋଲି ତାର ବିଶ୍ୱାସ ।

ଦରଖାସ୍ତଟି ପଢ଼ିସାରି କଲେକ୍ଟର ବିରକ୍ତ ହେଲେ । 'ଯଦି ତମେ ଉପଦେଶ ଶୁଣିଥାନ୍ତ ଓ ବାପାକୁ ବାଲେଶ୍ୱର ହସ୍‌ପିଟାଲରେ ଆଣି ରଖିଥାନ୍ତ ତ ତାଙ୍କୁ ତୁମେ ସବୁଦିନ ଦେଖି ପାରିଥାନ୍ତ । ସେ' ବି ଉପଯୁକ୍ତ ଚିକିତ୍ସା ପାଇ ପାରିଥାନ୍ତେ । ଏବେ ତ ବାକିଆ ହିସାବ ନିକାଶ ଚାଲିଚି । ଏକାମ ଶେଷ ନ ହେବା ଯାଏ ତୁମେ ଯାଇପାରିବ ନାହିଁ । ଏଇଟା ଶୀଘ୍ର ଶେଷ କରିଦିଅ ।'

'ସାର୍ କାମଟା ବହୁତ କଷ୍ଟ ଓ ଯଥେଷ୍ଟ ବେଶି ବାକି ପଡ଼ିଛି । ଅଳ୍ପ ସମୟ ଭିତରେ ଏହା ସାରିପାରିବା ସମ୍ଭବ ନୁହେଁ ।' କୃପା ବିନମ୍ରତା ସହ କହିଲା ।

'ଏତେବେଳକୁ କାମଟା ସରି ସାରନ୍ତାଣି । ଏଇ କିରାଣୀମାନଙ୍କର ଅଳସୁଆପଣ ଏବଂ ଛୁଟିନେବା ଯୋଗୁଁ ହିଁ କାମ ତୁଟିଲା ନାହିଁ ।'

କୃପା କାନ୍ଦି କାନ୍ଦି କହିଲା, 'ସାର୍ ମୋ ପାଇଁ ନୁହେଁ, ମୋ ବାପାଙ୍କ ପାଇଁ ହିଁ ଛୁଟି ନେବି ।'

ତମ ବାପା କି ଘୋଷବାପା ଯା'ହୁଅନ୍ତୁ ସେଥିରେ ମୋର କେତେ ଯାଏ ଆସେ । ଆଗ କାମ । କାମ ନସରିବା ଯାଏ ତମେ ଛୁଟିରେ ଯାଇ ପାରିବନି ।'

କୃପା ରୁମ୍ ଭିତରୁ ବାହାରି ବାରଣ୍ଡା ତଳେ ପାହାଚ଼ ଦେଇ ଓହ୍ଲେଇ ଗଲା । ଝୁଲନ୍ତା ଅବସ୍ଥାରେ -ଯେପରି ତାର ମୁଣ୍ଡରେ କେହି ପାହାରଟିଏ ପକେଇ ଦେଇଛି । ରାସ୍ତା ଉପରେ ଝୁମିଝୁମି ମଦୁଆଙ୍କ ପରି ଚାଲିବା ବେଳେ ଗେଟ୍ କାନ୍ଥରେ ଭରା ଦେଇ ସେ କିଛି ସମୟ କାନ୍ଦିଲା ।

ଗଣ୍ଡଗୋଳ ଶବ୍ଦ ଶୁଣି ସାହେବ ବାହାର ବାରଣ୍ଡାକୁ ଆସି ଘଟଣା କଣ ବୋଲି ନିରୀକ୍ଷଣ କଲେ । କୃପାସିନ୍ଧୁ ଗେଟ୍ କାନ୍ଥରେ ଡ଼େରି ଭୋ ଭୋ କାନ୍ଦିବାର ଶୁଣି ତାଙ୍କ ହୃଦୟ ବିଚ଼ଳିତ ହୋଇ ପଡ଼ିଲା । ସେ ତାକୁ ଭିତରକୁ ଡ଼କେଇ ପଠେଇଲେ ।' "ଏବେ କାନ୍ଦ ବନ୍ଦ କର ବାବୁ, ତୁମକୁ ଛୁଟି ମିଳିବ । ବାପାକୁ ଯାଇ ହସପାତାଲକୁ ନେଇ ଆସ । ମୁଁ ସିଭିଲ ସର୍ଜନଙ୍କ ସଙ୍ଗେ ସେ ବିଷୟରେ କଥା ହେବି । ସେ ନିଜେ ସବୁ ତଦାରଖ କରି ତାଙ୍କର ଠିକ୍ ଚିକିତ୍ସା କରିବେ ।"

ଏକଥା ଶୁଣି କୃପାସିନ୍ଧୁ ଟିକେ ଆଶ୍ୱସ୍ତ ହେଲା ସତ କିନ୍ତୁ ତାର କାନ୍ଦ ବନ୍ଦ ହେଲା ନାହିଁ । ନିଃଶବ୍ଦରେ ତାର ଆଖିରୁ ଧାର ଧାର ଲୁହ ବୋହି ଚାଲିଲା । ଧୀରେ

ଧୀରେ ଉଠି ସେ କଲେକ୍ଟରଙ୍କୁ ଧନ୍ୟବାଦ ଜଣେଇ ଚାଲିଗଲା ।

ତତ୍କ୍ଷଣାତ୍ ସେ ଗାଁକୁ ବାହାରିଗଲା । ନାଆ ଘାଟ ପାଖରେ ନାଉରୀକୁ ସବୁ କଥା କହିବାରୁ ନାଉରୀଟି ତାର କ୍ଷମତା ଅନୁସାରେ ତାକୁ ସାହାଯ୍ୟ କରିବ ବୋଲି କଥା ଦେଲା । ଘରେ ପହଞ୍ଚି କଲେକ୍ଟର ସାହେବ ଯାହା କହିଥିଲେ, ସେ କଥା ଭାଇମାନଙ୍କୁ ଜଣେଇଲା । ସେମାନେ ଗୋଟାଏ ଖଟିଆ ମଗେଇ ତା' ଉପରେ ନରମ ବିଛଣା ପକେଇ ବାପାଙ୍କୁ ସେଥିରେ ନେଇ ନଈଘାଟ ଯାଏ ଗଲେ । ନାଉରୀଆ ତାର ନାଆରେ ପାଳବିଛାଇ ରଖିଥିଲା । ଯେପରି ମଧୁସୂଦନଙ୍କୁ ବେଶୀ କଷ୍ଟ ଲାଗିବନି । ନଈ ସେପାରିରେ ବଳଦଗାଡ଼ିରେ ଢ଼େର ଗୁଡ଼ାଏ ପାଳ ବିଛେଇ ନାଉରୀଆଟି ସବୁ ସଜକରି ରଖିଥିଲା । ତିନିଜଣ ଭାଇ ମିଶି ବାପାଙ୍କୁ ଟେକି ନେଇ ବଳଦଗାଡ଼ି ବିଛଣାର ଶୁଆଇଦେଲେ ।

ଶଗଡ଼ଟି ଟିକେ ଧକଡ଼କଚଡ଼ ହେଲେ ମଧୁସୂଦନ କଷ୍ଟରେ ଚିତ୍କାର କରି ଉଠୁଥାନ୍ତି । ସହର ପହୁଞ୍ଚା ପହୁଞ୍ଚି ହେବା ବେଳକୁ ଶଗଡ଼ଟି ବେଶୀ ଧଡ଼୍ଧଡ଼୍ ଝଟକା ଦେଲା । ରୋଗୀ ଚିହିଁକି ଉଠୁଥାଏ । ତାପରେ ସେ ଧୀରେ ଧୀରେ ଘୁଡୁଘୁଡୁ ହେଲେ ।

ସାରାଟାଦିନ ଶଗଡ଼ରେ ବସି ସେମାନେ ସଂଜରେ ବାଲେଶ୍ୱରରେ ପହଞ୍ଚିଲେ ଏବଂ ସଂଗେ ସଂଗେ ଡାକ୍ତରଙ୍କ କଥାନୁସାରେ ବେଡ଼ରେ ନେଇ ଶୁଆଇ ଦେଲେ । କଣ ହେଇଚ଼ି ବୋଲି ଡାକ୍ତରଙ୍କୁ ପଚାରିବାରୁ ଡାକ୍ତର କହିଲେ -

'ତାଙ୍କର ପ୍ଳିହାଟା ଅକାମୀ ହୋଇ ପଡ଼ିଛି । ଦୁଇମାସ ଆଗରୁ ଆଣିଥିଲେ ଭଲ ହୋଇ ପାରିଥାନ୍ତା ।'

'ତେବେ କଣ କହୁଛନ୍ତି ତାଙ୍କର ଭଲ ହେବାର ଆଶା ନାହିଁ ?' ହରିବନ୍ଧୁ ପଚାରିଲା ?

'ବାବୁ, ସକାଳ ଯାଏ ସେ ଥାକିବେ ବୋଲି ମୁଁ କହି ପାରୁନାହିଁ ।' ଡାକ୍ତରଙ୍କର ଏ ଉତ୍ତରରେ ତିନି ଭାଇଯାକ ବାପାଙ୍କ ପାଖରେ ରାତିସାରା ଜଗି ରହିଲେ । ସକାଳ ହେବାକୁ ତଥାପି ବାକି ଥାଏ- ପବନ ସ୍ଥିର ଥିଲା । ଅସମ୍ଭବ ଗରମ । ଲୋକେ ନିଶ୍ୱାସ ନେବା ବି କଷ୍ଟ ହୋଇପଡୁଥିଲା । ଦେହ ଝାଳରେ ଗାଧୋଇ ପଡୁଥାଏ । ପଶୁ ପକ୍ଷୀମାନେ ରାତିପାହିବାକୁ ଅତିଷ୍ଠ ହୋଇ ଚାହିଁ ରହିଥାନ୍ତି । ପୃଥିବୀଟା ସକାଳକୁ ପ୍ରତୀକ୍ଷା କରି ରହିଥାଏ । ସେତିକି ବେଳେ ମଧୁସୂଦନ ସଂସାର ଛାଡ଼ି ଚାଲିଗଲେ ।

ଦୟାନିଧି ଡାକ୍ତରଙ୍କୁ ବାପାଙ୍କର ମୃତ୍ୟୁ ହେବାର କାରଣ ପଚାରିବାରୁ ଡାକ୍ତର ଉତ୍ତର ଦେଲେ ଯେ ଶଗଡ଼ ଗାଡ଼ିର ଧକଡ଼ କଚ୍‌ଡ଼ରେ ତାଙ୍କର ପ୍ଳିହାଟି ଫାଟି ଯାଇଥିଲା ।

କୃପାସିନ୍ଧୁ ରହୁଥିବା ମେସ୍‌ରେ ସାଙ୍ଗମାନେ ସମସ୍ତେ ଏକା ଜାତିର ହୋଇଥିବାରୁ, ଶବ ଦାହର ସମସ୍ତ ବ୍ୟବସ୍ଥା ହୋଇ ଗଲା । କାରଣ ଏ ତିନି ଭାଇ କେବଳ କନ୍ଦାକଟା ଛଡ଼ା ଆଉ କିଛି କରି ପାରୁନଥିଲେ ।

ଦୟାନିଧି ବଡ଼ପୁଅ ହୋଇ ଥିବାରୁ ସେ ବାପାଙ୍କୁ ମୁଖାଗ୍ନି ଦେଲା ।

## ଦଶମ ପରିଚ୍ଛେଦ

ଛୁଟି ସରିଯିବା ପରେ କୃପାସିନ୍ଧୁ ଦୁର୍ଭିକ୍ଷ ଖର୍ଚ୍ଚର ହିସାବ କାମ ଶେଷ କରିବା ପାଇଁ ପୁଣି ଫେରି ଆସିଲା । ସେ କାମ କରିବାକୁ ତାର ମନ ଚାହୁଁ ନଥିଲା କାରଣ ଏକାମଟି କରିବା ଯୋଗୁଁ ତାର ଦୁର୍ଭାଗ୍ୟ ଆସିଲା ବୋଲି ସେ ଭାବୁଥିଲା । ଡେପୁଟୀ କଲେକ୍ଟର ଲକ୍ଷ୍ୟ କଲେ ଯେ କୃପାସିନ୍ଧୁ ଆଉ କାମରେ ମନ ଲଗେଇ ପାରୁନାହିଁ । ତେଣୁ ସେ ଆଉ ଜଣେ କିରାଣୀ ପାଇଁ ଶିରସ୍ତାଦାରଙ୍କୁ ନିର୍ଦ୍ଦେଶ ଦେଲେ । କୃପାସିନ୍ଧୁକୁ ଏବେ କେଉଁ ବିଭାଗରେ ମୁକରିର କରାଯିବ ବୋଲି ସେ ଚିନ୍ତାରେ ପଡ଼ିଲେ ଓ ତାକୁ ସେ କେଉଁଠି କାମ କରିବାକୁ ଚାହେଁ ବୋଲି ତାର ମତ ଲୋଡ଼ିଲେ । କୃପା ଉତ୍ତର ଦେଲା ଯେ ସେ କଲେକ୍ଟରଙ୍କର ଷ୍ଟେନୋ ହୋଇ ରହିବାକୁ ଚାହୁଁଛି । ସେ ଯେ ସର୍ଟହ୍ୟାଣ୍ଡ ଜାଣିଛି ଏ କଥା ଶୁଣି ଶିରସ୍ତାଦାର ଚମକି ପଡ଼ିଲେ ଏବଂ ଏ ଖବରଟି କଲେକ୍ଟରଙ୍କୁ ଅବଗତ କରାଇବାରୁ କଲେକ୍ଟର ତାକୁ ଡକେଇ କୃପାର ପରୀକ୍ଷା ନେଲେ । ପ୍ରଥମେ ଉଇନଷ୍ଟନଚର୍ଚ୍ଚିଲଙ୍କର ଗୋଟାଏ ଭାଷଣରୁ ପାରାଟିଏ ଡାକିଲେ । ମାତ୍ର କୃପା ଆଗରୁ ସେ ସବୁ ଶୁଣି ନ ଥିବାରୁ ସେ ଖାଲି ବଲ୍ ବଲ୍ କରି ଅନେଇ ରହିଲା । କଲେକ୍ଟର ଟିକେ ହସିଲେ ଓ ଚିଠିଟିଏ ଡାକିଲେ । କୃପା ଖୁବ୍ ସଫଳତାର ସହିତ ତାହା ସର୍ଟହ୍ୟାଣ୍ଡରେ ଲେଖିନେଲା ।

ଏହିପରି ଭାବରେ ସେ କଲେକ୍ଟରଙ୍କର ଷ୍ଟେନୋ ପିଏ ବନିଗଲା ଯେଉଁଥିପାଇଁ ସେ ବହୁତ ଆଶା ରଖିଥିଲା । ମାନ୍ୟବର କଲେକ୍ଟରଙ୍କର ବ୍ୟକ୍ତିଗତ ସହାୟକ ଭାବରେ ତାର ଦରମା ମଧ୍ୟ ଦୁଇଗୁଣ ବଢ଼ିଗଲା । କଚେରୀର ହୋହଲ୍ଲା ପରିବେଶରୁ ବିଦାୟ ନେଇ ସାହେବଙ୍କ ଘରର ଶାନ୍ତ ଓ ଐକାନ୍ତିକ ପରିବେଶ ଏବେ ତାର କାର୍ଯ୍ୟସ୍ଥଳୀ ହେଲା । ସେ ଭଲକରି ଜାଣି ଥିଲା ଯେ ସେଇ ପଦବୀରେ ପଇସା ଆୟର ବେଶ୍ ଭଲ ସୁଯୋଗ ଥାଏ । ସାହେବଙ୍କ ବ୍ୟକ୍ତିଗତ ସହାୟକ ହୋଇଥିବାରୁ ଅଫିସ ସମୟ କ୍ରମ ଅନୁସାରେ ତାର ଅଫିସ ଯିବା ଆବଶ୍ୟକ ନ ଥିଲା । ଦିନ କି ରାତି,

ଯେତେବେଳେ ଲୋଡ଼ା ପଡୁଥିଲା, ସେ ସାହେବଙ୍କ ପାଇଁ କାମ କରୁଥିଲା । ଅନ୍ୟ କିରାଣୀ ମାନଙ୍କଠୁଁ ବେଳେବେଳେ ବେଶି ସମୟ ଧରି ସେ ଅଫିସରେ କାମ କରୁଥିଲା । ମାତ୍ର ଏଠାରେ କେବେକେବେ ତାର ଆବଶ୍ୟକତା ବି ପଡୁ ନଥିଲା । ତେଣୁ ସେ ଘଣ୍ଟେ ଦି ଘଣ୍ଟା ସ୍ୱାଧୀନଭାବେ ସମୟ କାଟୁଥିଲା ।

ପ୍ରଥମେ ସେ ନୂଆ ପଦବୀରେ ଅଧିଷ୍ଠିତ ଲୋକଙ୍କ ସହ ମିଳାମିଶା ଓ ବନ୍ଧୁତା ବଢ଼ାଇଲା । ଏ ମାନଙ୍କ ଭିତରେ ଥିଲେ ସାହେବଙ୍କ ହୁକୁମ ତାଲିମ କରୁଥିବା ଚାକର, ଘରର ଚାକରାଣୀ ଏବଂ ନିଜେ ସାହେବାଣୀ ।

ଅଫିସ ସମୟ ହେବାର ବେଶ୍ ଆଗରୁ ସେ କଲେକ୍ଟରଙ୍କର ଘରେ ପହଞ୍ଚୁଥିଲେ । ଗୋଟାଏ କୋଠରୀର କୋଣରେ ତାର କାମ କରିବାର ଜାଗା । ସାହେବ ସଂଧ୍ୟା ଭ୍ରମଣରେ ବାହାରିଯିବା ପରେ ସେ ଘରକୁ ଫେରୁ ଥିଲା । ଯେଉଁଦିନ ସାହେବ ବହୁତ ଗୁଡ଼ାଏ ଚିଠିର ଡିକ୍‌ଟେସନ ଦେଉଥିଲେ, ସେ ଦିନ ତାକୁ ବେଶ୍ କଷ୍ଟ ପଡୁଥିଲା । ଅନ୍ୟଦିନ ମାନଙ୍କରେ ଯେବେ ଢ଼େର କମ୍ କାମ କରିବାକୁ ପଡ଼େ; ସେଦିନ ସେ ଲର୍ଡ ଚେଷ୍ଟରଫିଲ୍ଡଙ୍କ ପୁସ୍ତକ  'ଦ ଲେଟରଟୁ ହିଜ୍ ସନ୍' ଆଣି ପଢ଼େ ଓ ସମୟ କାଟେ । ସାହେବ ଯେବେ ଆବିଷ୍କାର କଲେ ଯେ କୃପା ତା'ର ବଳକା ସମୟର ସଦୁପଯୋଗ କରୁଛି ବହି ପଢ଼ା ପଢ଼ି କରି, ସେତେବେଳେ ସେ ତାକୁ ରବର୍ଟହିଚେନ, ଫ୍ଲୋରେନ୍ସ ବାର୍କଲେ ଆଦି ଇଂରେଜୀ ବହି ଆଣି ଦେଲେ । କୃପାସିନ୍ଧୁ ଇଂରେଜମାନଙ୍କ ଭଳି ଇଂରେଜୀ ଜାଣିବା ଲାଗି ଚେଷ୍ଟା କଲା ।

ସକାଳେ ସାହେବମାନେ ସେ ଅଂଚଳର ଜମିଦାରମାନଙ୍କ ସହ ସାକ୍ଷାତ ପାଇଁ ସମୟ ଦେଉଥିଲେ । କେତେଜଣ ତାଙ୍କୁ ବିଭିନ୍ନ ଖବର ଦେବାକୁ ଆସୁଥିଲେ ତ ଆଉ କେତେକ ନିଜର କାମ କରାଇବାକୁ ଆସୁଥିଲେ । କେତେକ ମଧ୍ୟ ସୌଜନ୍ୟ ସାକ୍ଷାତ ଅଭିବାଦନ ପାଇଁ ସାହେବଙ୍କ ପାଖକୁ ଆସୁଥିଲେ । କାହିଁକି ନା ଏମିତି କଲେ ସାଧାରଣ ଲୋକେ ସେମାନଙ୍କୁ ସାହେବଙ୍କର ନିକଟସ୍ଥ ଭାବି ବେଶୀ ସମ୍ମାନ କରିବେ ।

ମାତ୍ର, ସବୁ ଜମିଦାର ମାନଙ୍କୁ ଘରେ ସାହେବ ସାକ୍ଷାତ ଦେଉ ନଥିଲେ । କେତେ ଜଣଙ୍କୁ ଅଫିସ ଯିବାକୁ ପଡୁଥିଲା ତ ଆଉ କେତେକଙ୍କୁ ସାକ୍ଷାତ ହୋଇ ପାରିବନି ବୋଲି ରୋକ୍‌ଠୋକ୍ ଶୁଣାଇ ଦିଆ ଯାଉଥିଲା । କେହି ନୂଆ ଲୋକ ଆସୁଥିଲେ, ତାଙ୍କ ବିଷୟରେ ସବୁ ବୁଝାସୁଝା କଲାପରେ ହିଁ ସାହେବ ତାଙ୍କୁ ସାକ୍ଷାତ ଦେଉଥିଲେ ।

କୃପାସିନ୍ଧୁ ଦେଖିଲା ଯେ ସେ ଯେଉଁ ଲୋକଙ୍କ କଥା ସାହେବଙ୍କୁ କହିଦେଉଚ୍ଛି- ତା'ରି କଥା ଅନୁସାରେ ସାହେବ ସେମାନଙ୍କୁ ଦର୍ଶନ ଦେଉଛନ୍ତି । ନହେଲେ ନାହିଁ । ତେଣୁ ସେ ଅଞ୍ଚଳରେ ସବୁ ବଡ଼ବଡ଼ିଆଙ୍କ ବିଷୟରେ ଜାଣିବାକୁ କୃପାସିନ୍ଧୁ ସେମାନଙ୍କୁ ଦେଖା କଲା । ସେମାନେ ବି କୃପାକୁ ସସମ୍ମାନେ ଅଭିନନ୍ଦନ ଜଣାଇଲେ କାରଣ ସମସ୍ତେ ଜାଣିଥିଲେ ସାହେବଙ୍କ ସହିତ କୃପା କି ପ୍ରକାରେ ସଂଶ୍ଲିଷ୍ଟ । ବର୍ତ୍ତମାନ ଜଥାହେଲା,ଯେଉଁ ଆଗନ୍ତୁକମାନେ ସାହେବଙ୍କ ପାଖକୁ ଆସୁଥିଲେ ସେମାନେ ସାହେବଙ୍କ ଦ୍ୱାରଜଗା ପିଅନକୁ ହାତଗୁଞ୍ଜା ଦେଉଥିଲେ । ହେଲେ ଅଫିସର ମାନେ କିଛି ଦେଉ ନ ଥିଲେ । ସାଧାରଣତଃ ଦୁଇଟଙ୍କା ଏଥିପାଇଁ ମିଳୁ ଥିଲା । ମାତ୍ର କେତେଜଣ ତାଠାରୁ ବି ବେଶୀ ଦେଉଥିଲେ । କୃପା ମୁଖ୍ୟ ପରିଚାରକ ସହ ସମ୍ପର୍କ ରଖିଥିଲା । ଯେଉଁମାନେ ସବୁଦିନେ ଆସୁଥିଲେ ସେମାନଙ୍କର ଗୋଟାଏ ତାଲିକା ସେ ରଖିଥିଲା। ମୁଖ୍ୟ ପରିଚାରକ ସହ ସେ ବକ୍‌ସିସ୍ ଭାଗ ବଣ୍ଟୁରା କରୁଥିଲେ, ଯେଉଁମାନେ ଏମାନଙ୍କ ପ୍ରଣୀତ ନିୟମ ଅନୁସାରେ ହାତଗୁଞ୍ଜା ଦେଉ ନଥିଲେ କୃପା ସେମାନଙ୍କ ବିରୁଦ୍ଧରେ ସାହେବଙ୍କ ମୁଣ୍ଡରେ ବିଷ ଭରି ଦେବାର ଚେଷ୍ଟା କରୁଥିଲା କିମ୍ବା ତାଙ୍କ କାମରେ ଅଯଥା ଡ଼େରି କରୁଥିଲା । ପରିଚାରକ ତାକୁ ଟଙ୍କାରେ ଚାରିଅଣା କରି କମିଶନି ଦେଉଥିଲା । ଏ ପ୍ରକାରେ କୃପା ମାସକୁ ଦି'ଶରୁ କମ୍ ଟଙ୍କା କମାଉ ନ ଥିଲା । ଦରକାର ପଡ଼ିଲେ ବେଶୀ ବି ଆୟ ହେଉଥିଲା ।

ସମୟକ୍ରମେ ସାହେବ ଚିଠି ଲେଖାଇବାରେ, ଏତେ ଅଭ୍ୟସ୍ତ ହୋଇଗଲେ ଯେ ସରକାରୀ କି ବେସରକାରୀ ସବୁତକ ଚିଠି କୃପା ଦ୍ୱାରା ଲେଖାଇବାରେ ଲାଗିଲେ। ଅଧିକ କାମ କରିବାକୁ କୃପା ଅମଙ୍ଗ ହେଉ ନଥିଲା । କେବେ କେବେ ମେମ୍‌ସାହେବ ବି ତାକୁ କାମ ଦେଉଥିଲେ । ତେଣୁ  ମ୍ୟାଡାମଙ୍କର ଘରର ଦି'ଜଣ ଯାକ ତା ପ୍ରତି ଦୟାପ୍ରବଣ ଥିଲେ । ତାର ଦେହ ଖରାପ ବେଳେ ଔଷଧ ମଧ୍ୟ ସେମାନେ ଆଣି ଦେଉଥିଲେ । କୃପାସିନ୍ଧୁର ମନ ଦିନକୁ ଦିନ ଖୁସି ହୋଇ ଉଠୁଥିଲା କାରଣ ସାହେବଙ୍କୁ ଖୁସି କରାଇବା ପାଇଁ ଆସୁଥିବା ଲୋକେ ତାକୁ ମଧ୍ୟ କିଛି ଉପହାର ଦେଉଥିଲେ । ତେଣୁ ଅନ୍ୟ କିରାଣୀମାନେ ତାକୁ ଇର୍ଷା କରିବାରେ ଲାଗିଲେ ।

ବାପା ମରିବାର ଦୁଃଖ ନ ଲିଭିବା ଆଗରୁ....ମନ ତାର ଟିକେ ଖୁସି ହୋଇ ଉଠିବା ବେଳେ ଆଉ ଗୋଟାଏ ବିପଦ ତାକୁ ପଡ଼ିଗଲା-କୃପାର ସ୍ତ୍ରୀର ମୃତ୍ୟୁ ହୋଇଗଲା ।

ତାର ସ୍ତ୍ରୀକୁ ପ୍ରଥମେ ଫ୍ଲୁ ହୋଇଥିଲା ପରେ ପରେ ନିମୋନିଆ ଧରିଲା ଓ ସେ

ମରିଗଲା । ପୁଣିଥରେ ସ୍ତ୍ରୀକୁ ହରେଇବାର ଦୁଃଖ ତାପାଇଁ ଖୁବ୍ ଦାରୁଣ ଥିଲା । ବୟସ୍କା ଓ ସ୍ୱାସ୍ଥ୍ୟବତୀ ବୋଲି ଦ୍ୱିତୀୟ ସ୍ତ୍ରୀକୁ ସେ ବାହା ହୋଇଥିଲା । କିନ୍ତୁ ଘଟଣା ହେଲା ଯେ, ପିଲାଏଁ ତାଙ୍କ ମାଉ କ୍ଷୀର ଖାଇ ତାକୁ ଦୁର୍ବଳ କରି ପକେଇ ଥିଲେ । ତେଣୁ ତାକୁ ସହଜରେ ରୋଗ ଆକ୍ରମଣ କରିପାରିଲା । ତା ସ୍ତ୍ରୀ ଦେହରେ ରୋଗ ପ୍ରତିରୋଧକ ଶକ୍ତି ନଥିଲା ।

ନିଜ ସ୍ତ୍ରୀର ମୃତ୍ୟୁରେ କୃପା ଖୁବ୍ କାନ୍ଦିଲା । ସେ କେଡ଼େ ପତିପ୍ରାଣା ଏବଂ କର୍ମପ୍ରବଣା ସ୍ତ୍ରୀ ଥିଲା । କିନ୍ତୁ ନିର୍ମଳାବାଳାକୁ ସେ ଯେପରି ହୃଦୟର ସ୍ପନ୍ଦନ ସହ ଭଲ ପାଇଥିଲା -ଏ ସ୍ତ୍ରୀକୁ ସେମିତି ଭଲ ପାଇପାରି ନଥିଲା ।

କୃପାସିନ୍ଧୁକୁ ପଇଁତ୍ରିଶ ବର୍ଷ ବୟସ ହୋଇଥିଲା ସେ ନିଜକୁ ଏବେ ବି ଯୁବକ ବୋଲି ଭାବୁଥିଲା ଏବଂ ଆଉଥରେ ତାର ବିବାହ କରିବା ଉଚିତ୍ ବୋଲି ଧରିନେଇଥିଲା । ମାତ୍ର ସେ ଯେ ବୟସ୍କ ହୋଇ ଆସିଲାଣି -ତେଣୁ ସେ ବାହା ହେବା କଥା ଯଦି ଶୀଘ୍ର ହେବା ଉଚିତ୍ ।

ସାହେବ ଓ ମେମ୍‌ଙ୍କର ତା' ପ୍ରତି ଶ୍ରଦ୍ଧାନୁକମ୍ପା ଥିଲା । ତେଣୁ, ତା'ର ଦୁଃଖ ଶୋକ କଥା ଶୁଣି, ସେ ଛୁଟିନେବ କି ନାହିଁ ବୋଲି ତାକୁ ସେମାନେ ପଚାରିଲେ । ଘରକୁ ଗଲେ ଦୁଃଖ ଛଡ଼ା ସେଠି କିଛି ନାହିଁ । ଖ୍ରୀଷ୍ଟମାସ ଛୁଟି ପାଖେଇ ଆସୁଚି ଭାବି ସେ ଯିବ ନାହିଁ ବୋଲି ଉତ୍ତର ଦେଲା । ସେ ଆମେରିକାନ୍ ମିସନାରୀ ବି ତାର ଦୁଃସମ୍ବାଦ ଶୁଣି ତାକୁ ସମ୍ବେଦନା ଜଣାଇବାକୁ ତା'ର ବସାଘରକୁ ଆସିଲେ । ଭଗବାନ, ମୁକ୍ତି, ପରମପିତାଙ୍କ ପ୍ରେମ ଆଦି ଯାହା ଯେତେ ସେ କହିଲେ ବି କୃପାର ମନ କେଉଁଥିରେ ମାନିଲା ନାହିଁ ।

ବଡ଼ଦିନ ଛୁଟିରେ କୃପା ଘରକୁ ଗଲା । ସେଠାରେ ସମସ୍ତେ ଦୁଃଖୀ ଜଣାପଡୁଥିଲେ । ଏମିତିଭାବେ ଦୁଃଖରେ ଦୁଃଖରେ ଆଉ ବର୍ଷଟିଏ କଟିଗଲା ।

କଲେକ୍ଟର ସାହେବ ଟୁରରେ ବାହାରକୁ ଗଲାବେଳେ କୃପାକୁ ମଧ୍ୟ ନିଜ ସହିତ ନେଇଗଲେ । କୃପା ଜୀବନରେ ଏହା ଏକ ମଧୁର ଓ ନୂଆ ଅନୁଭୂତି ଥିଲା । ବର୍ଷର ପ୍ରଥମ ତିନିମାସ ସେମାନେ ଏମିତି ଟୁରରେ ଯାଉଥିଲେ ତ କିଛି ଦିନ ଘରେ ରହୁଥିଲେ । ଏମିତି ଚାଲିଥାଏ ।

ଏବେ କୃପା ନିଜ ଗାଁ, ପାଖ ଗାଁ ମାନଙ୍କ କଥା, ତା' ସ୍କୁଲବେଳର ଗାଁ, ଗାଁରୁ ବାଲେଶ୍ୱରକୁ ବାଟ, ବାଲେଶ୍ୱରର ଆଖପାଖ ଅଞ୍ଚଳକୁ ବାଟ ଇତ୍ୟାଦି ଜାଣିଗଲା । ଥରେ ସେ କଟକ ବି ଯାଇଥିଲା । ଏତିକି ଥିଲା ତାର ନିଜସ୍ୱ ପୃଥିବୀ । ବଙ୍ଗଳା

ସୀମାଯାଏ ଏବଂ ଗଡ଼ଜାତ ଅଞ୍ଚଳର ସୀମାଯାଏ ବିଭିନ୍ନ ସ୍ଥାନ ବୁଲିଲେ । ପ୍ରତ୍ୟେହ କୃପାସିନ୍ଧୁ କିଛି ନୂଆ ଜାଗା ଓ ନୂଆ ଲୋକଙ୍କ ସହିତ ମିଶିଲା । ଉପାନ୍ତ ଅଞ୍ଚଳ ଲୋକଙ୍କ ଭାଷାରେ ଓଡ଼ିଆ ଓ ବଙ୍ଗଳା ମିଶାମିଶି ରହିଥିଲା । ପାହାଡ଼ ଗଡ଼ଜାତର ବଣୁଆ ଲୋକମାନେ ସବୁବେଳେ ଧନୁ ଓ ତୀର ଧରି ବୁଲୁଥିଲେ । ଜଙ୍ଗଲ, ନଈ, ପୁରୁଣା ମସ୍‌ଜିଦ୍, ମନ୍ଦିର ଓ ଧନୀ ଜମିଦାରଙ୍କର ବଡ଼ବଡ଼ ପ୍ରାସାଦ ସବୁ ସେ ଦେଖିଲା । ନୂଆ ମୁହଁ, ନୂଆ ସାଙ୍ଗ ସାଥି ବିବିଧତା ଓ ପରିବର୍ତ୍ତନ ତାର ହୃଦୟକୁ ହାଲୁକା କରି ଦେଉଥିଲା ।

ସବୁଆଡ଼ର ଲୋକେ ତାକୁ ଆଦର କରୁଥିଲେ । ପିଲାମାନେ ତା ସହିତ ବନ୍ଧୁତା ଜମାଇ ଖୁସି ହେଉଥିଲେ । ଅନେକ ଆଡ଼େ ଗାଁର ଧନୀ ଲୋକମାନେ ମନୋରଞ୍ଜନ ପାଇଁ ମ୍ୟାଜିକ୍ ସୋ, ବାଣରୋଷଣୀ, ନାଚ, ସାପଖେଳ, ପୁଅମାନେ ଝିଅ ହୋଇ ନାଚ ଇତ୍ୟାଦି କାର୍ଯ୍ୟକ୍ରମ ମାନ ସାହେବଙ୍କ ଅଭ୍ୟର୍ଥନା ଲାଗି ପ୍ରସ୍ତୁତ କରୁଥିଲେ । ଏସବୁକୁ ସାହେବ ଧୈର୍ଯ୍ୟର ସହ ବସି ଦେଖୁଥିବା ବେଳେ, କୃପା ଖୁସିରେ ଉତ୍‌ଫୁଲ୍ଲ ହୋଇ ଉଠୁଥାଏ ।

ଏଭଳି ପରିବର୍ତ୍ତିତ ପରିସ୍ଥିତିରେ ତାର ମନ ଓ ମିଜାଜ ବେଶ୍ ସତେଜ ହୋଇ ଉଠୁଥାଏ । ଏ ପୃଥିବୀଟାକୁ ସେ ଏକ ନୂଆ ଉନ୍ମାଦନାର ସହ ଉପଭୋଗ କରିବାକୁ ଲାଗିଲା ।

ମାର୍ଚ୍ଚ ମାସରେ ଯେତେବେଳେ ଗରମ ପଡ଼ିବା ଆରମ୍ଭ କଲା, ଟୁର ଯିବା ପାଇଁ ତାକୁ ଅଶ୍ୱସ୍ତ ଲାଗିଲା । ସାହେବ ବି ବିରକ୍ତ ହେଲେ । ସେ ଆଉ ଟୁର୍ ନ ଯାଇ ବାଲେଶ୍ୱରରେ ଆରାମ କରିବାକୁ ଚାହିଁଲେ ।

କୃପାସିନ୍ଧୁ ପୁଣି ତାର ନିତିଦିନିଆ କିରାଣୀ ଜୀବନକୁ ଖୁସି ଖୁସି ଫେରିଆସିଲା ।

## ଏକାଦଶ ପରିଚ୍ଛେଦ

ସେଇ ବର୍ଷ ତୃତୀୟଥର ପାଇଁ କୃପାସିନ୍ଧୁ ପୁଣି ବାହା ହେଲା । ଡାଉରୀ ଯୌତୁକ ପାଇଁ ବେଶୀ ଆଗ୍ରହ ନ ଦେଖାଇ ଗୋଟାଏ ଗରୀବ ଘରର ଝିଅ ଦେଖି ବାହା ହେଲା । ଝିଅଟି ଯେପରି ବୟସ୍କା ଏବଂ ସ୍ୱାସ୍ଥ୍ୟବତୀ ହୋଇଥିବ, ସେଇ କଥାକୁ ଧ୍ୟାନ ଦେଇ ବୋହୂ ଖୋଜିଥିଲା । ପନ୍ଦରଦିନ ପାଇଁ ଛୁଟି ନେଇ ଗାଁକୁ ଗଲା ଯେପରିକି ହାତରେ ଦିନେ ଦି'ଦିନ ଛୁଟି ରହିବ ।

ଏପ୍ରକାର ବ୍ୟବସ୍ଥା କରିସାରିବା ବେଳକୁ ଦୟାନିଧିର ଚିଠିଟିଏ ପାଇଲା । କାଳେ ତାର ଭାଇ ବାହାଘର ଭାଙ୍ଗିବା କି କଥାବାର୍ତ୍ତାରେ କିଛି ଗୋଳମାଳିଆ ହେଇଥିବା କଥା ଲେଖିଥିବ, ଏଇ ଆଶଙ୍କା ନେଇ ସେ ଚିଠିଟି ଖୋଲିଲା । ମାତ୍ର ଚିଠିରେ ଖରାପ ଖବରଟି ଥିଲା ସତ, କିନ୍ତୁ ବା'ଘର କଥା ନେଇ ନୁହେଁ । ନିଶିବାଳା ପୁଣିଥରେ ସେ ଗର୍ଭବତୀ ହୋଇଥିବା କଥା ଲୁଚେଇଛି । ଏବେ ଗର୍ଭପାତ ପାଇଁ ବିଳମ୍ବ ହୋଇ ଯାଇଥିବାରୁ ସେମିତି କଲେ ବିପଦର ଆଶଙ୍କା ଅଛି ବୋଲି ଦୟାନିଧି ସେ ଚିଠିରେ ଲେଖିଥିଲା ।

ଏକଥା ଜାଣି କୃପାସିନ୍ଧୁ ପ୍ରଥମେ ବ୍ୟସ୍ତ ହୋଇ ପଡ଼ିଲା, ମାତ୍ର ରାଗି ଗଲା ନାହିଁ । ତାର ନିଜ ଉପରେ ଓ ନିଶିବାଳା ଉପରେ ଖୁବ୍ ଦୟା ଆସିଲା । ଗର୍ଭପାତ ପାଇଁ ଡେ଼ରି କରିଦେଇ ଥିବାରୁ ଝିଅ ଉପରେ ସେ ରାଗି ଉଠିଲା ନାହିଁ । ନିଜେ ତ ସେ ଜାଣିଛି ଯେ କିରାଣୀ ବା ଡେ଼ପୁଟୀଙ୍କ ଘରେ ବିଧବାଟିଏ ଥିଲେ ଏପରି ଘଟଣା ଚେବେ ନା କେବେ ଘଟିଥାଏ ।

ଏପରି ସମୟରେ ବାପାଙ୍କ କଥା ତାର ମନେ ପଡ଼ିଗଲା । ବାପା ବଂଚିଥିଲେ ତାକୁ କେତେ ସାନ୍ତ୍ୱନା ଉପଦେଶ ଦେଇ କଥା ପଦେ କହିଥାନ୍ତେ । ଏ କଥାକୁ ସେ ତାର ମେସ୍‌ବଂଧୁ ମାନଙ୍କୁ ମଧ ଲଜ୍ୟାରେ କହି ପାରିଲା ନାହିଁ । ତା ନିଜ ବୟସର କାହାକୁ ବି ଏକଥା କହିହେବନି । ଶେଷରେ ସେ ଭଗବାନବାବୁଙ୍କୁ ଏ ସବୁ ଜଣେଇ ତାଙ୍କ ଉପଦେଶ ମାଗିବ ସ୍ଥିର କଲା ।

'ଭଗବାନ ବାବୁ, ଆପଣଙ୍କ ଶ୍ରଦ୍ଧା ଓ ସଦିଚ୍ଛା ବିଷୟରେ ମୁଁ ସଦା ଅବଗତ । ତେଣୁ କାହାକୁ କହି ପାରି ନଥିବା କଥା ଆପଣଙ୍କୁ କହି ଉପଦେଶ ନେବାକୁ ମୁଁ ଆପଣଙ୍କ ପାଖକୁ ଆସିଛି ।'

'କଥାଟି କଣ ଖୋଲି କହିଲ' ଭଗବାନବାବୁ ତାକୁ ପଚରିଲେ । "ଯଦି ମୋର କ୍ଷୀଣ ସାଧ ଭିତରେ ଥିବ ତ ତମକୁ ସାହାଯ୍ୟ କରିପାରିବି ।"

'ମୋର ବାଳବିଧବା ଝିଅଟି ଏବେ ଗର୍ଭବତୀ ହୋଇଛି । କଣ କରିବି କହିଲେ ?'

'ତାର ବୟସ କେତେ ?'

'ଏଇ କୋଡିଏ ବର୍ଷ ପାଖାପାଖି ହେବ ।'

'ହୁଁ, ଏମିତି ତ ହୁଏ ।'

'ବଡ଼ ଅସୁନ୍ଦର କଥା ହେଲା ।'

"କୃପାବାବୁ ତୁମେ ଦି'ଟା ସ୍ତ୍ରୀଙ୍କୁ ହରେଇ ସାରିଚ୍ । ପିଲାଟିଏ ଥିଲ, ତୁମର ମା' ମରିଗଲେ । ଯେଉଁ ସ୍ତ୍ରୀର ଯୁବତୀ ବୟସରେ ସ୍ୱାମୀ ମରିଯାଏ, ସେମାନଙ୍କ କ୍ଷେତ୍ରରେ ଏପରି ତ ହୁଏ । ବିଧବା ମା'ମାନେ କେବଳ ବୃଦ୍ଧା ହେବାଯାଏ ନିଜର ସତୀତ୍ୱ ବଜାୟ ରଖିଥାନ୍ତି । ମାତ୍ର ବିବାହିତ ବିଧବାମାନେ ସନ୍ତାନ ଧାରଣ କରନ୍ତି । ତେଣୁ, ୧୮/୨୦ ବର୍ଷର ବାଲ୍ୟବିଧବା ମାନଙ୍କ ମନରେ ସଂଭୋଗର ଇଚ୍ଛା ବଳବତୀ ହୁଏ । ଏଇ ବୟସଟା ଏମିତି ଉଚ୍ଛୁଳ । ସଂସାରଟାକୁ ପଛରେ ପକାଇ ପ୍ରେମ ପଥରେ ନିର୍ଭୀକ ଭାବରେ ଦୌଡୁଥାନ୍ତି । ଦୁଇ ତିନିବର୍ଷ ଛୁଆକୁ କୋଳରେ ଧରିଲେ ସେ ସଂସାରର ନିନ୍ଦା, ପରିବାରର ନିନ୍ଦା ବିଷୟରେ ସଚେତନ ହୁଏ । ପ୍ରେମର ଏଇ ପରିଣତି ପାଇଁ ଭୟ ସେମାନଙ୍କୁ ସେ ପଥରୁ ବିଚ୍ୟୁତ କରାଏ ।"

'ଏଇଟା ଠିକ୍ କଥା ଯେ । ମୋ ଝିଅ ବିଧବା ହୋଇ ଦୀର୍ଘ ଦିନ ରହି ପାରିବ । ମାତ୍ର ଗୋଟାଏ ସଂସାର ଛଡ଼ା ଜୀବନଯାପନ କରିବ ଯେ !'

'ଏକଥା ପାଇଁ ବ୍ୟସ୍ତ କାହିଁକି ହେଉଛ ? ଇଏତ ଗୋଟାଏ ସାଧାରଣ ଘଟଣା । ଏ ବିଷୟରେ କେହି ବିଶେଷ ଜୋର ଦିଅନ୍ତି ନାହିଁ ।'

ଭଗବାନବାବୁଙ୍କ କଥାରେ କୃପାସିନ୍ଧୁ ଟିକେ ଆଶ୍ୱସ୍ତ ହେଲା । ତାପରେ କଣ କରିବା ଉଚିତ ହେବ ବୋଲି ତାଙ୍କୁ ପଚାରିଲା ।

'ପଡ଼ିଶାଙ୍କୁ ମାରଗୁଲି । ଝିଅଟି ପାଇଁ ଗୋଟାଏ ଘର ଠିକ୍ କରି ଦିଅ ଯେଉଁଠି ସେ ସୁସ୍ଥରେ ରହିବ । ତା ପିଲାର ଯତ୍ନ ନେବ । ପିଲାଟା ଚାରିପାଞ୍ଚ ବର୍ଷର ହୋଇଗଲା ପରେ ନିଜ ଜାତିଭାଇଙ୍କୁ ଡାକି ସଭାଟିଏ କରିବ ଏବଂ ଝିଅକୁ ଜାତି କରାଇବ । ସେମାନେ ତୁମକୁ ସମ୍ମାନ ଦେଉଥିବାରୁ, ତୁମର କିଛି ଅସୁବିଧା କରିବେ ନାହିଁ ।'

ଭଗବାନବାବୁଙ୍କ ଉପଦେଶ କଥା କୃପା ଚିଠି ଲେଖି ଦୟାନିଧିକୁ ଜଣେଇଲା । ପରେ ଝିଅର ଛୁଆଟିଏ ହେବାର ଖବର ପାଇଲା ।

ଉପଯୁକ୍ତ ସମୟରେ କୃପାସିନ୍ଧୁ ଭାରାକ୍ରାନ୍ତ ମନ ଦେଇ ଘରକୁ ଗଲା । ମନେମନେ ସ୍ଥିର କରି ଗଲା ଯେ ଝିଅକୁ ଛୁଆର ବାପ କିଏ ବୋଲି ପଚାରିବ । ବାପାଙ୍କୁ ଦେଖି ନିଶିବାଳା ପୁଅକୁ ଧରି ମୁଣ୍ଡ ନୁଆଁଇ ଠିଆ ହେଲା । କୃପା ପିଲାଟିର ମୁହଁଟିରୁ ଲୁଗାକାଢ଼ି ତାକୁ ଦେଖାଇବାକୁ କହିଲା ଏବଂ ନିଜ ବାହୁରେ ତାକୁ ଧରିଲା । ଛୁଆଟାକୁ କୋଳରେ ଧରି ସେ ଅନୁଭବ କଲା ଯେ ଜାରଜ ହେଲେ ବି ପିଲାଟି ପ୍ରତି ଓ ନିଶିବାଳା ପ୍ରତି ତାର ଶ୍ରଦ୍ଧା ଅତୁଟ ରହିଚି । ତାପରେ ସେ ମନ୍ତବ୍ୟ ଦେଇ କହିଲା ଯେ ପିଲାଟା ଠିକ୍ ତାର ମା ପରି ହୋଇଛି ।

ନିଶିବାଳା ବାପା ହାତରୁ ପିଲାଟିକୁ ନେଇ ବିଛଣାରେ ଶୁଆଇ ପକାଇଲା ଏବଂ ବାପାଙ୍କୁ ଭୂମିଷ୍ଠ ପ୍ରଣାମ କଲା । ତାପରେ ସେ ବାପାଙ୍କ କାନ୍ଧରେ ମୁଣ୍ଡ ରଖି ସେ କାନ୍ଦିଲା । ଏତିକି ବେଳେ ପିଲାଟି କାନ୍ଦି ଉଠିବାରୁ ନିଶିବାଳା ତା ପାଖକୁ ଦୌଡ଼ିଗଲା । କୃପା ଧୀରେ ଧୀରେ ସେ ଘରୁ ଅପସରି ଗଲା ।

ନିଶିବାଳା ବିଷୟରେ ଅଧିକ ଖୋଳତାଡ଼ କରି ତାକୁ ଅପମାନ ଓ ଦୁଃଖ ନ ଦେବାକୁ କୃପା ନିଜ ଭାଇମାନଙ୍କୁ ଅନୁରୋଧ କଲା । ବରଂ ତାର ଯାହା ଦରକାର, ପିଲା ଓ ମା'ର ସ୍ୱାସ୍ଥ୍ୟ ନିମନ୍ତେ ସବୁ କିଛି ସେମାନଙ୍କୁ ଯୋଗାଇ ଦେବାକୁ କହିଲା । ସେମାନେ ବି ଭଗବାନ ବାବୁଙ୍କ ପରି କୃପାକୁ ସାନ୍ତ୍ୱନା ଦେଇ ଏମିତି ଘଟେ ବୋଲି ମନ୍ତବ୍ୟ ଦେଲେ । ଏସବୁ କିଛି ନୂଆକଥା ନୁହେଁ । ତେଣୁ ସେ ବିଷୟରେ ଅଧିକ ଚର୍ଚ୍ଚା ଅନୁଚିତ ହେବ । ତେଣୁ କୃପା ମନେମନେ ଆଶ୍ୱସ୍ତ ହୋଇ ନିଜର ବିବାହ ବିଷୟରେ ତତ୍‌ପରତା ପ୍ରକାଶ କଲା ।

ତହିଁ ପରଦିନଟା ସାରା ସେ ନିଶିବାଳା ପାଖରେ ରହି ତାକୁ ସାନ୍ତ୍ୱନା ଦେଲା । ନିଶିବାଳା ନିଶ୍ଚିତ ହୋଇଗଲା ଯେ ତାର ବାପା ତା ପ୍ରତି କି ପିଲାଟା ପ୍ରତି କିଛି ଅସୂୟାଭାବ ରଖି ନାହାନ୍ତି ।

ପରଦିନ ସେ ନିଜପାଇଁ କନ୍ୟା ଦେଖିବାକୁ ଗଲା । ନୂଆ ସ୍ତ୍ରୀକୁ ଦେଖି ସେ ଅତ୍ୟଧିକ ଆନନ୍ଦିତ ହୋଇଗଲା । ଝିଅଟି ସ୍ୱାସ୍ଥ୍ୟବନ୍ତୀ ସୁନ୍ଦରୀ ଓ ଗୋଲଗାଲ ଚେହେରାର ଏବଂ ଶାନ୍ତ ସୁଧୀର ସ୍ୱଭାବର ଥିଲା । ବୋହୂ କରି ଘରକୁ ଆଣିବା ପରେ ସେ ତାକୁ ଖୁବ୍ ଭଲପାଇଲା । ଗରୀବଘରର ଝିଅ ହୋଇଥିବାରୁ ତାର ସେ ତୃତୀୟ ପତ୍ନୀ ଘରର ଯାବତୀୟ କାମ ସୁଚାରୁ ରୂପେ ନିଃସଂକୋଚରେ କରୁଥିଲା । ଗର୍ବ ଅହଂକାର ନ କରି ଚାକର ବାକର ଉପରେ କୌଣସି କଥାରେ ନିର୍ଭର କରୁ ନଥିଲା । ରନ୍ଧାରନ୍ଧିରେ ବିଚକ୍ଷଣ ତାର ସ୍ତ୍ରୀ ସବୁବେଳେ ଶାନ୍ତ କାନ୍ତ ଓ କୋମଳ ଭାବେ ଅକୁଣ୍ଠ କାମ କରି ଚାଲିଥିଲା ।

ସେଭଳି ଶାନ୍ତକାନ୍ତ ଝିଅର ଏକାନ୍ତପଣିଆ ହାରି ଦେବା ପାଇଁ ସେ ତା ପାଖେ ପାଖେ ବସି ରହୁଥିଲା ।

ଛୁଟି ପରେ ଏଇ ଝିଅଟିକୁ ଛାଡ଼ି ଚାକିରୀ ଜାଗାକୁ ଯିବା ପାଇଁ କୃପାକୁ ଖୁବ୍ କଷ୍ଟ ହେଲା । ବାଲେଶ୍ୱରକୁ ଫେରିବାବେଳେ ରାସ୍ତାସାରା ସେ ତା'ରି କଥା ହିଁ ଭାବି ଲାଗିଥିଲା । ଶେଷରେ ମଧ ସଂଧାବେଳେ ସାଙ୍ଗମାନଙ୍କର ସବୁ କଥାରେ ହୁଁ ହୁଁ କରୁଥିଲା ଅଥଚ ମନଟା ତାର ଖୁବ୍ ଉଦାସ ଥିଲା । ପରଦିନ କଲେକ୍ଟର ସାହେବଙ୍କର

ସେଇ ଛୋଟ ଘରଟି କୋଣରେ ତା ଟେବୁଲ ପାଖରେ ବସି ସେ କେବଳ ଏଇ ନୂଆ ସ୍ତ୍ରୀଟି କଥା ଭାବୁଥିଲା । ସାଇବଙ୍କର ଚିଠିର ସର୍ଟହେଣ୍ଡ ଲେଖିବା ଛଡ଼ା ତ ଆଉ କିଛି କାମ ସେଠି ତାର ନ ଥିଲା । ତେଣୁ ଖଣ୍ଡେ ଇଂରାଜୀ ବହିଧରି ପଢ଼ିବା ବାହାନାରେ ସେ ତାର ସ୍ତ୍ରୀ ଘରୁବାଳା କଥା ହିଁ ଭାବୁଥିଲା ।

ଯେତେ ବେଶୀ ବେଶୀ ସେ ଘରୁବାଳା କଥା ଭାବୁଥିଲା ସେତେବେଶୀ ସେ ପ୍ରେମାସକ୍ତ ହୋଇ ଉଠୁଥିଲା । ଏମିତି ପ୍ରେମରେ ସେ କେବେ ପଡ଼ି ନଥିଲା । କାରଣ, ପ୍ରଥମ ସ୍ତ୍ରୀକୁ ସେ  ଚପଳ ହୃଦୟରେ ଭଲ ପାଇଥିଲା , ଦ୍ୱିତୀୟଟି ପ୍ରତି ସମ୍ମାନବୋଧ ବେଶୀ ଥିଲା ମାତ୍ର ଘରୁବାଳା ପ୍ରତି ଥିବା ପ୍ରେମରେ ଗର୍ବ ବା ଦୈହିକ ଆସକ୍ତି ଅପେକ୍ଷା ପ୍ରକୃତ ପ୍ରେମମୟତା ହିଁ ଥିଲା । ସେ ଭାବୁଥାଏ ଘରୁବାଳା କିପରି ତାର ମୁହଁରୁ କଥା ବାହାରୁ ନବାହାରୁଣୁ ତତ୍ପରତା ସହ ସବୁ କିଛି କରିଦିଏ । ଯେତେ କଷ୍ଟକର ହେଲେ ବି ଘରୁବାଳା ସେ କାମଟିକୁ ଆନନ୍ଦର ସହ କରିପାରିବ । ତା ବିନା ସେ କଦାପି ସୁଖୀ ହୋଇ ପାରିବ ନାହିଁ ବୋଲି କୃପାର ମନେ ହେଲା । ସେଦିନ ମେସ୍‌କୁ ଫେରିବା ପରେ ଏସବୁ କଥା ସେ ସାଙ୍ଗମାନଙ୍କ ଆଗରେ ଗପିଲା । ମେସ୍ ବାରଣ୍ଡାରେ ବସି ସାମୁଦ୍ରିକ ସଂଧ୍ୟା ହାଓ୍ୱା ସେବନ କରୁକରୁ ସେ ସାଙ୍ଗମାନଙ୍କୁ କହିଲା,"ଭାଇମାନେ, ମୁଁ ଭାବୁଛି, ଏବେ ତୁମମାନଙ୍କୁ ଛାଡ଼ି ଚାଲିଯିବି ।"

ବ୍ରଜାନନ୍ଦ ତାକୁ ଆଖି ତରାଟି ଚାହିଁରହିଲା ଓ କହିଲା, 'ସେମିତି କଥା କହନା କୃପା । ତୁ ବହୁତ ଗୁଡ଼ାଏ ଭାବି ହେଉଛୁ । ଏମିତି ତ ହୁଏ ।'

'ତୁମ୍ଭେମାନେ ସେସବୁ କିଛି ବୁଝି ପାରିବ ନାହିଁ । ମୋ ପାଇଁ ଆଉ ଏକ ଅଲଗା ବସାଘର ଦେଖିବାକୁ ପଡ଼ିବ ।'

- 'ଆମେ ଜାଣିଛୁ, ତୁ ବେଶୀ ଦରମା ପାଉଛୁ -ଉପୁରିବି ଢ଼େର ଅଛି । ଆମ କଥା ଟିକେ ଭାବିଲୁ ।' ବ୍ରଜାନନ୍ଦ ବୁଝାଇଲା ତାକୁ ।

'ହଁ, ତମ ଦି'ଜଣକୁ ଭାଗକରି ବସାର ଭଡ଼ାଟି ଦେବାକୁ ପଡ଼ିବ, ମୁଁ ଏଠୁ ଛାଡ଼ି ଗଲା ପରେ ।'

'ଏଇଟା ଏତେ ସହଜ କଥା ନୁହେଁ ।' ଚୁପ୍‌ଚାପ୍ ପ୍ରକୃତିର ଅନ୍ୟ ମେସ୍ ବଂଧୁଟି ଉତ୍ତର ଦେଲା ।

'ଆଛା, ଆମେ ଯେବେ ଏ ଲଜିଙ୍ଗ ନେଇଥିଲୁ -ତୋଠୁଁ ମୁଁ ବେଶୀ ଦରମା ପାଉଥିଲି । ତେଣୁ ସବୁ ଚଳିଯାଉଥିଲା ।' ବ୍ରଜାନନ୍ଦ କହିଲା । ଅନ୍ୟ ଜଣକ କହିଲା, 'କୃପା ଯାହା କହୁଚି ତା ବି ଠିକ୍ ।'

'ମୁଁ ସେୟା ଭାବୁଚି । ଏକଥା ମୁଁ ବହୁ ଆଗରୁ ଭାବିଥିଲି ।'

'ତୁ ଏବେ ଯେତେ ଧନୀ ହୋଇ ଗଲୁଣୀ, ବଢ଼ିଆ ଘରଟିଏ ନେଇ ବା ଗଢ଼ି ତୁ ରହି ପାରିବୁ ।'

'ହଁ ଅବସର ପରେ ବଡ଼ ଘରଟିଏ ତୋଳିବାକୁ ଯୋଜନା କରିଛି । ଏବେ ନୁହେଁ ।'

'ଏଠୁ ଯାଇ ପୁଣି କେଉଁଠି ରହିବୁ ଯେ ।'

'ସେକଥା ଚିନ୍ତା କରିନି । ଖୋଜିବାକୁ ପଡ଼ିବ ।'

'ତୁ କଣ ସବୁ କହୁଚୁ ଆମେ କିଛି ବୁଝିପାରୁନାହିଁ ।'

'ଗୋଟାଏ ଛୋଟ ଘରଟେ ଅଲଗା ରହିବା ପାଇଁ ନେବାକୁ ହେବ ତ ।'

'ସେଠି ଯାଇ ଏକା ରହିବୁ ?'

'ନା, ନା , । ମୋ ସ୍ତ୍ରୀ ସହ ସେଠି ରହିବି ।'

'ଓହୋ, ଏଇକଥା ତେବେ ?'

'ହଁ, ତୁମେମାନେ ତ ଜାଣିଛ । ମୁଁ ଆଉଥରେ ବାହା ହେଇଛି ।'

'ଆଚ୍ଛା, ଆଚ୍ଛା.. ଏଇ କଥା ! ତୋ କଥା ନିଶ୍ଚୟ ଭଲ କରି ବୁଝି ଦେବୁ ତେବେ । ହେଲେ, ପ୍ରାୟ ସବୁ କିରାଣୀ ସେମାନଙ୍କ ସ୍ୱାମୀମାନଙ୍କୁ ଘରେ ଛାଡ଼ିଆସିଛନ୍ତି । କାରଣ ସେମାନେ କସ୍ମିନକାଳେ ଚାହାନ୍ତି ନାହିଁ ସେମାନଙ୍କ ସ୍ୱାମୀମାନେ ସେମାନଙ୍କର ଏଠାକାର କାର୍ଯ୍ୟକଳାପ ସବୁ ଜାଣନ୍ତୁ । ଜାଣିଲେ, ସେମାନଙ୍କୁ ଗାଳି ଖାଇବାକୁ ପଡ଼ିବ । ନତୁବା ସେଇ ସ୍ୱାମୀମାନେ ଅନ୍ୟମାନଙ୍କ ସହ ଲଟର ପଟର ହେବାର ଭୟ ବି ରହିଛି । ଏହେତୁରୁ, ତୋ ସ୍ତ୍ରୀକୁ ନେଇ ତୁ କଣ କରିବୁ, ଭଲଭାବରେ ଭାବିନେ । ତୁ ଏଠୁ ଗଲେ ଆମକୁ ଦୁଃଖ ଲାଗିବତ ନିଶ୍ଚୟ । ତୁ ବି ଆମମାନଙ୍କ କଥା ତୋର ସେ ବଡ଼ଘରେ ରହି ଭାବିବୁନି ।'

ଏଇପରି ଅନେକ କଥା କୃପାସିନ୍ଧୁକୁ ଟେକାଟେକି କରି ବ୍ରଜାନନ୍ଦ କହିଲା । ସେ ଭାବୁଥିଲା ଯେ ବନ୍ଧୁମାନଙ୍କ ସହ ସମ୍ପର୍କ ଯୋଡ଼ି ରଖିବା ସବୁବେଳେ ଲାଭ ଦାୟକ । କୃପା ଆଉ ଗୋଟେ ଅଲଗା ଘର ନେବାମାନେ, ତାର ଧନସମ୍ପତି ବହୁତ ହୋଇ ଗଲାଣି ।

କିନ୍ତୁ ଅନ୍ୟ ବଂଧୁଟି କହିଲା, 'ତୁ ତୋର ଖୁସିରେ ଥା । ଆମେ ସବୁ ତୋତେ ଖାଲି ଝୁରିହେବୁ ସିନା ।'

ସହର ତଳିରେ କୃପା ଗୋଟାଏ ଘର ଖୋଜି ପାଇଲା । ଘରଟାରୁ କଲେକ୍ଟର

କୋଠିକୁ କମ୍ ଦୂରବାଟ ଥିଲା । କଚ୍ଚା କାନ୍ଥର ଚାଳଛପର ଘରଟିଏ ସେ ପାଇଲା । ଠିକ୍ ତା ଗାଁର ଘରପରି ହେଲେ ତାଠୁଁ ଛୋଟ ।

ଘର ଭିତରକୁ ବୈଠକଟିଏ । ତା ପାଖରେ ଚାରିଟା କୋଠରୀ । ଗୋଟାଏ ଯିବା ଆସିବା ବାଟ ଘର । ରୋଷେଇ ଘର । ଚାକରାଣୀ ଘର ଏବଂ ଗୁହାଳଟିଏ । କଲେକ୍ଟର ସାହେବଙ୍କ ପିଏ ବୋଲି କୃପାସିନ୍ଧୁକୁ ଜାଣିବା ପରେ, ଘରବାଲା ତାକୁ ବେଶ୍ କମ ଘରଭଡ଼ା ଦାବି କଲା । ଗୋଟାଏ ବୁଢ଼ୀ ସ୍ତ୍ରୀଲୋକକୁ ସେ ଘରକାମ କରିବାକୁ ଧରିଲା । ଗାଈଟିଏ ରଖି ତାର ଦୁଧଦୁହାଁ ଓ ଦେଖାରଖା କରିବାକୁ ପିଲାଟିଏ ରଖିଲା । କାରଣ ଏସବୁ ଘରର ସ୍ତ୍ରୀ ଦେଇ କରିହେବନି ।

ସେଇ ଘରଟିରେ କୃପା ଓ ତାର ନୂଆ ସ୍ତ୍ରୀ ଖୁବ୍ ଖୁସିରେ ରହିବାକୁ ଲାଗିଲେ । ଚାରୁବାଳା ସ୍ୱାସ୍ଥ୍ୟବତୀ, ଶାନ୍ତସ୍ନିଗ୍ଧା ଓ ସବୁବେଳେ ତାର ହସହସ ମୁହଁ । ନିତିନିତି ନୂଆ ରାନ୍ଧଣା ରାନ୍ଧି କୃପାର ମନ ମୋହିନେଉଥିଲା । ଭଲ ଖାଦ୍ୟ ଓ ସେବା ପାଇ କୃପା ମୋଟେଇ ଉଠିବାକୁ ଲାଗିଲାରୁ ଲୋକେ ଭାବିଲେ ଯେ ସେ ବହୁତ ପଇସା ଜମେଇଲାଣି । ବୋଧହୁଏ ସେ ଯେତେଯେତେ ମୋଟେଇଲା ଲୋକେ ତାକୁ ସେତେସେତେ ସମ୍ମାନ ଦେଖାଇବାକୁ ଲାଗିଲେ ।

## ଦ୍ୱାଦଶ ପରିଚ୍ଛେଦ

ଜୁନ୍ ଶେଷ ବେଳକୁ ଓଡ଼ିଶାର କମିଶନର ଏବଂ କଲେକ୍ଟରମାନଙ୍କର ଏକ ସମ୍ମିଳନୀ କଟକରେ ଆୟୋଜିତ ହେଲା । ବାଲେଶ୍ୱରର କଲେକ୍ଟର କୃପାସିନ୍ଧୁକୁ ନେଇ ସେ ସମ୍ମିଳନୀକୁ ଗଲେ । କୃପାସିନ୍ଧୁର ଧାରଣା ଥିଲା ଯେ, କଟକ ଓଡ଼ିଶାର ରାଜଧାନୀ । ତେଣୁ ନଅର ଭଳି ବଡ଼ ବଡ଼ ପ୍ରାସାଦ ସେଠାରେ ଥିବ । ରେଳଷ୍ଟେସନରୁ ଘୋଡ଼ା ଗାଡ଼ିରେ କଟକ କଲେକ୍ଟରଙ୍କ କ୍ୱାଟରକୁ ଯିବାବେଳେ ସେ ଦେଖିଲା ଯେ କଟକ ବି ବାଲେଶ୍ୱର ଭଳି କେତେ ଗୁଡ଼ାଏ ଗାଁର ସମାହାର ।

କିନ୍ତୁ ସେଠାରେ କଲେକ୍ଟରଙ୍କର ଦ୍ୱିତଳ ପ୍ରାସାଦର କ୍ୱାର୍ଟସ ଦେଖି ସେ ବିମୋହିତ ହୋଇ ପଡ଼ିଲା । ବାଲେଶ୍ୱର କଲେକ୍ଟରଙ୍କର ଭଙ୍ଗାଦଦରା କ୍ୱାର୍ଟସଠାରୁ ସେଇଟା ଯଥେଷ୍ଟ ଭିନ୍ନ ଥିଲା । ବାଂଲୋଟି ଗୋଟାଏ ବିରାଟ ହତା ଭିତରେ ଠିଆ ହୋଇଥିଲା । ଗେଟ୍ ଠାରୁ ବାଂଗଲୋ ଯାଏ ଗୋଟାଏ ପ୍ରଶସ୍ତ ରାସ୍ତା ଲମ୍ୱିଯାଇ ଥିଲା । ହତା

ଭିତରେ ଆମ୍ବ ବଗିଚାରେ ଅନେକ ପୁରୁଣା ବଡ଼ ବଡ଼ ଗଛ ଥିଲା । ସେପରି ବଡ଼ ଗଛ କୃପା ଆଗରୁ ଦେଖି ନ ଥିଲା ।

ସେଠାରେ ପହଞ୍ଚି ଜଳଖିଆ ଖାଇ କିଛି ସମୟ ବିଶ୍ରାମ କରିବା ପରେ ଗୋଟାଏ ଭଡ଼ାଗାଡ଼ିରେ ସେମାନେ କମିଶନରଙ୍କ ସାକ୍ଷାତ ପାଇଁ ବାହାରି ପଡ଼ିଲେ । କୃପା ବି ଗାଡ଼ି ଭିତରେ କଲେକ୍ଟରଙ୍କ ସାଙ୍ଗରେ ବସିଲା ଡ୍ରାଇଭର ସିଟ୍ ପାଖରେ । ତାପରେ ସେମାନେ କ୍ୟାଣ୍ଟନମେଣ୍ଟ ରୋଡ଼ ଆଡ଼େ ଗଲେ । ସେମିତି ସ୍ଥାନ କୃପା ଆଗରୁ କେବେ ଦେଖି ନଥିଲା । ତାହା ଗୋଟାଏ ସିଧା ରାସ୍ତା । ଦୁଇପାଖରେ ବିରାଟ ବଙ୍ଗଳା। ବଙ୍ଗଳାଗୁଡ଼ିକର ନିଜ ନିଜ ହତା ଓ ପାଚେରୀ ଥିଲା । ଏବେ ତ ଆଉ ସୈନ ଛାଉଣୀ କଟକରେ ନାହିଁ । ଖୁବ୍ ଅଳ୍ପ ସଂଖ୍ୟକ ସାହେବ ମଧ ଅଛନ୍ତି । ତେଣୁ ବଙ୍ଗଳା ଗୁଡ଼ିକ ପ୍ରାୟ ଫାଙ୍କା । କେତେକ ଘର ଭାଙ୍ଗିରୁଜି ଗଲାଣି । ଆଉ କେତେକ ବଙ୍ଗଳାକୁ ଜମିଦାର ଓ ବାବୁମାନେ ମାଡ଼ିବସିଛନ୍ତି । ସବୁ ଘରଗୁଡ଼ିକ ପୁରୁଣା ଢ଼ାଞ୍ଚାରେ ମାଟି ଇଟାରେ ତିଆରି ଏବଂ ନୁଆଣିଆ ଛାତ ସଂଯୁକ୍ତ । ଗଛଗୁଡ଼ିକ ସୁନ୍ଦର ଏବଂ ବଗିଚାମାନ ଅତି ମନୋହର ଦେଖାଯାଉଥାଏ ।

କ୍ୟାଣ୍ଟନମେଣ୍ଟ ରାସ୍ତାଟି ସିଧା ଯାଇ ପୁରୁଣା ଗଡ଼ଖାଇକୁ ଛୁଇଁଥିଲା । ଗୋଟିଏ ପୁରୁଣା ପୋଲରେ ଗଡ଼ଖାଇ ପାରହୋଇ, ପୁରୁଣା ଗେଟ୍ ଟପି ସର୍କିଟ ହାଉସ ପାଖରେ ଲାଗିଥିଲା । ସର୍କିଟ ହାଉସ୍ ଭିତରେ ସାହେବ ତାଙ୍କର କେତେଜଣ ବନ୍ଧୁଙ୍କୁ ସାକ୍ଷାତ କରିବା ନିମନ୍ତେ ଯାଇଥିବା ବେଳେ କୃପାସିନ୍ଧୁ ବାହାରେ ସବୁଆଡ଼େ ଘୁରିଘେରି ଦେଖିଲା । ଗଡ଼ଖାଇ ଭିତରେ ବିରାଟ ଗୋଟାଏ ଚାରିକୋଣିଆ ପଡ଼ିଆ ଥିଲା । ଏହା ଭିତରେ ସର୍କିଟ ହାଉସ, କ୍ଲବ ଘର ଏବଂ ଗୀର୍ଜାଟିଏ ଥିଲା ଯାହା ଦୁର୍ଗର କାମ କରୁଥିଲା । ସେଇ ବିରାଟ ଦୁର୍ଗ ଯେଉଁଟା ଆଗେ ଉତ୍କଳ ରାଜାଙ୍କର ନଅର ଥିଲା । ଏବେ ଆଉ କିଛି ସେଠାରେ ନ ଥିଲା । ଏବେ ସେଠାରେ ଗୋଟାଏ ପୁରୁଣା ପୋଲ, ଭଙ୍ଗାରୁଜା ପଥର ଗଦା ଏବଂ ଦୁର୍ଗର ପଥର ଗଦାଟି ହିଁ ମୂକ ସାକ୍ଷୀଟିଏ ପରି ରହିଛି । ଏଇ ଚାରିକୋଣିଆ ଗୋଲ୍ଫପଡ଼ିଆଟି ସୁନ୍ଦର ସୁନ୍ଦର ଗଛରେ ପରିପୂର୍ଣ୍ଣ ହୋଇ ରହିଛି । କୃପାସିନ୍ଧୁର ମନେ ହେଲା ଜାଗାଟି ସତେ ଯେମିତି ପୃଥିବୀର ସବୁଠାରୁ ସୁନ୍ଦର ରମଣୀୟ ସ୍ଥାନ ।

ଅନ୍ୟ ସାହେବମାନଙ୍କ ସହ ସାକ୍ଷାତ ଆଳାପ ସରିବା ପରେ ସାହେବ କୃପାସିନ୍ଧୁ ସହିତ ଗାଡ଼ିରେ ବସି ଡାହାଣ ରାସ୍ତାରେ ଏକ ଚମଡ଼ା କାରଖାନା ପାଖ ଦେଇ ସେମାନେ ଆସିଲେ । ସେ କାରଖାନାରେ କୁମ୍ଭୀର ଓ ଝିଟିପିଟିମାନଙ୍କ ଚମଡ଼ାକୁ ପ୍ରୋସେସିଂ କରି

ଲଣ୍ଡନ ଓ ପ୍ୟାରିସ ପ୍ରଭୃତି ସ୍ଥାନକୁ ପଠାଇ ଦିଆଯାଉଥିଲା ସ୍ତ୍ରୀଲୋକମାନଙ୍କର ଜୋତା ତିଆରି ହେବା ଲାଗି ।

କ୍ୟାଣ୍ଟନମେଣ୍ଟ କ୍ୟାଥଲିକ୍ ଚର୍ଚ୍ଚ ପାଖ ସହରର ପ୍ରମୁଖ ରାସ୍ତା ଦେଇ ଆସି ସେମାନେ କମିଶନରଙ୍କ ବସାରେ ପହଞ୍ଚିଲେ । ସେଠାରେ ସେ ସୁନ୍ଦର ସୁନ୍ଦର ଘର ଓ ସୁନ୍ଦର ମୂର୍ତ୍ତିଯୁକ୍ତ ସ୍ତମ୍ଭ ସବୁ ଦେଖି କୃପା କଲିକତାରେ ଦେଖିଥିବା ସୁନ୍ଦର ଘରମାନଙ୍କ କଥା ମନେପକାଇଲା । କମିଶନରଙ୍କ ହତାଟି କଲିକତାର ରିଚ୍‌ମଣ୍ଡ ପାର୍କ ହତା ପରି ଖୁବ୍ ସୁନ୍ଦର ଥିଲା । ଦଳେ ପାଳିତ ହରିଣ ସେଠାରେ ଚରୁଥିଲେ । କାଠଯୋଡ଼ି ନଦୀର ଉଚ୍ଚ ବନ୍ଧ ଉପରେ ତିଆରି ପାଚେରୀ ଉପରେ ଲାଲ ପଥରର ତିଆରି ହୋଇଥିଲା ସେ କୋଠୀଟି । ତାର ତଳ ସ୍ତର ସବୁ ମହାନଦୀ ଧୋଇ ନେଇଯାଇଛି ।

କମିଶନରଙ୍କ ଘରୁ କାର୍ଯ୍ୟ ସମାପ୍ତି ପରେ ମାରୁଆଡ଼ି ଲୁଗା ବ୍ୟବସାୟୀ ମାନଙ୍କ ରାସ୍ତା ଦେଇ ସେମାନେ ବାହାରିଲେ । ବାଲେଶ୍ୱର ସହରର ସଂକୀର୍ଣ୍ଣ ରାସ୍ତାମାନଙ୍କ ପରି ସେ ରାସ୍ତାଗୁଡ଼ିକ ଜଣା ପଡୁଥିଲା । ତାପରେ କଦମରସୁଲ ବାଟ ଦେଇ ସେମାନେ ଗଲେ । ମଣିଷର ପାଦ ଚିହ୍ନ ପରି ପଥରର ପାଦ ଚିହ୍ନ ସେଠାରେ ଥିବାରୁ ତାହା ମହମଦ୍‌ଙ୍କ ପାଦ ଚିହ୍ନ ବୋଲି କୁହାଯାଏ । ତେଣୁ ଜାଗାଟିର ନାଁ କଦମରସୁଲ । ସେବାଟ ଦେଇ ସେମାନେ ପୁଣି କ୍ୟାଣ୍ଟନମେଣ୍ଟ ଫେରିଲେ ।

କଲେକ୍ଟରଙ୍କ ଘରେ ପହଞ୍ଚିବା ପରେ ସାହେବ କୃପାକୁ କହିଲେ ଯେ ଉପରବେଳା ତା'ର ଆଉ ଆସିବା ଦରକାର ନାହିଁ । କୃପାକୁ ସୁଯୋଗ ମିଳିଗଲା । ସେ ଉତ୍ତର ଦିଗ ବାଟେ ଯାଇ ହତା କଡ଼େ କଡ଼େ ପାଚେ଼ରୀ ଚଢ଼ି ତଳକୁ ଚାହିଁ ଦେଖେ ଯେ ତଳେ ମହାନଦୀ ବନ୍ଧ ଦିଶୁଥିଲା । ମହାନଦୀର ବନ୍ୟା ରୋକିବା ପାଇଁ ବନ୍ଧଟି ତିଆରି ହୋଇଥିଲା । କୃପା ନଦୀରେ ଗାଧୋଇ ଲଜିଂକୁ ଫେରି ରାତ୍ରି ଭୋଜନ ଖାଇ ଶୋଇ ପଡ଼ିଲା ।

ସକାଳୁ ଉଠି, ନଦୀବନ୍ଧ କୂଳେ କୂଳେ ଯାଇ ସେ ଯୋବ୍ରାର ନୌକା କାରଖାନା ପାଖରେ ପହଞ୍ଚିଲା । ସେଠାରେ ନୌକା ତିଆରି ଓ ତାର ମରାମତି କିପରି ହୁଏ ତାହା ଦେଖିଲା । ନଈକୂଳର କର୍ଦ୍ଦମାକ୍ତ ବାଟ ଦେଇ ସେ ଡଙ୍ଗା, ଜଲବୋଟ, ହାଉସବୋଟ୍, ମାଛଧରା ଡଙ୍ଗା ଏବଂ ଲଞ୍ଚ ଇତ୍ୟାଦି ଦେଖିଲା । ବିଭିନ୍ନ ପ୍ରକାର ଗାଉଁଲି ଛୋଟ ଡଙ୍ଗା ବି ସେଠାରେ ଦେଖିଲା । ବଡ଼ ବଡ଼ ବୋଟ ଗୁଡ଼ିକ ନଦୀର ଉପର ପଟ ଓ କେନାଲ ଭିତରେ ଯାତାୟତ କରୁଥିଲା । ସେଇ ବୋଟ୍‌ଗୁଡ଼ିକର ବାହାର ପାଖରେ କଳା ରଙ୍ଗ । କୁଆର ବେଳେ ପବନ ଓ କୁଆର ଢ଼େଉ ସହ ତାଳଦେଇ ପାଣି ସିଆର କାଟି

ଡଙ୍ଗାଗୁଡ଼ିକ ଆଗକୁ ଯାଉଥିଲେ ।

କୃପାସିନ୍ଧୁ ବିଶେଷ କରି କେତେଗୁଡ଼ିଏ ବିରାଟ ଯାତ୍ରୀବୋଟ ସେଠାରେ ଦେଖିଲା । ସେଗୁଡ଼ାକରେ ବସି ସାହେବମାନେ ଆନନ୍ଦମୟ ଯାତ୍ରା କରୁଥିଲେ । ସେଇ ବୋଟଗୁଡ଼ିକ ଅନ୍ୟମାନଙ୍କ ଠାରୁ ସୁନ୍ଦରତାରେ ନିଆରା ଥିଲା । କମିଶନରଙ୍କ ଅଫିସରେ କାମ କରୁଥିବା ଜଣେ କିରାଣୀକୁ କୃପା ସେଠାରେ ଭେଟିଲା । ସେ ସେଇ ପାଖ ଗାଁର ଲୋକ । କୃପାକୁ ସେ ଗୋଟାଏ ମାଛଧରା ବନସୀ ଦେଲେ । ଦି'ଜଣ ଯାକ ବନ୍‌ସୀ ପକେଇ ମାଛ ଧରାରେ ଅପରାହ୍ନଟି ବିତାଇ ଦେଲେ ।ପରଦିନ ସକାଳେ ସାହେବଙ୍କ ପାଖରେ ବିଶେଷ କାମ ନଥିଲା । ତେଣୁ ସେ ରୂପା ବଣିଆ ମାନଙ୍କ ଗଳିରେ ପଶିଲା । ଏଇ ଗଳିର ଘରଗୁଡ଼ିକ ଗାଁ ଘର ଭଳି ମାଟି ଛପରର ଘର । ସେଠାରେ ଜନାର୍ଦ୍ଦନ ଜେଠୀର ଭାଇ ବି ରହୁଥିଲେ । ତାଙ୍କ ସହ ଦେଖାହେଲା ମାତ୍ରେ ସେ କୃପାକୁ କୁଣ୍ଢେଇ ପକେଇ ଘରର ସବୁ ଖବର ନେଲା । ଜେଠୀର ଭାଇ ପାଖରେ ରୂପାକାମ ଓ ସୁନ୍ଦର ତାରକସିର କାମ ସବୁ ଦେଖିଲା । ଏସବୁ ଜିନିଷର ବେଶ୍ ବିକ୍ରି ଥିଲା ।

ତାପରେ ସେ ତାର ଦ୍ୱିତୀୟ ସ୍ତ୍ରୀର ବାପା ଡେ଼ପୁଟୀ ମାଜିଷ୍ଟ୍ରେଟଙ୍କ ସହ ଦେଖା କଲା ଓ ତାଙ୍କ ସହ କେତେକ ଜରୁରୀ କଥାବାର୍ତ୍ତା କଲା ।

ଅପରାହ୍ନରେ ସମ୍ମିଳନୀ ବସିଲା । ସାହେବଙ୍କ ସଂଗେ କୃପା କମିଶନରଙ୍କ ଅଫିସକୁ ଗଲା । ସେଇଟା ଥିଲା ଗୋଟାଏ ଦ୍ୱିତଳ ପ୍ରାସାଦ । ଉପର ତାଲାରେ ଗୋଟାଏ ବିରାଟ ବାରଣ୍ଡା ଥିଲା । ସାହେବମାନେ ଆଲୋଚନା କରିବାରେ ରତ ଥିଲା ବେଳେ କୃପା ବାହାର ବାରଣ୍ଡାରେ ଅପେକ୍ଷା କରି ବସିଲା । ସେଠାରୁ କଲେକ୍ଟରଙ୍କ କଚେରୀ ଦେଖାଯାଉଥାଏ । ସେ କଚେରୀଘର ବି କାଠଯୋଡ଼ୀର ଘର ଭଳି ତିଆରି ହୋଇଥିଲା । ବଡ଼ବଡ଼ ପଥର ଖଣ୍ଡରେ କାନ୍ଥ ଗୁଡ଼ିକ ତିଆରି ହୋଇଥିଲା । ବାଲେଶ୍ୱର କଚେରୀ ଅପେକ୍ଷା କଟକ କଚେରୀଟି ତିନି ଚାରି ଗୁଣ ବଡ଼ ଥିଲା ।

ବାରଣ୍ଡାରେ ଅପେକ୍ଷା କଲାବେଳେ କୃପା ଶୁଣିପାରିଲା ଯେ କମିଶନର ସମ୍ମିଳନୀର ମେମୋରାଣ୍ଡା ପ୍ରସ୍ତୁତି ପାଇଁ ପୁରୀ କଲେକ୍ଟରଙ୍କୁ ପଚାରିଲେ । କିଛି କାମର ନୁହେଁ ଯୋଗୁଁ ସେ ପିଏକୁ ଆଣି ନାହାନ୍ତି ବୋଲି ଉତ୍ତର ଦେଲେ ।

କଟକ କଲେକ୍ଟର କହିଲେ ଯେ ତାଙ୍କର ଷ୍ଟେନୋ ନାହାନ୍ତି । ସେ ତାଙ୍କ ଅଫିସରେ ସବୁ କିରାଣୀକୁ ନିର୍ଦ୍ଦେଶ ଦେଲେ ସର୍ଟହ୍ୟାଣ୍ଡ ଶିଖିବାକୁ କିନ୍ତୁ କେହି ଆଗ୍ରହ ପ୍ରକାଶ କଲେ ନାହିଁ । ଯାହା ବି ଯେତେଜଣ ଶିଖିଲେ, ସେମାନେ ଏତେ ଧୀରମନ୍ଥର

ହାତରେ ଲେଖିଲେ ଯେ ସେମାନଙ୍କୁ ଡାକିବା ଅପେକ୍ଷା ନିଜେ ଲେଖିବା ବରଂ ଭଲ ହେବ ।

ପ୍ରକୃତରେ, ବାଲେଶ୍ୱର କଲେକ୍ଟରଙ୍କ ବ୍ୟତୀତ ଆଉ କେହି କଲେକ୍ଟର ନିଜ ଷ୍ଟେନୋକୁ ଆଣି ନ ଥିଲେ । ତେଣୁ କୃପାସିନ୍ଧୁକୁ ଡାକ ପଡ଼ିଲା । କମିଶନର ତାକୁ ଧୀରେ ଧୀରେ ଚିଠି ଡାକିଲେ ଓ ସେ ସେଗୁଡ଼ିକୁ ନିର୍ଭୁଲ ଭାବରେ ଲେଖି ପକେଇଲା। ଅନ୍ୟ କଲେକ୍ଟରମାନେ ବାଲେଶ୍ୱର କଲେକ୍ଟରଙ୍କୁ କୃପାସିନ୍ଧୁର ଦକ୍ଷତା ପାଇଁ ପ୍ରଶଂସା କଲେ ।

ସେହି ସଂଧ୍ୟାରେ ତାର ଶ୍ୱଶୁରଙ୍କ ସହିତ କୃପା ଯାହାଯାହା କଥା ଆଲୋଚନା କରିଥିଲା, ସେ ସବୁ କଥା ସେ ଭଲ ଭାବରେ ଚିନ୍ତା କଲା । କଟକ ବାଲେଶ୍ୱର ଅପେକ୍ଷା ବଡ଼ ଜିଲ୍ଲା ଥିଲା । ଏହା ସବୁଠାରୁ ବଡ଼ ଓ ମୁଖ୍ୟ ଜିଲ୍ଲା ଯେଉଁଠି ବହୁତ ବେଶୀ ଧନୀ ଓ ଶକ୍ତିଶାଳୀ ଲୋକମାନେ ବସବାସ କରୁଥିଲେ । ତେଣୁ ଏଠାରେ ପଇସା କମେଇବାର ସୁଯୋଗ ବେଶୀ ମିଳିବ ।

କଟକରେ ତିନିଟା ସବଡିଭିଜନ, ପଚିଶଟା ପୋଲିସ ଷ୍ଟେସନ । ମାତ୍ର ବାଲେଶ୍ୱରର ଦୁଇଟା ସବଡିଭିଜନ ତ ଷୋହଳଟା ପୋଲିସ ଷ୍ଟେସନ । ଅର୍ଥାତ୍ ତିନିଟା ସବ୍‌ଡିଭିଜନର ଅଫିସର ଓ ତାଙ୍କ ଅଫିସ ଷ୍ଟାଫ, ଏବଂ ପଚିଶ ପୋଲିସ ଅଫିସର ଯେଉଁମାନେ କି କଲେକ୍ଟରଙ୍କର ପିଏ ସହିତ ସୁସମ୍ପର୍କ ରଖିବାକୁ ନିଶ୍ଚୟ ଆଗ୍ରହୀ ହେବେ । ଆଉ ବଡ଼ବଡ଼ ଜମିଦାର, ଗୃଷୀ, ନେତା ଇତ୍ୟାଦି ବଡ଼ ଜିଲ୍ଲାରେ ବେଶୀ ନିଶ୍ଚୟ । କିରାଣୀ ମାନଙ୍କର ଗୋଟାଏ ଜିଲ୍ଲାରୁ ଆଉ ଗୋଟାଏ ଜିଲ୍ଲାକୁ ବଦଳି ହେଉ ନଥାଏ । ଯଦିବା କେହି କିରାଣୀ ବଦଳି ହେଉଥିଲା, ତାର ଆସନ ଲୋକଙ୍କ ଦୃଷ୍ଟିରେ ଯଥେଷ୍ଟ ଉଚ୍ଚରେ । ଅସଲ କଥାଟି ହେଲା, ସେ ଜଣେ ଦକ୍ଷ ଷ୍ଟେନୋଗ୍ରାଫର। ଯଦି ସେ କଟକ ବଦଳି ହୋଇ ଆସିପାରେ ତ ତାର କମାଣି ବହୁତ ବଢ଼ିଯିବ ।

କୃପାର ଶ୍ୱଶୁର ଇଂରେଜ ମାନଙ୍କ ସ୍ୱଭାବ ଓ ଚରିତ୍ର ସହ ବେଶ୍ ପରିଚିତ ଥିଲେ । ତେଣୁ ସେ ତାକୁ କେବଳ ଗୋଟାଏ କଥା କହିଲେ । ଯଦି ସେ ଏବେ ବଦଳିପାଇଁ ଚେଷ୍ଟାକରେ ତ ତାର ସାହେବ ବହୁତ କ୍ଷୁର୍ଣ୍ଣ ହେବେ । କାରଣ ସେ ତାକୁ ବହୁତ ଭଲ ପାଇବା ସଂଗେ ସଂଗେ ଜଣେ ଦକ୍ଷ କିରାଣୀକୁ ଛାଡ଼ିବା ତାଙ୍କ ପକ୍ଷେ ସମ୍ଭବ ହେବ ନାହିଁ । ତେଣୁ, କୃପା ବଦ୍‌ନାମ ହୋଇଯିବ । ବରଂ ଆଉ ଟିକେ ସୁବିଧାଜନକ ପରିସ୍ଥିତି ପାଇଁ ଅପେକ୍ଷା କରିଯିବା ଭଲ ।

କୃପାର ସାହେବ କଟକ କାମ ସାରି ଗ୍ଦବାଲି ଯିବାର କାର୍ଯ୍ୟକ୍ରମ ରଖିଥିଲେ ।

ଚାନ୍ଦବାଲି ମହାନଦୀ ମୁହାଣରେ ଗୋଟାଏ ଛୋଟ ବନ୍ଦର । ଯଦିଓ ଏହା ବାଲେଶ୍ୱର ଜିଲ୍ଲାରେ ଅବସ୍ଥିତ, ଏଠାକୁ ବାଲେଶ୍ୱରରୁ ଆସିବା କଷ୍ଟକର ହୁଏ । କାରଣ ପ୍ରତିବର୍ଷ ବନ୍ୟା ହୋଇ ରାସ୍ତା ସବୁ ଧୋଇ ହୋଇ ଯାଏ । କଟକରୁ କେନାଲ ଓ ନଦୀପଥ ଦେଇ ଚାନ୍ଦବାଲି ଯିବାକୁ ସୁବିଧା । ତେଣୁ କନ୍‌ଫରେନ୍ସ ପରଦିନ ଷ୍ଟିମରରେ ବସି କୃପା ତାର କଲେକ୍‌ଟରଙ୍କ ସହ ଚାନ୍ଦବାଲି ଚାଲିଲା ।

କେନାଲରୁ ନଈରେ ଷ୍ଟିମର ପ୍ରବେଶ କଲାବେଳେ କୃପାସିନ୍ଧୁ ପ୍ରାକୃତିକ ଦୃଶ୍ୟ ସବୁ ଦେଖି ଆନନ୍ଦରେ ଆତ୍ମହରା ହୋଇ ଯାଉଥାଏ।। ନଈକୂଳ ଜମିଗୁଡ଼ିକ ଖୁବ୍ ଉର୍ବର । ସେଠାକାର ଲୋକମାନଙ୍କ ସହିତ ସେ କଥାବାର୍ତ୍ତା  କଲା ।

କେନାଲର ଶେଷ ମୁଣ୍ଡରେ ପହଞ୍ଚିବା ବେଳକୁ ଜୁଆର ଛାଡ଼ି ଯାଇଥାଏ, ତେଣୁ ସେମାନଙ୍କୁ ସେଠାରେ ଅପେକ୍ଷା କରିବାକୁ ପଡ଼ିଲା । ଜୁଆର ଉଠିବାବେଳେ ସେମାନଙ୍କ ଷ୍ଟିମର ନଈ ଭିତରକୁ ପଶିଲା । ସେଠାରେ ନଈ ଏତେ ଓସାରିଆ, ଗଭୀର ଓ ପାଣିର ତରଙ୍ଗ ଏତେ ତୀଖ ଥିଲା ଯେ କୃପାକୁ ଡ଼ର ଲାଗୁଥିଲା ।

ସେମାନେ ସବୁବେଳେ ଉଜାଣି ବେଳେ ନଦୀ ଭିତରେ ଅଟକି ରହୁଥିଲେ । ସେତିକିବେଳେ କୃପା କୂଳମାନଙ୍କୁ ନିରୀକ୍ଷଣ କରି ଦେଖୁଥାଏ । ଜଙ୍ଗଲ ଭିତରେ ରହୁଥିବା କେତେକ ବଣୁଆ ଅଶିକ୍ଷିତ ଲୋକଙ୍କୁ ସେ ଦେଖିଲା । ସେମାନେ ନଦୀର ମାଛ ଓ ବଣର ପଶୁପକ୍ଷୀ ମାରି ଖାଉଥିଲେ । ଜଣେ ଦି'ଜଣ ବଣୁଆ ଲୋକଙ୍କୁ ଗୋଟାଏ ଚାପରେ ବସି ଦୁଇପାଖେ ଆହୁଲା ମାରି ଯିବାର ସେ ଦେଖିଲା । ଚାପ ମଝିରେ ନିଆଁ ଜଳୁଥାଏ । ସେଇ ନିଆଁରେ ସେମାନେ ଖାଦ୍ୟ ପ୍ରସ୍ତୁତ କରୁଥିଲେ । ଗୋଟାଏ ଦ୍ୱୀପପରି ଦେଖାଯାଉଥିବା ଜାଗାଟି ପ୍ରକୃତରେ ଥିଲା ଗୋଟାଏ ଜାହାଜ - ପଚାରି ପଚାରି ସେକଥା ସେ ଜାଣିଲା । ଜୁଆରିଆ ଢେଉ  ସୁଅରେ ନଦୀର ମାଟି ଜମିଯାଇ ଦ୍ୱୀପଟିଏ ସୃଷ୍ଟିହୋଇ ଥିଲା ଯେଉଁଠି ଜାହାଜଟି ପୋତି ପଡ଼ିଥିଲା । ସେଠାରେ ଗଛବୃଛ ବି ବଢ଼ି ଉଠିଥିଲେ । ଏ ସବୁ ଶୁଣି ମଧ୍ୟ କୃପାସିନ୍ଧୁର ବିଶ୍ୱାସ ହେଲା ନାହିଁ ।

ଚାନ୍ଦବାଲିଠାରେ ସାହେବ ରହିଲେ ବନ୍ଦର ଅଫିସରଙ୍କ କୋଠିରେ ଓ କୃପା ପୋଲିସ ଷ୍ଟେସନରେ । ଦିନସାରା କଷ୍ଟମ ଅଫିସ, ପୋଲିସ ଷ୍ଟେସନ ଓ ଅନ୍ୟସ୍ଥାନ ଯେଉଁଠି ସବୁ ତନଖି କରାଯିବା କଥା, ସେସବୁ ସାରି ସାହେବ କୃପାସିନ୍ଧୁକୁ ତଦାରଖର ରିପୋର୍ଟ ଡାକିଲେ । ତହିଁ ପରଦିନ ସକାଳେ ସାହେବ ତାଙ୍କ ବନ୍ଧୁକ ଧରି, ପୋର୍ଟଅଫିସରଙ୍କ ଲଞ୍ଚ ନେଇ ନଈ ଆରପାରି କୂଳରେ ଥିବା ବିପରିତ ଦିଗ ଜଙ୍ଗଲକୁ ଶୀକାର ପାଇଁ ଗଲେ । ସହକାରୀ କଷ୍ଟମ ଅଫିସରେ ବସି କିଛି କମିଶନି ଯୋଗାଡ଼

କରି କୃପାସିନ୍ଧୁ ଏଠିସେଠି ଦିନସାରା ଘୁରିବୁଲି ସବୁ କଥା ଅନୁଧ୍ୟାନ କଲା ।

କଲିକତା ଛଡ଼ା ସମୁଦ୍ର ଭିତରକୁ ଯାଉଥିବା ଜାହାଜମାନଙ୍କୁ କୃପାସିନ୍ଧୁ ଆଉ କେଉଁଠି ଦେଖି ନଥିଲା । ଏବେ ପାଖରୁ ସମୁଦ୍ର ଭିତରକୁ ଯାଉଥିବା ଜାହାଜଟିଏ ସେ ଦେଖିଲା । ଜାହାଜଟି ଲୁହାରେ ତିଆରି । ଆଶ୍ଚର୍ଯ୍ୟଜନକ ଖିଟମିଟିଆ ଯନ୍ତ୍ରପାତି ସବୁ ସେଥିରେ ଖଞ୍ଜା ଯାଇଛି ଦେଖି ସେ ଖାଲି ଯେ ହତଭମ୍ବ ହୋଇଗଲା, ତା ନୁହେଁ, ଇଂରେଜମାନଙ୍କ ଉଚ୍ଚମାନର ବୁଦ୍ଧିକୁ ସେ ଭୁରିଭୁରି ପ୍ରଶଂସା କଲା । ସେମାନେ ଏମିତି ସବୁ ଜାହାଜ ତିଆରି କରିପାରୁଛନ୍ତି -ଅଥଚ ତା ନିଜ ଦେଶର ଲୋକେ କାଳକାଳ ଧରି ସମୁଦ୍ର କୂଳରେ ରହି ମଧ୍ୟ ପୁରୁଣା କାଳିଆ କାଠ ନୌକାରେ ସମୁଦ୍ର ଭିତରକୁ ଯାଉଛନ୍ତି ।

ତହିଁପରଦିନ ସେମାନେ କଟକ ଫେରି ଆସିଲେ । ସେଠି ମାତ୍ର ଓଳିଟିଏ ରହିବାକୁ ହାତରେ ସମୟ ଥିଲା । ତାପରେ ଟ୍ରେନ ଧରି ବାଲେଶ୍ୱରରେ ପହଞ୍ଚିବେ । ନିଜର ଯୋଜନାଟି କିପରି କାର୍ଯ୍ୟକାରୀ କରିବ ସେକଥା କୃପା ଗନ୍ଧବାଲିରେ ବସି ଭାବିରଖି ଥିଲା । କମିଶନରଙ୍କ ଅଫିସରେ ଜଣେ କିରାଣୀକୁ ସେ ହାତକରି ନେଇଥିଲା ଯିଏ କି ତାର ଦ୍ୱିତୀୟ ସ୍ତ୍ରୀର ଭାଇ ସମ୍ପର୍କ ହେବ ।

"ଆମ କଲେକ୍ଟର ଦି'ବର୍ଷ ହେବ ବାଲେଶ୍ୱରରେ ଅଛନ୍ତି-ସେ କଣ ଏତେ ଶୀଘ୍ର ଟ୍ରାନସ୍‌ଫର ହେବେ ବୋଲି ଭାବୁଛ ? କିଏ ଜାଣେ ଏମିତି କଥା ପ୍ରାୟତଃ ହୁଏନି । ଶୀତପୂର୍ବରୁ କେତେକ ଅଫିସର ଛୁଟିରୁ ଫେରିବେ ।"

"କଟକ କଲେକ୍ଟରଙ୍କର ବଦଳି ଖବର କଣ ?"

"ଏଠି ସେ ତିନିବର୍ଷ କଟେଇ ସାରିଲେଣି । ତେଣୁ ଯଦି କେହି ତାଙ୍କ ଜାଗାରେ ଆସେ ତେବେ ସେ ବଦଳି ହେବା ନିଶ୍ଚିତ । ଏଯାଏଁ କିଛି ସ୍ଥିର କରାଯାଇନି ।"

"ତେବେ, ଯେତେବେଳେ ଏସବୁ ହେବ, ତୁମେ କମିଶନ ଅଫିସରୁ ତ ଜାଣିପାରିବ ? ଆମେ ଏସବୁ ଜାଣିବା ଆଗରୁ ? ସେ ସମ୍ବନ୍ଧୀୟ କିଛି ଖବର ଜାଣିବା ମାତ୍ରେ ମୋତେ ତମେ ସେକଥା ଜଣେଇବ ।"

"ନିଶ୍ଚୟ, ଅର୍ଡର ବାହାରିବା ମାତ୍ରେ ତମକୁ ଜଣାଇବି, କୃପାବାବୁ । ମୋର ଜଣେ ଭାଇ ମଧ୍ୟ ଚିଫ୍ ସେକ୍ରେଟୋରୀ ଦପ୍ତରରେ କାମ କରେ । କମିଶନରଙ୍କ ଜାଣିବା ପୂର୍ବରୁ ତା ଠାରୁ ମୁଁ ସବୁ ଜାଣିପାରିବି ।"

କୃପା ଆଶା ଓ ଖୁସି ସହ ବାଲେଶ୍ୱର ଫେରିଲା । ନିଜର ନୂଆ ସ୍ତ୍ରୀ ଓ ନୂଆ ଭଡ଼ାଘରକୁ ଫେରି ନୂଆ ଯୋଜନାରେ ସଫଳତା ଆଶା କରି ଖୁସିରେ ରହିଥିଲା ।

# ତ୍ରୟୋଦଶ ପରିଚ୍ଛେଦ

କଟକ ଓ ଚନ୍ଦବାଲି ଟୁର୍‌ରୁ ଫେରିବା ପରେ ପରେ ସାହେବଙ୍କର ପୁଣି ବାହାରକୁ ଯିବା ଦରକାର ପଡ଼ିଲା । ଜଗନ୍ନାଥଙ୍କର ରଥଯାତ୍ରା ବେଳେ ଡିଭିଜନର ସବୁ କମିଶନର କଲେକ୍ଟର ମାନଙ୍କୁ ପୁରୀଠାରେ ଏକତ୍ରିତ ହେବାର ଗୋଟାଏ ପୁରୁଣା ନିୟମ ଥିଲା । କଟକ ଓ ବାଲେଶ୍ୱରର କଲେକ୍ଟର ଏବଂ ତାଙ୍କ ପିଲାପିଲିଙ୍କୁ ସେଠାରେ ଥିବା ସର୍କିଟହାଉସରେ ରହିବାକୁ ପଡ଼ିଲା । କଟକ କଲେକ୍ଟର ତାଙ୍କ ଭିପୋଟୀଙ୍କୁ ସାଙ୍ଗରେ ଆଣି ଆସିଥିଲେ । ତାଙ୍କ ପାଇଁ ସର୍କିଟ ହାଉସରେ ଜାଗା ନ ଥିଲା । ତେଣୁ ତାଙ୍କୁ ଜଙ୍ଗଲ ବିଭାଗର ଏକ କଟେଜରେ ରହିବାକୁ ପଡ଼ିଲା ।

କୃପାସିନ୍ଧୁ ତାର ସାହେବଙ୍କ ସହିତ ପୁରୀ ଯାଇଥିଲା । କୌଣସି ହିନ୍ଦୁ ସ୍ତ୍ରୀ ପୁରୀ ଯିବାର ସମ୍ଭାବନା ଦେଖିଲେ ସେଠାକୁ ଯିବାକୁ ଉଚ୍ଛନ୍ନ ହୁଅନ୍ତି । ତେଣୁ ଘରୁବାଳାକୁ ସାଥିରେ ନେଇ ଯିବାକୁ ସେ ସ୍ୱାମୀଙ୍କୁ ଅନୁରୋଧ କଲା । ପ୍ରଥମ ଥର ପାଇଁ ସେ ସ୍ୱାମୀଙ୍କୁ ନିଜ ତରଫରୁ କିଛି ମାଗିଲା । ତେଣୁ କୃପାସିନ୍ଧୁ ତାକୁ ମନା ବା କରି ପାରିଥାନ୍ତା କିପରି । ପୁରୀରେ ପହଞ୍ଚିବାର ପ୍ରଥମ ଦିନ ସାଇବମାନେ ଯାଇ ଯାତ୍ରୀମାନଙ୍କର ସ୍ୱାସ୍ଥ୍ୟରକ୍ଷା, ହୋଟେଲ, ହାସପାତାଲ ଏବଂ ପିଇବା ପାଣିର ସୁବିଧା କରାଯାଇଛି କି ନାହିଁ, ତାହା ତଦାରଖ କରାଇଲେ । ଦ୍ୱିତୀୟ ଦିନ ନିଜନିଜର ମେମ୍‌ମାନଙ୍କୁ ନେଇ ପର୍ଯ୍ୟବେକ୍ଷକଙ୍କ ସହିତ ମନ୍ଦିର ପ୍ରଦକ୍ଷିଣ କରି ସହର ବୁଲିବାକୁ ବାହାରିଗଲେ ।

ଏଇ ଦୁଇଦିନ ଧରି କୃପାସିନ୍ଧୁକୁ କିଛି ଦପ୍ତରର କାମ କରିବାକୁ ହୋଇ ନ ଥିଲା । ତେଣୁ ସେ ବି' ତାର ସ୍ତ୍ରୀକୁ ଧରି ଠାକୁରଙ୍କ ଦର୍ଶନ ପାଇଁ ମନ୍ଦିରକୁ ଗଲା । ସେଠାରେ ହାତଗୋଡ଼ ଖଣ୍ଡିଆ କାଷ୍ଠ ନିର୍ମିତ ଅନନ୍ତ ଶକ୍ତିର ଉତ୍ସ ଜଗନ୍ନାଥ ବସିଥିଲେ । ଯିଏ ଅନନ୍ତ ଶକ୍ତିର ଉତ୍ସ, ନିଜ ଇଚ୍ଛା ଅନୁସାରେ କାମ କରିବା ନିମିତ୍ତ ତାଙ୍କର ବା ହାତଗୋଡ଼ର ଆବଶ୍ୟକତା କଣ ?

ସେମାନେ ଦିହେଁ ଓ ପଡ଼ୋଶୀ ଧର୍ମଶାଳାର ଯାତ୍ରୀମାନେ ସାଂଗସାଥି ହୋଇ ମିଶି ସହର ସାରା ବୁଲୁଥାନ୍ତି । ଜଣେ ଗାଇଡ୍ ସେମାନଙ୍କ ସହିତ ଥାଏ । ସବୁବେଳେ ଜଳରେ ପରିପୂର୍ଣ୍ଣ ମାର୍କଣ୍ଡ ପୋଖରୀ ଏବଂ ଆଉ ଗୋଟାଏ ପୋଖରୀ ମଧ୍ୟ ସେମାନେ ଦେଖିଲେ ଯାହାର ଜଳକୁ ପବିତ୍ର ମାନାଯାଏ ଅଥଚ ସେଇଟା ଅପରିଷ୍କାର ଥିଲା । ଯାତ୍ରୀମାନଙ୍କୁ ସେ ପୋଖରୀର ପାଣି ସ୍ପର୍ଶ କରିବାକୁ ନିଷେଧ କରାଯାଇଥାଏ । ଆଉ

ଗୋଟାଏ ପୋଖରୀରେ ବହୁ ସଂଖ୍ୟାରେ କୂର୍ମ ରହିଥାନ୍ତି । ପାଖକୁ ଡାକିଲେ, ସେମାନେ ତମ ପାଖକୁ ଆସିଯାଆନ୍ତି । ସ୍ୱର୍ଗଦ୍ୱାର ନାମକ ଏକ ଅଙ୍କାବଙ୍କା ଗଳି ଦେଇ ସେମାନେ ମନ୍ଦିରକୁ ଗଲେ ଏବଂ ପରମ ପବିତ୍ର ପୁରୁଷଙ୍କୁ ତୀର ଶଯ୍ୟାରେ ଶୋଇବାର ଦେଖିଲେ । ସମୁଦ୍ର ବାଲିରେ ସାରାଟା ଦିନ ଶୋଇ ଶୋଇ ସେମାନେ ପରସ୍ପରକୁ ଆକର୍ଷକ କାହାଣୀମାନ ଶୁଣାଇଲେ । କୃପା ସାଙ୍ଗରେ ଥିବା ଅନ୍ୟ ଯାତ୍ରୀମାନେ ହିନ୍ଦୁସ୍ଥାନୀ ଥିବାରୁ ସେମାନେ ହିନ୍ଦିରେ କଥା ହେଉଥିଲେ । କୃପା କିମ୍ବା ତାର ସ୍ତ୍ରୀ ସେମାନଙ୍କର କଥାର ବିନ୍ଦୁ ବିସର୍ଗ ବି ବୁଝିପାରୁ ନଥିଲେ ।

ବାଟରେ ଚରୁବାଳା ଧୀରେ ଧୀରେ ତାର ସ୍ୱାମୀ ପଛେପଛେ ଚାଲୁଥାଏ ତ କୃପାସିନ୍ଧୁ ତାକୁ ତା ପାଦସହ ତାଳ ମିଳାଇ ଚାଲିବାକୁ କହିଲା । ସେମିତି ହେଲେ ସିନା ସେମାନେ ଦେଖୁଥିବା ପ୍ରତ୍ୟେକ ବିଷୟରେ ଦି'ଜଣ ଆଳାପ କରିପାରିବେ । କୃପାସିନ୍ଧୁ ସହ ଚରୁବାଳା ଖୁବ୍ କମ୍ କଥା ହେଉ ଥିଲା । ଅଧିକ କି କଥା ବା କହିବ ? ମାତ୍ର ଦି'ଜଣ ପରସ୍ପରର ନୀରବତାର ଅର୍ଥ ବୁଝୁଥିଲେ । କେବଳ କୂର୍ମମାନେ ଯେତେବେଳେ ଚରୁବାଳା ପାଖକୁ ଆସିଲେ, ସେତେବେଳେ ସେ ହେଁ ହେଁ ହୋଇ ହସି ଉଠିଲା । କୃପା ବି ତା ସହ ହସିଲା ଓ ମନେମନେ ଭାବିଲା ସେ ଦିନଟି ତା ଜୀବନର ସବୁଠାରୁ ସୁଖର ଦିନ ।

ସ୍ୱର୍ଗଦ୍ୱାର ଗଳିରେ ସବା ଶେଷ ମୁଣ୍ଡରେ ଥିଲା ସମୁଦ୍ର । ବାଲେଶ୍ୱର ଠାରୁ ସମୁଦ୍ରକୁ ଗଲେ ମାତ୍ର ଆଠ କିଲୋମିଟର ଦୂର ପଡ଼େ । କୃପା ଆଗରୁ ସମୁଦ୍ର ଦେଖିଥିଲା । କିରାଣୀମାନେ ଥରେ ଥରେ ରବିବାର ବା ଛୁଟିଦିନ ମାନଙ୍କରେ ପିକ୍‌ନିକ୍‌ରେ ସମୁଦ୍ରକୂଳକୁ ଯାଇ ସମୁଦ୍ରରେ ଗାଧୋଇଥାନ୍ତି । ମାତ୍ର ସେଠାରେ (ବାଲେଶ୍ୱର) ସମୁଦ୍ର ଖୁବ୍ ଅଗଭୀର ଓ ପଙ୍କ ପଚ୍‌ପଚ୍ । ବହୁତବାଟ ସମୁଦ୍ରର ପାଣିରେ ଚାଲିଚାଲି ଗଲେ ଯାଇ ସମୁଦ୍ରରେ ଗାଧୋଇ ହେବ । ମାତ୍ର ଏଠିକାର ସମୁଦ୍ର ପରି ଏତେ ଢେଉ କୂଳରେ ବାଜି ସିଆର କାଟି କାଟି ଫେରିଯିବାର ଦୃଶ୍ୟ ସେ ଦେଖି ନ ଥିଲା । ବହୁସଂଖ୍ୟାରେ ଯାତ୍ରୀମାନେ ଗାଧୋଉ ଥାନ୍ତି । ତେଣୁ ସେମାନଙ୍କୁ ସୁରକ୍ଷିତ ଭାବେ ଓ ସୁବିଧାରେ ଗାଧୋଇବା ଲାଗି କୂଳରେ ସ୍ଥାନେ ସ୍ଥାନେ ତେଲୁଗୁ କେଉଟ ମାନଙ୍କୁ ନିଯୁକ୍ତ କରାଯାଇଥାଏ । ସେମାନେ ସମୁଦ୍ରରେ ପହଁରିବାରେ ଖୁବ୍ ପାରଙ୍ଗମ । ଆଉ କେତେକ ହୁଲି ଡଙ୍ଗା ଧରି ଢେଉସହିତ ଉପରତଳ ହୋଇ ଆହୁଲା ମାରି ବୁଲୁଥାନ୍ତି- କେଉଁଠି କିଏ ଭାସିଯାଉଛି କି ବୁଡ଼ିଯାଉଛି ତାହା ଲକ୍ଷ୍ୟ କରୁଥାନ୍ତି । ଗାଇଡ ଜଣକ କହିଲେ ଯେ ଏଠି ସମୁଦ୍ର ସ୍ନାନ କଲେ ମୋକ୍ଷ ମିଳେ । ତମକୁ ଗାଧୋଇବାକୁ

ପଡ଼ିବ। ସେତେବେଳେ କୃପା ଡ଼ରିଗଲା କାରଣ ସେ ସିନା ପହଁରା ଶିଖିଥିଲା – ହେଲେ ଘରୁବାଳା ? ତେଣୁ ଜଣେ ତେଲୁଗୁ କେଉଟକୁ ନିଜର ସୁରକ୍ଷା ପାଇଁ ଦୁଇଅଣା ପଇସା ଦେଇ ନିଯୁକ୍ତି କଲାପରେ ହିଁ ଦି'ଜଣ ଯାକ ସମୁଦ୍ରରେ ଗାଧୋଇଲେ ।

ଗାଧୋଇ ସାରି ବାଟରୁ କିଛି ମିଠେଇ କିଣି ଠାକୁରଙ୍କ ହାତୀକୁ ଖୁଆଇଲେ ଏବଂ ନିଜେ ଖାଇବା ପାଇଁ ସେମାନେ ହୋଟେଲକୁ ଫେରିଲେ । ହାତୀକୁ ଖୁଆଇବା ଏକ ପବିତ୍ର ପରମ୍ପରା । ସେମାନେ ଜଗନ୍ନାଥଙ୍କ ସମ୍ପତ୍ତି । ହାତୀକୁ ମିଠେଇ ଖୁଆଇବା ବେଳେ ମଧ ଘରୁବାଳା ଖୁସିରେ ଉଚ୍ଛଳ ହୋଇ ଉଠୁଥିଲା । ଦିନସାରା ସମୁଦ୍ରକୂଳରେ ଏମିତି ବୁଲାବୁଲି କରି ସେମାନେ ଦୁଇଟି ବାଳକ ବାଳିକା ପରି ଖୁସି ମନରେ ହୋଟେଲକୁ ଫେରିଲେ ।

ପରଦିନ ପ୍ରଥମେ ସେମାନେ ଦିଅଁ ଦର୍ଶନ ପାଇଁ ଗଲେ ଏବଂ ତାପରେ ସହର ବୁଲି ଦେଖିବାକୁ ଏଣେ ତେଣେ ବୁଲିଲେ । ପୁରୀକୁ ଆସୁଥିବା ତୀର୍ଥଯାତ୍ରୀ ମାନଙ୍କୁ ସେମାନେ ପ୍ରାୟତଃ ଭେଟୁଥିଲେ । ସେବର୍ଷ ଘରିହଜାର ଯାତ୍ରୀ ପୁରୀ ରଥଯାତ୍ରା ଦେଖିବାକୁ ଆସିଥିଲେ । ସେମାନଙ୍କ ଭିତରେ ବେଶୀ ଭାଗ ଥିଲେ ନାରୀ । ବର୍ମା ଓ କାଶ୍ମୀରରେ ଉଚ୍ଚ ବଂଶର ସୁନ୍ଦରୀ ସ୍ତ୍ରୀ ଲୋକମାନେ ବି ଥିଲେ । କିଛି ସ୍ତ୍ରୀ ପର୍ଦ୍ଦା ଭିତରେ ରହୁଥିଲେ । ମାତ୍ର ପୁରୀରେ ପର୍ଦ୍ଦାପ୍ରଥା ନ ଥିବାରୁ ସେମାନେ ଖୋଲାଖୋଲି ବୁଲୁଥିଲେ । ଆଉ କେତେଜଣ ନାରୀ ତ ନିଜର ବକ୍ଷ ଓ ମୁହଁ ଆଦୌ ଆବୃତ କରି ନଥିଲେ । କୃପାସିନ୍ଧୁ ମନେମନେ ଭାବୁଥିଲା କି ସେ କୋଡ଼ିଏ ବର୍ଷ ପଛକୁ ଫେରିଯାଇପାରନ୍ତା ଯଦି ଏ ସ୍ତ୍ରୀ ଲୋକମାନଙ୍କ ମେଳରେ ଖୁବ୍ ଖୁସି ଆହରଣ କରୁଥାନ୍ତା । ଏବେ ତ ସେ ମଧବୟସ୍କ ତେଣୁ ସେମାନଙ୍କୁ ଦେଖି ସେତେବେଶୀ ଉନ୍ମାଦନା ଅନୁଭବ କଲା ନାହିଁ । ତହିଁ ପରଦିନ ରଥଟଣାର ଦିନ । ଜଗନ୍ନାଥ ତାଙ୍କ ମେଘନାଦ ପାଚେରୀ ଡ଼େଇଁ ମଧୁର ବାସ୍ନାଭରା ବଡ଼ଦାଣ୍ଡ ବାଟ ଦେଇ ଯିବେ । ଡ଼େଇଁ ଡ଼େଇଁ ଯିବା ନିଶ୍ଚିତ ଭାବେ ସ୍ୱାସ୍ଥ୍ୟ ପାଇଁ ଅନୁକୂଳ ।

ପୁରୀର କଲେକ୍ଟରଙ୍କୁ ବଡ଼ ଦାଣ୍ଡରେ ରଥ ସହିତ ଦିନସାରା ରହିବାକୁ ପଡ଼ିଲା । ତାଙ୍କର ମେମ୍ ସାହେବ ଓ ଅନ୍ୟ ଜଣେ ଇଉରୋପୀୟ ଅତିଥିଙ୍କ ପାଇଁ ସିଂହଦ୍ୱାର ନିକଟ ବଡ଼ଦାଣ୍ଡରେ ଥିବା ଜଣେ ଧନୀ ଲୋକର କୋଠାଘରର ବାଲ୍‌କୋନୀରେ ବସି ରଥଟଣା ଦେଖିବାର ବ୍ୟବସ୍ଥା କରାଯାଇଥିଲା । ଜଣେ ବଡ଼ ଅଫିସରଙ୍କ କିରାଣୀ ହିସାବରେ, କୃପାସିନ୍ଧୁ ଓ ତାର ସ୍ତ୍ରୀ ପାଇଁ ମଧ ପାଖ ଘର ବାଲ୍‌କୋନୀରେ ବସି ଯାତ୍ରା ଦେଖିବାର ସୁବିଧା କରାଯାଇଥିଲା ।

ରଥଯାତ୍ରାର କାର୍ଯ୍ୟକ୍ରମ ଗୁଡ଼ିକ ତୁଟାଇବା ସମୟ ସାପେକ୍ଷ ଏବଂ ଧୈର୍ଯ୍ୟ ସାପେକ୍ଷ ଥିଲା । ଜଗନ୍ନାଥଙ୍କୁ ବଡ଼ ଆହ୍ଲାଦରେ ଯଥା ବିଧି ପୂଜାର୍ଚ୍ଚନା କରି ସିଂହଦ୍ୱାର ଯାଏ ଅଣା ହୋଇଥାଏ । ପ୍ରଥମେ ଜଣେ ପୂଜକ ଗୋଟାଏ ପାତ୍ରରେ ରଂଗ ଓ ତୂଳୀ ଧରି ରଥ ଉପରକୁ ଚଢ଼ି ଆସନ୍ତି । ମହାପ୍ରଭୁ ଜଗନ୍ନାଥଙ୍କ ଆଖିରେ ତାହା ଛୁଆଁଇ ଦେବା ପର୍ଯ୍ୟନ୍ତ ସମସ୍ତ ଭକ୍ତମାନଙ୍କୁ ଅପେକ୍ଷା କରିବାକୁ ପଡ଼େ । ରଥଟଣା ବେଳେ ଭକ୍ତଗଣ ଭାବ ବିହ୍ୱଳ ହୋଇ ଠାକୁରଙ୍କୁ ପ୍ରାର୍ଥନା କରନ୍ତି । ତେଣୁ ଗୋରାସାହେବମାନେ ଏଣେ ଅଧୈର୍ଯ୍ୟ ହୋଇ ଉଠୁଥାନ୍ତି । ଏଇ ପୂଜା ଅର୍ଚ୍ଚନା ଓ ରଥଟଣାର ଧାରା ବିବରଣୀ ଦେବାକୁ ବ୍ୟଗ୍ର ହୋଇ ପଡୁଥାନ୍ତି ସେମାନେ ।

ଜଣେ ସାହେବ କହିଲେ, "ଏମାନେ କିପରି ଯେ ଏ ଅନୁଷ୍ଠାନର କାଠକଣ୍ଢେଇଟିକୁ ଏତେ ଆଗ୍ରହ ଉଦ୍ଦୀପନାର ସହ ପୂଜା କରୁଛନ୍ତି । ସେଇମାନେ ହିଁ ସେକଥା ଜାଣନ୍ତି ।" କମିଶନର କହିଲେ, "ମୁଁ ବୁଝିପାରୁଛି ଠାକୁରଙ୍କର ଏହି ମୂର୍ତ୍ତିଟି ସୂଚନାତ୍ମକ ରୂପରେ ପୂଜା ପାଉଛନ୍ତି ।"

ଆଉ ଜଣେ ସାହେବ କହିଲେ, "ତୁମେ ଏଇ ମୂର୍ତ୍ତିକୁ ବେଦୀ ଉପରର ପବିତ୍ର ମୂର୍ତ୍ତିର ମୁହଁ ସହ ତୁଳନା କରୁଛ କି ?"

କମିଶନର ଉତ୍ତର ଦେଲେ , "ହଁ ହଁ, ପଥର ପ୍ଲାଟଫର୍ମର ଜଗନ୍ନାଥ ମହାପ୍ରଭୁ ରଥ ଉପରେ ବିଜେ ହୋଇଛନ୍ତି । ଏଇ ଅଗଣିତ ଭକ୍ତମାନେ, ଆମେ ଯେପରି ପରମପିତା ଯୀଶୁଙ୍କୁ ପ୍ରାର୍ଥନା କରୁଁ, ସେପରି ତାଙ୍କୁ ପ୍ରେମ କରୁଛନ୍ତି ।"

ଅବଶେଷରେ ରଥ ଚଳିବା ଆରମ୍ଭ କଲା । ଭକ୍ତମାନଙ୍କ ଭିତରେ ରଥ ଦଉଡ଼ି ପାଇବା ଓ ଟାଣିବା ପାଇଁ ଟଣାଭିଡ଼ା ଲାଗିଲା । ରଥଟଣାଳୀ ଭକ୍ତମାନେ ରଥ ଟାଣି ଟାଣି ଥକି ପଡ଼ିଲେ । ଦଳେ ପୂଜକ ରଥ ସାମନାରେ ବସି ନାନା ଥଟ୍ଟାମଜା କଥା କହି ସେମାନଙ୍କୁ ଉତ୍ସାହିତ କରାଉଥାନ୍ତି । ପରେ ଭକ୍ତମାନେ ରଥ ଟାଣି ଟାଣି ନିଅନ୍ତି । ରଥଟଣାଳୀ ରଥ ଟାଣି ଟାଣି ଥକି ଗଲେ ଭକ୍ତମାନେ ରଥଟାଣନ୍ତି ଏବଂ ଏହିପରି ବ୍ୟବସ୍ଥାରେ ସେମାନେ ତାଳି ମାରିମାରି ରଥ ପାଖେ ପାଖେ ଯାଉଥାନ୍ତି । ଏହା ଏକ ପରମ୍ପରା । ମାଇଲିଏରୁ ଉର୍ଦ୍ଧ୍ୱବାଟ ରଥଗଡ଼ିବା ପରେ ସାହେବମାନେ ମଧ୍ୟାହ୍ନ ଭୋଜନ ପାଇଁ ଗଲେ ।

ପୁରୀରେ ଥିବାବେଳେ ଙ୍ଗରୁବାଲାକୁ ରନ୍ଧାରନ୍ଧି କରିବାକୁ ପଡୁ ନଥିଲା । ଶ୍ରୀମନ୍ଦିରରୁ ପ୍ରସାଦ ଆଣି ସେବନ କରୁଥିଲେ । ଙ୍ଗରୁବାଲାକୁ ମନ୍ଦିରର ପ୍ରସାଦ ଖୁବ୍ ରୁଚିକର ଲାଗୁଥିଲା । କାରଣ ସେମିତିକା ଖାଦ୍ୟ ରାନ୍ଧିବା ତାକୁ ଜଣା ନଥିଲା । ଯାତ୍ରୀ

ଗାଇଡ୍‌କୁ ପ୍ରସାଦ କିପରି ରନ୍ଧାଯାଏ ପଚାରି ସେ ବୁଝିଲା ଏବଂ କୃପା ତା ସ୍ତ୍ରୀକୁ ସେପରି ରନ୍ଧା ଶିଖେଇ ଦେବାକୁ ପଇସା ଯାଚିଲା ।

ମୋଗଲାଇ ରାନ୍ଧଣା ପ୍ରଣାଳୀରେ ମହାପ୍ରସାଦ ରନ୍ଧା ହୁଏ ବୋଲି ଗୋପନ ସମ୍ବାଦଟିଏ ସେ ଜାଣି ପାଇଲା । ମାତ୍ର ସେଇ ଖାଦ୍ୟର ସଂସ୍କୃତ ନାମ ସଂସ୍କରଣ କରି ଭକ୍ତ ତଥା ଯାତ୍ରୀମାନଙ୍କୁ ତାହା ବିକ୍ରୀ ଓ ବଣ୍ଟନ କରାଯାଉଥିଲା ।

ସେଠାରୁ ରନ୍ଧା ଶିଖିଗଲା ପରେ ଚଇରୁବାଳା ନିଜ ସ୍ୱାମୀକୁ ସେପରି ରନ୍ଧା ରୀତିମତ ରାନ୍ଧି ଖାଇବାକୁ ଦେଲା । ତେଣୁ କୃପାସିନ୍ଧୁ କ୍ରମେ କ୍ରମେ ମୋଟେଇବାରେ ଲାଗିଲା ।

ଭରପୂର ଭୋଜନ ପକେଇ କୃପା ତୁଷ୍ଟ ହୋଇ ଶୋଇଲା । ତୀର୍ଥଯାତ୍ରା ଦ୍ୱାରା କୃପାର ସବୁ ପାପ ଧୋଇ ଯାଇଛି ଓ ଭବିଷ୍ୟତର ବାଟ ଉଜ୍ଜ୍ୱଳ ହୋଇ ଯାଉଛି ଭାବି ସେ ସନ୍ତୁଷ୍ଟ ଥିଲା । ମୁଁ ଜାଣେ ପାଠକେ । ସେ କାହିଁକି ଏତେ ତୁଷ୍ଟ । ଆର ପରିଚ୍ଛେଦରେ ସେ କଥାକୁ ଅପେକ୍ଷା ରଖ ।

## ଚତୁର୍ଦ୍ଦଶ ପରିଚ୍ଛେଦ

ଭରପୂର ନିଦ ଭୋଗ କରି ସାରିବା ପରେ ନିଜର ଅଳସ ଭାଙ୍ଗିବା ପାଇଁ କପେ ଚା କରି ଆଣିବାକୁ କୃପା ତା'ର ସ୍ତ୍ରୀକୁ କହିଲା । ତାପରେ ଯାଇ ବାହାରେ ବାରଣ୍ଡାରେ ବସିଲା । ବାରଣ୍ଡାରେ ବସି ସେ ଚା ପିଉଛି, ଠିକ୍ ସେତିକିବେଳେ ଡେପୁଟୀଙ୍କର ଚପ୍ରାସୀ ଆସି ସମ୍ମାନ ଦେଇ ତାକୁ ସଲାମ ଠୁକିଲା । ପ୍ରତି ନମସ୍କାର ଜଣେଇ କୃପା ତାଙ୍କୁ ହାଲଚାଲ କଣ ବୋଲି ପଚାରିଲା ।

"ବାବୁ, ମୁଁ ଗୋଟାଏ କଥା ଭାବିଛି ଯେଉଁଥିରେ କି ବହୁତ ବେଶୀ ଲାଭ ମିଳିବ ।'

"କଥା କଣ ମିଆଁ ଜି ?"

ଆମ ସହକାରୀ ମାଜିଷ୍ଟ୍ରେଟ ତ ଜଣେ ଟୋକା ଲୋକ । ଇଂଲଣ୍ଡରୁ ଏଠିକି ସେ ଆସିବାର ଛମାସ ବି ହୋଇନି । ମୁଁ ଲକ୍ଷ୍ୟ କରୁଛି ବଡ଼ ସାହେବଙ୍କ ସହ ସେ ବାହାରକୁ ଗଲେ ସେଠା ସ୍ତ୍ରୀ ଯାତ୍ରୀମାନଙ୍କୁ ନିଠେଇ ନିଠେଇ ଦେଖୁଛନ୍ତି । ଯଦି ନାରୀଟି ସୁନ୍ଦରୀ ହୋଇଥାଏ ତ ତାଠାରୁ ଆଖି ଫେରାଉ ନାହାନ୍ତି ।

ତାର ଏକଥା ଶୁଣି କୃପାସିନ୍ଧୁ ମନେମନେ ସେ ଦେଖିଥିବା ସୁନ୍ଦରୀ ମାନଙ୍କ କଥା ମନେ ପକାଇଲା ।

"ଆରେ, ଏତ ସାଧାରଣ କଥା । ଏଥିରେ ଆଶ୍ଚର୍ଯ୍ୟ ହେବାର କଣ ଅଛି ?" କୃପା ଉତ୍ତର ଦେଲା ।

"ମୁଁ ଭାବୁଛି ଛୋଟ ସାହେବଙ୍କର ଏ ସ୍ୱଭାବ ଆମ ପାଇଁ ଫାଇଦାମନ୍ଦ ହେବ। ଯଦି ସେ ଯାହା ଇଚ୍ଛା କରନ୍ତି ଆମେ ତାଙ୍କ ପାଇଁ ଯୋଗାଡ଼ କରି ଦେବା ତ ?" ଚପ୍ରାସୀ ଆଗ୍ରହର ସହ କହିଲା ।

"ତୁମ ପରି ଛୋଟ ଜନ୍ମା ଲୋକ ପାଇଁ କାମଟିଏ ଏକା । ମୋତେ ଏମିତି କଥା ଆଉ କେବେ କହିବ ନାହିଁ ।" କୃପା ବିରକ୍ତି ପ୍ରକାଶ କରି କହିଲା ।

"ବାବୁ, ଆପଣ ଏତେ ରାଗିଯାଉଛନ୍ତି କାହିଁକି ? ମୁଁ ଯେଉଁ ସ୍ତ୍ରୀ ଲୋକଟି କଥା କହୁଚି ସେ ସାଧାରଣ ଝିଅ ନୁହେଁ । ମୋର ଏ ଯୋଜନାଟି ଏମିତି ସେମିତି ଯୋଜନା ନୁହେଁ । ସେଥିରୁ ଢ଼େର କିଛି କମେଇ ହେବ । କିନ୍ତୁ ଆପଣଙ୍କ ପରି ଲୋକଟିଏ ଲୋଡ଼ା ।"

"ହଉ ବସ୍ । ଭଲକରି ବୁଝାଇ କୁହ ।" କୃପା ତାକୁ ବସିବାକୁ କହିଲା ।

ଚପ୍ରାସୀଟି ପାହାଚ୍ ତଳୁ ଉଠି ବାରଣ୍ଡାରେ ଆସି ଚକାପକାଇ ବସି ଗଲା । "ବାବୁ, ପହିଲେ ଶୁଣନ୍ତୁ । ଜଣେ ବିରାଟ ହିନ୍ଦୁସ୍ଥାନୀ ଜମିଦାରଙ୍କର ପିଲାପିଲି କିଛି ନାହାନ୍ତି । ତେଣୁ ତାଙ୍କ ଅନ୍ତେ, ତାଙ୍କ ଜମିସବୁ ତାଙ୍କ ଖୁଡ଼ୁତା ପୁଅମାନେ ଭୋଗ କରିବେ । ସେମାନଙ୍କୁ ଜମିଦାର ଜମାରୁ ପସନ୍ଦ କରନ୍ତି ନାହିଁ । ତେଣୁ ସେ ଆଉ ଗୋଟାଏ ଯୁବତୀ ଝିଅକୁ ପୁଅଟିଏ ପାଇବା ଆଶାରେ ବିବାହ କରିଛନ୍ତି । ସେ କିନ୍ତୁ ଏବେ ବେଶ୍ ବୁଢ଼ା ହୋଇ ଗଲେଣି । ପ୍ରାତଃ ଯୌବନରେ ତାଙ୍କର ଅତ୍ୟଧିକ ସ୍ଖଳନ ଥିବାରୁ ସେ ସନ୍ତାନ ଜନ୍ମ ଲାଗି ଅକ୍ଷମ ମଧ । ଏବେ ତାଙ୍କର ସେ ସ୍ତ୍ରୀ ନିଜ ମା ଓ ଶାଶୂ ସହିତ ପୁରୀ ଆସିଛନ୍ତି । ତାଙ୍କର ଶାଶୂ ଜଣେ ବିଚକ୍ଷଣ ବୁଦ୍ଧିର ସ୍ତ୍ରୀ ଲୋକ । ନିଜ ପୁତୁରାକୁ ସେ ଦି ଆଖିରେ ଦେଖନ୍ତି ନାହିଁ । ଝିଅର ମା ମଧ ନିଜର ନାତି କି ନାତୁଣୀଟିଏ ଦେଖିବାକୁ ଉସ୍ତୁକ । ଏତେବଡ଼ ଜମିଦାରୀର ଉତ୍ତରାଧିକାରୀଟିଏ କେମିତି ଜନ୍ମ ହେବ ସେ ପାଇଁ ବ୍ୟଗ୍ର । ଝିଅକୁ କୌଣସି ମତେ ଗର୍ଭବତୀ କରିବା ଲାଗି ସେ ପୁରୀ ନେଇ ଆସିଛନ୍ତି । ତାହାପରେ ଝିଅକୁ ସ୍ୱାମୀ ପାଖରେ ଛାଡ଼ି ତାର ଗର୍ଭର ସନ୍ତାନ ଯେ ସ୍ୱାମୀର ଔରସରୁ ଜନ୍ମ ସେକଥା ପ୍ରମାଣ କରିବାକୁ ଇଚ୍ଛା କରନ୍ତି । ଆଉ ପୁଅଟିଏ ଯଦି ଜନ୍ମ ହୁଏ, ଜମିଦାରୀ ସମ୍ଭାଳିବା ଦାୟିତ୍ୱ ତାର ହେବ ।"

"ଏଇଟା ଗୋଟାଏ ପୁରୁଣା କୌଶଳ । ଗୋଟାଏ ଯୁବ ରସିକକୁ ଏ କାମ ଲାଗି ଯୋଗାଡ଼ କରିବା କି ବା କଥା ଯେ । ମୋ ପାଖକୁ ଏଇଥିପାଇଁ ଆସିଥିଲ ?"

"ବାବୁ, ମୋ ମତରେ ଏ କାମଟି ଦୁଇଟି ଉଦ୍ଦେଶ୍ୟ ପୂରଣ କରିପାରିବ । ପ୍ରଥମ କଥା ହେଲା ନାତି ମୁହଁ ଦେଖିବାକୁ ଉତ୍ସୁକ ସେ ବୁଢ଼ୀ ଦି'ଜଣଙ୍କୁ ଖୁସ୍ କରିବା ସହ, ଆମ ଯୁବମାଜିଷ୍ଟ୍ରେଟଙ୍କୁ ବି ଖୁସ୍ କରିହେବ ।"

"-ତୁମେ ପାଗଳ ହେଲ ମିଆଁ ? ଏକାମ ପାଇଁ ଡେପୁଟୀ ମାଜିଷ୍ଟ୍ରେଟଙ୍କୁ ମନେଇବା କଣ ସହଜ କାମ ?"

"ଓହୋ, ତାଙ୍କୁ ଏସବୁ କହିବା କଣ ଲୋଡ଼ା । କିନ୍ତୁ ଅନ୍ୟ କେହି ସାଧାରଣ ଲୋକ ପକ୍ଷେ ଏହା ସହଜ କାମ ନୁହେଁ। ଦେଖ, ଯଦି ଜଣେ ସାଧାରଣ ଝିଅ ସାହେବଙ୍କ ମନୋରଂଜନ ପାଇଁ ଯୋଗାଡ଼ କରିପାରିବି ତ ସେ ଝିଅକୁ ସେ କିଛି ଟଙ୍କା ଦେବେ ଓ ତହିଁରୁ ଝିଅଟି ମୋତେ ଅଧେ ଦେବ। କିନ୍ତୁ ଜଣେ ସାଧାରଣ ଯୁବକ ସେ ଜମିଦାର ସ୍ତ୍ରୀଟି ପାଇଁ ଯୋଗାଡ଼ କରିପାରିବି ତ ସେମାନେ ମୋତେ ବେଶ୍ କିଛି ମାଲ୍ ଦେବେ । ମୋ ଯୋଜନା ଅନୁଯାୟୀ ସବୁ କାମ ହୋଇଯିବ ଯଦି, ଝିଅଟି ତ କିଛି ନବନି - ଏଣେ ବୁଢ଼ୀ ଦି'ଜଣ ଯାହା ଦେବେ ଆପଣ ତାହା ନେବେ।"

'ମୋତେ ଏ କଥା କରିବାକୁ ଲଜ୍ୟା ଲାଗୁଛି । ମୁଁ ସେ ସ୍ତ୍ରୀ ଲୋକଟି ପାଖକୁ ଯିବିନି-ତାକୁ କୁହ, ସେ ମୋତେ ଭେଟିବ ।'

'ଆଛା ତେବେ, ତାଙ୍କର ଜଣେ ବୁଢ଼ୀ ଘରକରାଣୀ ଅଛି । ମୁଁ ଯାଏଁ । ମୋର ଯୋଜନା କଥା ତା ମାଧ୍ୟମରେ ଜମିଦାରଙ୍କ ମାଆ ଓ ଶାଶୂଙ୍କୁ ଜଣାଇବି ।'

ପ୍ରାୟ ଘଣ୍ଟାଏ ପରେ ଚପ୍ରାସୀଟି ଫେରି ଆସିଲା । 'ଆଜି ରାତିରେ ସମୁଦ୍ର କୂଳକୁ ଆପଣ ବୁଲିଯିବେ । ଜଣେ ସ୍ତ୍ରୀ ଲୋକ ଆପଣଙ୍କୁ ସେ ଦୁଇବୁଢ଼ୀଙ୍କ ପାଖକୁ ନେଇ ଯିବ ।' ଚପ୍ରାସୀ କୃପାକୁ କହିଲା ।

ସେଦିନ ସଂଧ୍ୟାରେ ଶୀଘ୍ର ରାତ୍ରିଭୋଜନ ସାରି କୃପା ସମୁଦ୍ରକୂଳକୁ ବୁଲିଗଲା । ବୁଢ଼ୀ ସ୍ତ୍ରୀଲୋକଟି ସହ ଦେଖା ହେବା ପରେ, ସେ କୃପାକୁ ନିକଟରେ ଥିବା ଏକ ଘରକୁ ନେଇଗଲା । ଭିତର କୋଠରୀରେ ଜମିଦାରଙ୍କ ସମ୍ପର୍କୀୟ ଦି'ଜଣ ବସିଥିଲେ। ସେମାନେ କୃପାକୁ ବସିବାକୁ କହିଲେ ।

"ଆପଣ ଆମ ବିଷୟରେ ସବୁ ଜାଣି ଆମକୁ ସାହାଯ୍ୟ କରିବାକୁ ଆସିଛନ୍ତି ଏହା ତ ବଡ଼ ଭାଗ୍ୟର କଥା ।" ସେମାନେ କୃତଜ୍ଞ ଭାବେ କହିଲେ ।

ଆଜ୍ଞା ମୁଁ ଆପଣମାନଙ୍କର ବିଶ୍ୱସ୍ତ ଭୃତ୍ୟ । ଆପଣମାନଙ୍କ ପାଇଁ ମୁଁ ଯାହା

ଯୋଗାଡ଼ କରିଛି ସେ କଥା ଜାଣିଲେ ଆଶ୍ଚର୍ଯ୍ୟ ହୋଇଯିବେ । ମୁଁ ଚାହେଁ ଯେ ଜମିଦାରୀ ସମ୍ଭାଳିବାକୁ ଯେଉଁ ସନ୍ତାନ ଜନ୍ମ ନେବ, ସେ ଅତ୍ୟନ୍ତ ଦକ୍ଷ, ସୁନ୍ଦର ଏବଂ ନିରୋଗ ହେବା ଦରକାର । ଏକାମ ପାଇଁ ଜଣେ ଦେବତା ପରି ଇଂରେଜ ଲୋକ କଣ ଭଲ ହେବ ନାହିଁ ?

"ଏତ ଅତି ଖୁସିର କଥା ।" ସ୍ତ୍ରୀ ଲୋକ ଦି'ଜଣ ଝିଅର ନବଯୁବତୀ ବୟସ ଓ ଦୁର୍ବଳ ସ୍ୱାସ୍ଥ୍ୟକୁ ଲକ୍ଷ୍ୟ ରଖି କହିଲେ ।

"ଏ ପାଇଁ କିଛି ଦେବାକୁ ବି ପଡ଼ିବନି-ସାହେବ ନିଜ କାମନା ପୂରଣ ପାଇଁ ଏକାମ ଖୁସିରେ କରିବେ ।"

ନିଜର ମିଥ୍ୟାବାଦୀତାଟା ପଦାରେ ପଡ଼ିଯାଉଛି ଭାବି ସେ ପୁଣି କହିଲା- "ଆପଣମାନେ କଣ ଭାବୁଛନ୍ତି ଯେ ସାହେବଙ୍କର କିଛି କାମ ନାହିଁ ଏବଂ ତାଙ୍କ ଚାହିଦା ମୁତାବକ ଝିଅ ତାଙ୍କୁ ମିଳେ ନାହିଁ ? କେଉଁଠି ଝିଅଟିଏ ଶାଶୂଘରୁ ପଳେଇଗଲେ ବା ବେଶ୍ୟାଘରୁ ଖସି ଆସିଲେ ପୁଲିସ ହାବୁଡ଼ରେ ପଡ଼େ । ପୋଲିସ ଆମ ସାହେବଙ୍କ ପାଖରେ ଏ ବିଷୟରେ ରିପୋର୍ଟ ଦିଏ । ଗୋରୀ ସୁନ୍ଦରୀ ଓ ନବଯୁବତୀ ନ ହେଲେ ସାହେବଙ୍କ ମନମାନେ ନାହିଁ । ଆପଣଙ୍କ ଝିଅ ଯଦି ସେମିତି ହୋଇ ନଥିବ ତ ସାହେବ ତାକୁ ଆଡ଼ ଆଖିରେ ବି ଚାହିଁବେ ନାହିଁ ।"

ବୁଢ଼ୀ ଦି'ଜଣ ପରସ୍ପରକୁ ଚାହିଁ ରହିଲେ । କୃପା ଏକଥା ଲକ୍ଷ୍ୟ କରୁଥାଏ ।

"ମୋ ଝିଅ ସୁନ୍ଦରୀ । ଅପେକ୍ଷାକୃତ ଅଳ୍ପ ବୟସ୍କା ।"

କୃପାସିନ୍ଧୁ ଅନ୍ଦାଜ ଲଗାଇ କଥାଟିଏ କହିଲା, 'ତମ ଝିଅ ଗୋରୀ ନୁହେଁ ବୋଲି ମୁଁ ଶୁଣୁଛି ।'

ଏଥର ସ୍ତ୍ରୀଲୋକ ଦି'ଜଣ ପରସ୍ପର ଚୁହାଁଚୁହିଁ ହେଲେ ।

- 'ଏକଥା ସତ, ମାତ୍ର ସେ ଯେ ସୁନ୍ଦରୀ ତାହା ନିଶ୍ଚିତ ।'

- 'ତେବେ ତ ଅଡୁଆ । ଆଚ୍ଛା ମୁଁ ଚେଷ୍ଟା କରୁଛି ।'

- 'ଆମକୁ କେତେ ଖର୍ଚ୍ଚ କରିବାକୁ ପଡ଼ିବ ?'

- 'ଦଶହଜାର ପଡ଼ିପାରେ ।' କୃପା ଉତ୍ତର ଦେଲା ।

- 'ତେବେ ବରଂ ଜଣେ ସାଧାରଣ ଯୁବକ ହେଲେ ଚଳିବ ।'

- 'ତାହା ହେଲେ ତ ତୁମକୁ ଆହୁରି ବେଶୀ ଟଙ୍କା ଖର୍ଚ୍ଚ କରିବାକୁ ହେବ । ବିଚାର କରି ଦେଖ, ସାହେବ ଶିକ୍ଷିତ ଓ ସମ୍ମାନାସ୍ପଦ । ସବୁଠୁ ବଡ଼ କଥାହେଲା ଏଠି ତୁମର ଏ ସବୁ କଥା ଗୋପନ ରହିପାରିବ । କିନ୍ତୁ ଜଣେ ସାଧାରଣ ଲୋକ କ୍ଷେତ୍ରରେ

ପିଲାଟି ରୋଗୀଣା ହୋଇ ମରିଯାଇ ପାରେ-ତେବେ ତ ତୁମ ପୁତୁରା ସବୁ ସମ୍ପତ୍ତି ଭୋଗ କରିବ । ଆଉ ସେ ସାଧାରଣ ପୁରୁଷଟି ତୁମ ନାତି ଯେ ଜାରଜ ସେକଥା ପ୍ରଘଟ କରିଦେଇ ପାରେ । ସମସ୍ତଙ୍କ ଆଗରେ କଚେରୀରେ ବି ଏକଥା ହୁଏତ କହି ଦେଇପାରେ ।'

'କେହି ତାକୁ କଣ ଦେଖି ପକାଇବେ ଯେ ଏମିତି ଘଟିବ ?'

'ସେ'ତ ନିଜେ ଘରଘର ବୁଲି ଏକଥା କହିବ ।'

'ଆମେ ତାକୁ ବିଷ ଦେଇ ମାରିଦେବୁ । କାମଟା ହାସଲ ହେଇଯାଏ କିପରି ଦେଖ ।'

କୃପାସିନ୍ଧୁ ଡରିଗଲା । ସେ ବୁଢ଼ୀଙ୍କର ଏ ଘୃଣ୍ୟ ମନୋବୃତ୍ତି କଥା ଜାଣିବାପରେ କିନ୍ତୁ ନିଜ ହାବଭାବରେ ସେକଥା ପ୍ରକାଶ କଲାନାହିଁ ।

'ବଡ଼ ଅବିଶ୍ୱାସ୍ୟ ଆଜ୍ଞା । କେତେ ଖୋଳତାଡ଼ ଓ ସନ୍ଦେହ ଘେରରେ ଆପଣମାନେ ପଡ଼ିବେ ଓ ଶେଷରେ ସତ ପଦାକୁ ଆସିବ ।'

'ତାହେଲେ, ସାହେବ ଜଣକୁ ଠିକ୍ କଲେ ଭଲ ହେବ ବୋଲି ମୁଁ ଭାବୁଛି । "ଝିଅର ମା' ମତ ଦେଲେ ।" ମୋ ନାତି ଗୋରା, ସୁନ୍ଦର ଓ ସ୍ୱାସ୍ଥ୍ୟବାନ୍ ହେବ । ତାର ବାପା ବି ପିଲାକୁ ଦେଖି ଖୁସି ହେବ ।'

ଆଉ ବୁଢ଼ୀଟି କହିଲା, 'ସେ କଥା ତ ଠିକ୍ ହେଲେ ଦଶହଜାର ଟଙ୍କାଟା ବେଶୀ କଷିଲେ ।'

- 'ଆପଣ ଯଦି ମୋର ସର୍ତ୍ତ ନ ରଖିବେ, ତେବେ କହୁଥିଲେ କାହିଁକି ?'

- 'ଆମେ ଆପଣଙ୍କ ପାଖକୁ ଯାଇଥିଲୁଁ ନା ଆପଣ ନିଜେ ଆସିଲେ ?'

- 'ସେ ସବୁ ଏକା କଥା ।'

ବୁଢ଼ୀ ଦି'ଜଣ କୃପାସିନ୍ଧୁଠାରେ ନିଜର ଯୋଜନା ପ୍ରକାଶ କରି ବଡ଼ ଭୂଲ କରିଚନ୍ତି ବୋଲି ବୁଝିସାରିଥିଲେ । ଏବେ ଏ ଲୋକ ତ ସାରା ଦୁନିଆକୁ ଜମିଦାରଙ୍କ ଉତ୍ତରାଧିକାରୀର ରହସ୍ୟ କହିଦେବ ।

'ଆଚ୍ଛା, ଯଦି ମୋ ବୋହୂର ଗର୍ଭ ନ ରହିଲା । ଆଉ ଯଦି ବି ରହିଲା, ତେବେ ଝିଅଟିଏ ଯଦି ହୁଏ ?' ବୁଢ଼ୀ ପଚାରିଲା ।

'ଦେଖ, ଆମେ ଏମିତି ସର୍ତ୍ତ ରଖିବା- ସାହେବଙ୍କ ପାଖକୁ ଝିଅ ଗଲେ ଦୁଇହଜାର ଦେବେ । ଗର୍ଭ ରହିଲେ ଆଉ ହଜାରେ । ପୁଅଟିଏ ହେଲେ ଆଉ ଆଠ ହଜାର । ଯଦି ଝିଅ ହୁଏ ତ ମୋଟେ କିଛି ଦେବାକୁ ପଡ଼ିବନି ।'

'ଏକଥାରେ ବୂଢ଼ୀ ଦି'ଜଣ ରାଜି ହେଲେ ।'

ସକାଳେ ଯୁବ ଡେପୁଟୀ ମାଜିଷ୍ଟ୍ରେଟ୍ ଜଳଖିଆ କରି ସାରିବା ପରେ ପରେ କୃପା ତାଙ୍କ ଚପ୍ରାସୀ ସହ ଯାଇ ତାଙ୍କୁ ସାକ୍ଷାତ କଲା । ସକାଳେ ସାହାବ ଖାଲି ଗୁଡୁରୁ ଗାଡୁରୁ ହେଉଥାନ୍ତି । କାରଣ ପୂର୍ବଦିନ ରାତ୍ରିରେ ତାଙ୍କୁ ଭଲଭାବେ ନିଦ ହୋଇ ନଥିଲା । ରାତି ସାରା ସେଇ ସୁନ୍ଦରୀ ତୀର୍ଥ ଯାତ୍ରୀଣୀ ଦୁଇ ଜଣଙ୍କ କଥା ମନେପଡୁଥିଲା । ଚପ୍ରାସୀଟି ବାରଣ୍ଡା ଉପରକୁ ଉଠି ସାହେବଙ୍କୁ ସାଲାମ ଠୁକିଲା ପରେ କଥା ଆରମ୍ଭ କଲା ।

'ମୋର ଛୋଟମୁଣ୍ଡରେ ଆପଣଙ୍କ ଆନନ୍ଦ ଉପଭୋଗ ଲାଗି ଗୋଟାଏ ବୁଦ୍ଧି ଢୋକିଛି ଆଜ୍ଞା । ଆପଣ ତ ସୁନ୍ଦରୀ ସୁନ୍ଦରୀ ତୀର୍ଥଯାତ୍ରୀ ସ୍ତ୍ରୀମାନଙ୍କୁ ଦେଖିଥିବେ । ଯଦି ଆଜ୍ଞା କରନ୍ତି ତ ସେମାନଙ୍କ ମଧ୍ୟରୁ ଜଣକୁ ଆପଣଙ୍କ ପାଇଁ ବୁଝି ଦେବି । ଖୁବ୍ କମ୍ ଖର୍ଚ୍ଚ ହେବ ।'

ତାର ଏ କଥାରେ ସାହେବ ଗର୍ଜି ଉଠି ଚେଆରଟା ଉଠେଇ କଚାଡ଼ି ଦେଲେ । ଚପ୍ରାସୀଟି ଦୌଡ଼ି ପଳେଇଲା । ସାହେବ ତମ ତମ ହୋଇ ତା' ପଛରେ ଗୋଡ଼େଇ ଗଲେ ଏବଂ ଜୋରରେ ଗୋଇଠାଟିଏ ପକେଇଲେ । ସେ ବାରଣ୍ଡା ତଳକୁ ଗଡ଼ିଗଡ଼ି ଯାଇ ରାସ୍ତାରେ ପଡ଼ିଲା ଓ ଉଠିପଡ଼ି ଦୌଡ଼ି ପଳେଇଲା । ସାହେବ ତାଙ୍କ ଚେ଼ଆରରେ ବସିବା ଉତାରେ କୃପାସିନ୍ଧୁ ତାଙ୍କ ପାଖକୁ ଯାଇ ତାଙ୍କୁ ଅଭିବାଦନ ଜଣେଇ ଠିଆ ହୋଇ ରହିଲା ।

ପ୍ରତି ନମସ୍କାର ଜଣେଇ ସାହେବ ତାକୁ ପଚାରିଲେ, 'ତୁମେ କିଏ ମୁଁ ତ ଚିହ୍ନିନାହିଁ ।'

'ମୁଁ ବାଲେଶ୍ୱର କଲେକ୍ଟରଙ୍କର ବ୍ୟକ୍ତିଗତ କିରାଣୀ । ଆପଣଙ୍କୁ ସାକ୍ଷାତ ଦର୍ଶନ କରିବାକୁ ଆସିଥିଲି ।'

'ହଁ, ହଁ, ମୁଁ ତୁମ ବିଷୟରେ ଶୁଣିଛି । ତୁମେ ତ ସବୁଠୁ ଆଗୁଆ ଷ୍ଟେନୋଗ୍ରାଫର ।'

'ଆପଣଙ୍କର ମହାନୁଭବତା ଏଥିରୁ ସ୍ପଷ୍ଟ... ସାର୍, ମୁଁ ସେ ଚପ୍ରାସୀର କଥା ସବୁ ଶୁଣିଲି । ମୋତେ ବି ଲାଜ ଲାଗୁଛି । ଆପଣଙ୍କର ତାକୁ ରାଗିବାର ଯଥେଷ୍ଟ କାରଣ ଅଛି ଆଜ୍ଞା । ମୁଁ ଛୋଟ ମୁହଁରେ ବଡ଼ କଥା କହି ଦେଉଛି ସାର୍...।'

'ହଁ, ମୁଁ ତ ଭୀଷଣ ରାଗିଯାଇଥିଲି ।'

ଆଉ ବେଶୀ ଦିନ ଏଠି ରହିଲେ ଆପଣ ଜାଣିପାରିବେ ଯେ ପୁରୀଟା ଖୁବ୍

ଖରାପ ଜାଗା । ଏଠାକୁ ବଡ଼ଘରର ସ୍ତ୍ରୀମାନେ ସେମାନଙ୍କ କାମନା ପୂରଣ କରିବାକୁ ଆସନ୍ତି । ମନ୍ଦିର ଭିତରେ ସ୍ତ୍ରୀମାନେ ସେମାନଙ୍କ ପ୍ରେମିକମାନଙ୍କୁ ଦେଖିବାକୁ ଆସନ୍ତି । ଯୁବକ ଭଦ୍ରଲୋକମାନେ ମଧ୍ୟ ରୋମାନ୍ସ କରିବାକୁ ସେଠାକୁ ଯାଆନ୍ତି ।

ସାହେବ ସେଇ ସୁନ୍ଦରୀ ଯାତ୍ରୀଣୀର ପ୍ରେମିକ ବୋଲି ନିଜକୁ କଳ୍ପନା କରିନେଲେ । 'ସେ ଚପ୍ରାସୀ ଜଣେ ନୀଚ ମୁସଲମାନ ଲୋକ । ଆପଣଙ୍କ ପାଇଁ ନୀଚ ସ୍ତ୍ରୀକୁ ଯୋଗାଡ଼ କରିଦେଇ କିଛି ପଇସା ପାଇବ । ମୁଁ ଆପଣଙ୍କ ପାଇଁ ଜଣେ ସୁନ୍ଦରୀ ଉଚ୍ଚ ବଂଶର ସ୍ତ୍ରୀ ଲୋକ ଠିକ୍ କରି ପାରିବି ।'

ଏ କଥା ଶୁଣି ସାହେବ ରାଗି ଉଠିବା କଥା ମାତ୍ର ଯୁବତୀ ଭୋଗର ଲାଳସା ତାଙ୍କର ବଳବତ୍ତର ହୋଇ ଉଠିଲା ।

ସେ କହିଲେ, 'ଏସବୁ ବାଜେ କଥା କଣ କହୁଛ ହୋ ।'

ତାଙ୍କର ଦୋଦୋ ପାଞ୍ଚ ଭାବ ଦେଖି କୃପାସିନ୍ଧୁ ସାହସ ପାଇଗଲା ଓ କହିଲା–

'ସେ ଜଣେ ସୁନ୍ଦରୀ ତନ୍ୱୀ । ଆପଣ ନିର୍ଦ୍ଦେଶ ଦେଲେ ମୁଁ ଆଜି ରାତିରେ କଥା ଠିକ୍ କରି ତାକୁ ଭେଟେଇ ଦେବି ।'

– 'ମୁଁ ତାକୁ ଆଣିବି ନାହିଁ । ସେଇ ଅର୍ଡରଲି ହିଁ ଆଣିବ । ଆପଣ ତାକୁ ଖାଲି ପଚଶଟି ଟଙ୍କା ଦେବେ । ଆପଣ ଜଣେ ଅତ୍ୟନ୍ତ ଭଦ୍ର ଓ ଭଲ ଅଫିସର । ଦିନେ ନା ଦିନେ ଲେଫଟନାଣ୍ଟ ଗଭର୍ନର ହେବେ ।'

ଏ କଥା ଶୁଣି ଯୁବସାହେବ ଉତ୍ତ୍ୟକ୍ତ ହୋଇ ତାକୁ ଗୋଇଠାଏ ପକେଇବେ ବୋଲି ଭାବୁଥିଲେ । ହେଲେ ନାରୀ ଲାଳସା ସମ୍ବରଣ କରି ନ ପାରୁ ଥିବାରୁ ସେ ନିଜକୁ ଆୟତ୍ତାଧୀନ ରଖିଲେ ।

'ଆଚ୍ଛା, ତେବେ ରାତି ଦଶ ବେଳେ... ।' କୃପା ସେଠୁ ଯାଇ ଚପ୍ରାସୀକୁ ଗୋଟାଏ ବଟୀଖୁଣ୍ଟ ଦେଖାଇ ଦେଲା ପରେ, ସେ ସେଇ ବୁଢ଼ୀ ସ୍ତ୍ରୀ ଲୋକ ଦି'ଜଣ ରହୁଥିବା ସମୁଦ୍ର ପାଖ ଘରଟିକୁ ଗଲା । ସେମାନଙ୍କୁ ଟଙ୍କା ସଜିଲ କରିସାରି ରାତି ଦଶଟାରେ ପ୍ରସ୍ତୁତ ହୋଇ ରହିବାକୁ କହିଲା ।

ରାତି ଦଶଟାବେଳେ କୃପା ସେ ସମୁଦ୍ରକୂଳସ୍ଥ ଘରକୁ ଯାଇ ପ୍ରଥମେ ହଜାରେ ଟଙ୍କା ଗଣିନେଲା । ପ୍ରତ୍ୟେକ ଟଙ୍କାକୁ ଉପରତଳ ପରଖି କରି ଗଣୁଥିଲା । ତାପରେ ଝିଅଟିକୁ ନେଇଯାଇ ବଟୀଖୁଣ୍ଟ ତଳେ ଚପ୍ରାସୀକୁ ହସ୍ତାନ୍ତର କରିଦେଲା ।

ପନ୍ଦର ଦିନ ପରେ ଗୋଟାଏ ଲୋକ ବାଲେଶ୍ୱର ଆସି ତାକୁ ଆଉ ହଜାରେ ଟଙ୍କା ଦେଇଗଲା । ତାହାପରେ ନିର୍ଦ୍ଦିଷ୍ଟ ସମୟରେ ସେଇ ଲୋକଟି ପୁଣି ଆସି ତାକୁ

ଆଠ ହଜାର ଟଙ୍କା ଦେଇଗଲା । ଏ ଟଙ୍କାକୁ ନେଇ କୃପାସିନ୍ଧୁ ଯଦୁନାଥ ମହାପାତ୍ର ଜମିଦାରଙ୍କୁ ଅଧିକ ସୁଧରେ କରଜ ଦେଲା ।

ବାବୁ ଯଦୁନାଥ ମହାପାତ୍ର ନିଜ ପୁଅ ପାଇଁ ଜମିଦାରୀ ବଂଚେଇବାକୁ ଯାଇ ସେ ଟଙ୍କା ନେଲେ ଓ ମାସକୁ ମାସ ସୁଧ ଗଣି ଚାଲିଲେ ।

## ପଞ୍ଚଦଶ ପରିଚ୍ଛେଦ

କଲେକ୍ଟର ପୁରୀରୁ ବାଲେଶ୍ୱର ଫେରି ଆସିବାର ମାସକପରେ କମିଶନର ସାହେବ ବାଲେଶ୍ୱର ଗସ୍ତରେ ଆସିଲେ ଏବଂ ସର୍କିଟ ହାଉସରେ ରହିଲେ । କଲେକ୍ଟର ପ୍ରଥମେ ତାଙ୍କୁ ଅଭିନନ୍ଦନ ଜଣାଇବାକୁ ଗଲେ । କାଳେ ଦରକାର ପଡ଼ିପାରେ ତେଣୁ କୃପାସିନ୍ଧୁକୁ ସାଙ୍ଗରେ ନେଲେ । ସାହେବମାନେ ଡ୍ରଇଁ ରୁମରେ ବିଚାର ଆଲୋଚନା ଓ ଗପସପ କରୁ ଥିବାବେଳେ ବାରଣ୍ଡାରେ କୃପାସିନ୍ଧୁ ସେମାନଙ୍କର କଥାବାର୍ତ୍ତା ଶୁଣିପାରୁଥିଲା ।

କଲେକ୍ଟର କହୁଥିଲେ, 'ସାର୍ ଶୀତଦିନିଆ ବଦଳି ବିଷୟରେ କ'ଣ କାର୍ଯ୍ୟକ୍ରମ ସ୍ଥିର ହୋଇ ଗଲା ?'

ଏ ପର୍ଯ୍ୟନ୍ତ ସେମିତି ନିର୍ଦ୍ଦିଷ୍ଟ ଭାବେ କିଛି ହୋଇ ନାହିଁ । କିନ୍ତୁ ମୁଁ କ'ଣ ସବୁ ସୁପାରିଶ କରିବି, ସେକଥା ତମକୁ କହିପାରିବି । ତମେ କଣ କଟକ ଯିବାକୁ ଇଛା କରୁଛ ?' କମିଶନର ଉତ୍ତର ଦେଲେ ।

– 'ନିଶ୍ଚୟ ସାର୍ ଖୁସିରେ ଯିବି ।'

– 'ସ୍ମିଥ ଓଡ଼ିଶାରେ ବହୁଦିନ ରହିଲେଣି । ତାଙ୍କୁ ବିହାରରେ କେଉଁସ୍ଥାନକୁ ବଦଳି କରିବାକୁ ସୁପାରିଶ କରିବାକୁ ହେବ । ବ୍ରାଉନ୍ ଏବଂ ରବିନ୍‌ସନ ଛୁଟିରୁ ଫେରିବେ । ସେମାନଙ୍କ ଭିତରୁ କେହି ଜଣଙ୍କୁ ତାଙ୍କ ଜାଗାକୁ ଦେବାକୁ ହେବ । କିନ୍ତୁ ତମ ପାଇଁ ମୁଁ ନିଶ୍ଚୟ ସୁପାରିଶ କରିବି ।'

'ଧନ୍ୟବାଦ ସାର୍ ।'

'ବାଲେଶ୍ୱର ଗୋଟାଏ ଛୋଟ ଜିଲ୍ଲା । ବଡ଼ ଜିଲ୍ଲାରେ ଯାଇ ତମେ କଣ କରିପାରିବ ତାହା ତୁମକୁ ପ୍ରମାଣିତ କରିବାର ସୁଯୋଗ ଏବେ ତୁମକୁ ଦିଆଯିବା କଥା ବୋଲି ମୁଁ ଭାବୁଛି । କଟକରେ ବେଶୀ କାମ କରିବାକୁ ପଡ଼ିବ ।'

'କାମ କରିବାକୁ ମୁଁ ଭୟ କରେ ନାହିଁ, ସାର୍ । ମୁଁ କଟକରେ ଭଲ ଚଳେଇ ପାରିବି ଭାବୁଛି ।'

'ବେଶ୍ ଭଲ କଥା । ଏମିତି ବ୍ୟବସ୍ଥା ତେବେ କରିଦେବା ।'

ଏସବୁ ଶୁଣିବାପରେ କୃପା ତାର ଡେପୁଟୀ ମାଜିଷ୍ଟ୍ରେଟ ଶ୍ୱଶୁରଙ୍କୁ ଚିଠି ଲେଖି ଏ ସୁଯୋଗର ସଦୁପଯୋଗ କରିବ ବୋଲି ଭାବିଲା । ସ୍ମିଥ ସାହେବ କେମିତି ହେଲେ କଟକ କଲେକ୍ଟର ହୋଇ ଯାଆନ୍ତୁ, ସେ ଦିଗରେ କୃପାର ଶ୍ୱଶୁର ଲାଗିପଡ଼ିଲେ ।

ତେଣୁ ସ୍ମିଥ ସାହେବଙ୍କୁ ଯାଇ ସେ କହିଲେ, 'ସାର୍ ଜଣେ ଭଲ ଷ୍ଟେନୋଗ୍ରାଫର ନ ପାଇ ଆପଣ ବଡ଼ ଅସୁବିଧାରେ ପଡ଼ୁଛନ୍ତି । ମୋର ଜଣେ ଜୋଇଁ ବାଲେଶ୍ୱର କଲେକ୍ଟରଙ୍କର ଷ୍ଟେନୋଗ୍ରାଫର ଅଛି । ମୁଁ କହିଲେ, ସେ କଟକକୁ ବଦଳି ପାଇଁ ଦରଖାସ୍ତ କରିବ ।'

'ବାଲେଶ୍ୱର କଲେକ୍ଟର ତାଙ୍କୁ କ'ଣ ଛାଡ଼ିବେ ! ଥରେ ପଚାରିଲେ କ୍ଷତି କଣ ।' ସ୍ମିଥ୍ ସାହେବ ଉତ୍ତର ଦେଲେ ।

ତେଣୁ ସେ ନନ୍ ଅଫିସିଆଲ ଚିଠିଟିଏ ବାଲେଶ୍ୱର କଲେକ୍ଟରଙ୍କ ପାଖକୁ ପଠେଇଲେ । ଚିଠିପାଇ ବାଲେଶ୍ୱର କଲେକ୍ଟର କୃପାକୁ ପାଖକୁ ଡକାଇ ପଠେଇଲେ ।

'କୃପା ବାବୁ, ତମେ କଟକ କଲେକ୍ଟରଙ୍କ ଷ୍ଟେନୋ ହେବାକୁ ଇଚ୍ଛା କରୁଛ କି ?'

କୃପା ଉତ୍ତର ଦେଲା, 'ଆପଣ କିମ୍ବା ମେମ୍ ସାହେବ, ଦୁଇଜଣ ମୋ ପ୍ରତି ଖୁବ୍ ଦୟାଶୀଳ ଓ ଶ୍ରଦ୍ଧାବାନ୍ । ଆପଣ ଏଠାରେ ଯେତେଦିନ ଥିବେ, ମୁଁ ବାଲେଶ୍ୱର ଛାଡ଼ି ଯିବି ନାହିଁ ।'

'ବେଶୀ ଦରମା ହେଲେ ବି କଣ ଯିବନି ?'

'ନା, ବେଶୀ ଦରମା ହେଲେ ବି ଯିବିନି ।'

'ଯଦି ମୋର ଏଠୁ ବଦଳି ହୋଇଯାଏ ତ ?'

'ତେବେ ଆପଣ ଯେଉଁଠିକୁ ଯିବେ, ମୁଁ ଆପଣଙ୍କ ସାଂଗେ ସାଂଗେ ଯିବି ।'

'ଯଦି ମୁଁ ଛୁଟୀ ନେଇ ଇଂଲଣ୍ଡ ଚାଲିଯାଏଁ ତେବେ କଣ ତୁମେ ମୋ ସହ ସେଠିକୁ ଯିବ ?'

- 'ସେ କ୍ଷେତ୍ରରେ ମୋତେ କ୍ଷମା କରିବେ ସାର୍ ।'

- 'କାହିଁକି ? ତୁମେ କଣ ଇଂଲଣ୍ଡ ଦେଖିବାକୁ ଇଚ୍ଛା କରନାହିଁ ?'

'ମୁଁ ଓ ମୋର ଆଉ ଦୁଇ ଭାଇ, ସମସ୍ତେ ମିଳିମିଶି ଗୋଟାଏ ପୈତୃକ ଘରେ

ରହୁଁ । ବର୍ଷରେ ମୁଁ ଦୁଇଥର ଘରକୁ ଯାଏଁ । ପୂଜା ଓ ବଡ଼ଦିନ ଛୁଟିମାନଙ୍କରେ ଆମେ ତିନି ଭାଇ ମିଶି ଘରର ହାନିଲାଭ ସମସ୍ୟା ବିଷୟରେ ଆଲୋଚନା କରୁଁ । ଏଭଳି ଭାବେ ଆମର ଏକାନ୍ନବର୍ତ୍ତୀ ପରିବାରଟି ପରିଚାଳିତ ହୁଏ । କିନ୍ତୁ ସାର୍, ମୁଁ ଯଦି ଏଠୁ ହଜାର ହଜାର କୋଶ ଦୂରରେ ରହିବି, ତେବେ ଘରେ ତେଣେ ସବୁ ଅଡୁଆ ତଡୁଆ ହୋଇଯିବ ।'

'ଆଚ୍ଛା ଠିକ୍ ଅଛି । ମୁଁ ଫେରିଯିବାକୁ ଚାହେଁ ନାହିଁ । ମାତ୍ର ମୋର ବଦଳି ହେବାର ଅଛି ।' ସାହେବ ହସି ହସି କହିଲେ ।

'ସେ ସ୍ଥଳେ, ମୁଁ ନିଶ୍ଚୟ ଆପଣଙ୍କ ସହିତ ବଦଳି ହୋଇ ଯିବାକୁ ଇଚ୍ଛା କରିବି ।' କୃପାସିନ୍ଧୁ ଚାଲିଯିବା ପରେ ସାହେବ ତାଙ୍କ ସ୍ତ୍ରୀଙ୍କୁ କହିଲେ, ଆମ ଷ୍ଟେନୋ ଜଣକ କେଡ଼େ ଭଲ ଲୋକ କହିଲ । ଏଡ଼େ ପ୍ରଭୁଭକ୍ତ ଯେ, ଆମକୁ ଛାଡ଼ି ବେଶୀ ଦରମା ହେଲେ ବି ଅନ୍ୟଆଡ଼େ ଯିବ ନାହିଁ କହୁଛି ।'

ମେମ୍ ସାହେବ କହିଲେ, 'ଆମ ପ୍ରତି ତାର ଏକନିଷ୍ଠ ଶ୍ରଦ୍ଧା ଭାବ ରହିଛି ।'

'ହଁ, ସେଇକଥା ମୁଁ ବି କହୁଛି । ଆମେ ଯୁଆଡ଼େ ଯିବୁ, ସେ ଆମ ସହ ସେଠାକୁ ଯିବାକୁ ପ୍ରସ୍ତୁତ ।'

କିଛିଦିନ ପରେ କମିଶନର ଅଫିସରେ ଥିବା ସେ କିରାଣୀ ବଂଧୁଠାରୁ କୃପା ଖବର ପାଇଲା ଯେ ତାର ସାହେବଙ୍କର କଟକ ବଦଳି ହେବାର ସ୍ଥିର ନିଶ୍ଚିନ୍ତ ହୋଇ ଯାଇଛି । ସଂଗେସଂଗେ, ସେ ଗୋଟାଏ ଦରଖାସ୍ତ ଲେଖି ତାହା ଠିକ୍ ଭାବରେ ଟାଇପ୍ ହୋଇଛି କି ନାହିଁ ବାରମ୍ବାର ପଢ଼ିଲା । ଚିଠିଟି ଏପରି ଥିଲା,

କଟକ କଲେକ୍ଟର ସମୀପେଷୁ...

(ବାଲେଶ୍ୱର କଲେକ୍ଟରଙ୍କ ମାଧ୍ୟମରେ)

ମାନନୀୟ ମହାଶୟ,

ଯଥାମାନ୍ୟତା ସହ ବିନମ୍ର ନିବେଦନ କରୁଛି କି ମୋତେ ଆପଣଙ୍କ ଦୟାଶୀଳ, କରୁଣାମୟ ଚରଣତଳେ ଏହି ଦରଖାସ୍ତଟି ପେଶ୍ କରିବାକୁ ଅନୁମତି ଦିଆଯାଉ ।

ନିବେଦନ ଏହିକି ଯେ ମହାମାନ୍ୟ ସରକାରଙ୍କ ପାଖରେ ଜଣେ ନବୀସ ହିସାବରେ ୧୮୯୪ରେ ମୋର ନିଯୁକ୍ତି ହୋଇଥିଲା ।

ଏହିକି ଯେ ୧୮୯୭ରେ ନିବେଦକ ସରକାରୀ ଚାକିରୀରେ ସ୍ଥାୟୀତ୍ୱ ପାଇ ପାରିଥିଲି । ୧୯୧୧ରେ ବାଲେଶ୍ୱରର ମାନ୍ୟବର କଲେକ୍ଟର ଏହି ନିବେଦନକୁ ନିଜ ଷ୍ଟେନୋଟାଇପିଷ୍ଟ ରୂପେ ନିଯୁକ୍ତି ଦେଇଥିଲେ ।

ମହାଶୟ, ନିବେଦକ ତାର ଦାୟିତ୍ୱ ସୁଚାରୁ ରୂପେ ତୁଲାଇ ଅଫିସରମାନଙ୍କୁ ସନ୍ତୁଷ୍ଟ ରଖି ପାରିଛି । ଏହିକି ଯେ, ସେ ଓଡ଼ିଶାର ଜଣେ ଜଣାଶୁଣା ଭଲ ଷ୍ଟେନୋଟାଇପିଷ୍ଟ। ଏହା ସର୍ବଜନ ବିଦିତ ଓ ନିଃସନ୍ଦେହରେ କୁହାଯାଇପାରେ ।

ନିବେଦକ ଶୁଣିଅଛି ଯେ ମହାଶୟ ଜଣେ ସୁଦକ୍ଷ ଷ୍ଟେନୋ ଅଭାବରୁ ବହୁବିଧ କାର୍ଯ୍ୟ ସୁଚାରୁରୂପେ ସମ୍ପନ୍ନ କରିବାରେ ଅସୁବିଧା ଭୋଗ କରୁଛନ୍ତି ।

ତେଣୁ ମୁଁ ସମ୍ମାନ ଓ ବିନମ୍ରତାର ସହ ନିବେଦନ କରୁଛି କି ମୋର ଏହି ଅର୍ଜିକୁ ବିଚାରକୁ ନିଆଯାଉ ।

ପ୍ରାର୍ଥନା ଏହିକି ଯେ ନିବେଦକକୁ ବାଲେଶ୍ୱର କଲେକ୍ଟର ଇଜଲାସରୁ କଟକ କଲେକ୍ଟର ଇଜଲାସକୁ ଷ୍ଟେନୋ ଟାଇପିଷ୍ଟ ସ୍ଥାନରେ ମୁକରିର ହୋଇ ଯିବାକୁ ଅନୁମତି ଦିଆଯାଉ । ତାହା ହେଲେ, ନିବେଦକ ତାର ପରିବାରବର୍ଗ ସହିତ ଯାଇ ସ୍ୱକାର୍ଯ୍ୟରେ ମନୋନିବେଶ କରିବା ସହିତ ମହାଶୟଙ୍କର ଦୀର୍ଘ ଜୀବନ ଓ ଉନ୍ନତି କାମନା କରି ରହିବ ।

ଏହା ମହାଶୟଙ୍କର ପୟରରେ ନିବେଦକର ପ୍ରାର୍ଥନା ।

ବଂଶବଦ

କୃପାସିନ୍ଧୁ ମହାନ୍ତି ।

ଦରଖାସ୍ତ ଲେଖିସାରି ଡ୍ରରେ ରଖି କୃପା ତାଲା ଠୁଁକି ଦେଲା । ଠିକଣା ସମୟରେ ଦରଖାସ୍ତଟି ପେଶ୍ କରାଯିବ । ତହିଁପରଦିନ କଲେକ୍ଟର ସାହେବ ମୁଖ୍ୟ ସଚିବଙ୍କଠାରୁ ଗୋଟାଏ ସଟ ଲେଟର ପାଇଲେ । ସେଥିରେ ସେ ବାଲେଶ୍ୱରରୁ ବଦଳି ହୋଇ କଟକ ଯିବାର ଖବର ଥିଲା । ସଂଗେ ସଂଗେ ସେ କୃପାସିନ୍ଧୁକୁ ଖବର ଦେବାରୁ । କୃପା ନିଜର ଦରଖାସ୍ତ ପେଶ୍ କରି ଦେଲା । କଲେକ୍ଟର କୃପାର ବିଶ୍ୱସ୍ତତାରେ ମୁଗ୍ଧ ହୋଇ ତତ୍କ୍ଷଣାତ୍ ଚିଠିଟି ଉପରକୁ ସୁପାରିଶ କରିଦେଲେ ।

ଏହିପରି ଭାବରେ କୃପା କଟକକୁ ବଦଳି ହୋଇ ଯିବାର ମସୁଧା କରିନେଲା। ଯେଉଁଠିଯାଇ ସେ ଖୁବ୍ ବେଶୀ ଫାଇଦା ଉଠାଇ ପାରିବ । କମିଶନର ଅଫିସ୍‌ର ସେ ବଂଧୁ ମାଧ୍ୟମରେ କଟକରେ ଗୋଟାଏ ଛୋଟ ଭଡ଼ାଘର ଠିକ୍ କରିନେଲା । ଘରଟି କଲେକ୍ଟରଙ୍କ ଅଫିସକୁ ବେଶୀ ଦୂରରେ ନଥିଲା ଓ ଠିକ୍ ବାଲେଶ୍ୱର ଘର ଭଳି ଥିଲା।

ପୂଜାଛୁଟି ପରେ ପରେ ସେ ସେଇ ଘରଟିକୁ ଉଠିଗଲା । ସାଥୀରେ ତାର ସ୍ତ୍ରୀ, ଗାଈ ଓ ପୁରୁଣା ଚାକରାଣୀଟିକୁ ବି ନେଇଗଲା। ତାର ସାହେବ ଓ ସାହେବାଣୀ ଗୋଟାଏ ବିରାଟ ଦ୍ୱିତଳ ପ୍ରାସାଦରେ ରହୁଥିଲେ। ଦୃଶ୍ୟପଟର ପରିବର୍ତ୍ତନରେ ଚାରୁବାଳା

ଖୁବ୍ ଖୁସି ହେଲା । ମହାନଦୀ,ବଡ଼ବଡ଼ ଗଛ ତୋଟା, ଏବଂ ଦୂରରେ ଦିଶୁଥିବା ସାରିସାରି ପାହାଡ଼ ତାକୁ ଖୁବ୍ ଆନନ୍ଦ ଦେଉଥିଲା । ଘରୁବାଲା ସବୁବେଳେ ଶାନ୍ତ ଓ ଧୀର ସ୍ଥିର । ତେଣୁ ସମୟ ମିଳିଲେ ତାର ସ୍ୱାମୀ ତା ପାଖରେ ବସିବାକୁ ସୁଖ ମଣୁଥିଲେ । ତାଙ୍କ ନୂଆ ବସାଘରଟି ମହାନଦୀଠାରୁ ବେଶୀ ଦୂର ନ ଥିବାରୁ କୃପାସିନ୍ଧୁ ଅବସର ସମୟରେ ବନସୀଖଡ଼ା ଧରି ମାଛ ଧରିବାକୁ ଭଲପାଉଥିଲା ।

ନିଜର ମୂଳ ଉଦ୍ଦେଶ୍ୟଟିକୁ କୃପାସିନ୍ଧୁ କୌଣସି ପରିସ୍ଥିତିରେ ବି ଭୁଲି ଯାଇ ନଥିଲା । ସେଇଥିପାଇଁ ଖାସ୍ ସିଏ ଏଠାକୁ ବଦଳି ହୋଇ ଆସି ଥିଲା । ପ୍ରଥମେ ସେ କଲେକ୍ଟରଙ୍କର ଅର୍ଦ୍ଦଳୀ ମାନଙ୍କ ସହ ବନ୍ଧୁତା ରଖିଲା । ଏବେ ଯେଉଁମାନେ ସାହେବଙ୍କୁ ସାକ୍ଷାତ ପାଇଁ ଆସିଥିଲେ, ସେମାନଙ୍କ ପାଇଁ ବାଲେଶ୍ୱରରେ କରିଥିବା ବ୍ୟବସ୍ଥା ଅନୁସାରେ ସେ ବ୍ୟବସ୍ଥା କଲା । ତେଣୁ ସାକ୍ଷାତ ପାଇଁ ଆସୁଥିବା ଲୋକଙ୍କଠାରୁ ସେ ନିୟମିତ କିଛି ଅର୍ଥ ଆଦାୟ କଲା । କଟକ ଯେହେତୁ ଗୋଟାଏ ବଡ଼ ଜିଲ୍ଲା, କଲେକ୍ଟରଙ୍କ ପାଖକୁ ବହୁ ସଂଖ୍ୟାରେ ବଡ଼ ବଡ଼ ଧନୀ ଲୋକମାନେ ଆସୁଥିଲେ । ତାର ପର ପଦକ୍ଷେପଟି ହେଲା ଜିଲ୍ଲାର ଯେତେସବୁ ବଡ଼ ବଡ଼ିଆ ଲୋକଙ୍କ ସହ ମିଳାମିଶା କରିବା । ବିଶେଷତଃ, ବଡ଼ବଡ଼ିଆ, ଅଫିସରଙ୍କ ସହ ସାକ୍ଷାତ କରିବା ଥିଲା ତାର ଉଦ୍ଦେଶ୍ୟ ।

ସେଇ ବଡ଼ ଅଫିସରମାନଙ୍କ ଭିତରେ ଥିଲେ ଜଣେ ଗୋପାଳକୃଷ୍ଣ ମହାନ୍ତି, ଏସ୍‌ପି । ତାଙ୍କୁ ସରକାର ରାୟସାହେବ ଉପାଧୀରେ ଭୂଷିତ କରିଥିଲେ । ଦୟାନିଧିର ସ୍ତ୍ରୀଙ୍କ ଆଡ଼ୁ ସେ ତାର ପରିଚିତ ହେଲେ । ଏଇ ସମ୍ପର୍କ ବଳରେ ସେ ତାଙ୍କ ଘରକୁ ଯିବା ଆସିବା ଆରମ୍ଭ କଲା । ସେମାନେ ତାକୁ ବି ବେଶ୍ ଆଦର ଅଭ୍ୟର୍ଥନା କଲେ । ରାୟସାହେବ ପୋଲିସ ଏସ୍‌ପି ଥିବାରୁ ସେ ତାଙ୍କ ପଦବୀର ଫାଇଦା ଉଠାଉଥିଲେ ଏବଂ ବହୁ ବଡ଼ଲୋକଙ୍କର ଭିତିରି ଖବର ସଂଗ୍ରହ କରି ପାରୁଥିଲେ । ସେ କୃପାସିନ୍ଧୁକୁ କଥା ଦେଇଥିଲେ ଯେ ସଂଗୃହୀତ ଖବରକୁ ଉପଯୋଗ କରାଯିବ ।

ନୂଆ କଲେକ୍ଟର କଟକ ବଦଳି ହୋଇ ଆସିବା ବେଳେ କୃପାକୁ ମଧ୍ୟ ସାଂଗରେ ବଦଳି କରି ଆଣିଥିବାରୁ ଲୋକଙ୍କର ଧାରଣା ହେଲା ଯେ କୃପା କଲେକ୍ଟରଙ୍କର ବିଶ୍ୱାସୀ ଲୋକ ଏବଂ କଲେକ୍ଟରଙ୍କ ପାଖରେ ତାର ଖୁବ୍ ଆବଶ୍ୟକ ହାତ ଅଛି । ଲୋକଙ୍କର ଏହି ଧାରଣା କୃପାକୁ ନିଜ ଫାଇଦା ଉଠାଇବାରେ ସହାୟକ ହେଲା ।

ପୁନଶ୍ଚ, ସେ ଜଣେ କିରାଣୀର ନିତିଦିନିଆ ଶାନ୍ତିର ଜୀବନ କଟାଇ ସନ୍ତୁଷ୍ଟି

ଲାଭ କଲା । ବିଶେଷତଃ ଗରୁବାଳା ଯୋଗୁଁ ସେ ଶାନ୍ତିରେ ଥିଲା । ଅଫିସ ଫେରନ୍ତି ଆଉ ଦୁଇଜଣ କିରାଣୀ ସହ ଅପରିଷ୍କାର ବସାଘରେ ଆଉ ରହିବାକୁ ପଡ଼ିଲା ନାହିଁ । ଅଫିସରୁ ଫେରି ସେ ତାର ସଫାସୁତୁରା ଛୋଟ ଘରେ ହସହସ ସ୍ତ୍ରୀ ସହିତ ମିଳି ସୁଖରେ ରହିଲା । ଗରୁବାଳା ମଧ୍ୟ ତାର ସେ ଛୋଟ ଘରଟି ଯତ୍ନରେ ସଜାଡ଼ି ସୁତର କରି, କୃପା ପାଇଁ ଭଲି ଭଲି ରନ୍ଧା ରାନ୍ଧି ରଖୁଥିଲା । ତେଣୁ ଅଫିସରୁ ଫେରି ଘରେ ସେ ଆନନ୍ଦରେ ରହୁଥିଲା । ବେଳେବେଳେ ଟୁର୍ ଯିବାକୁ ପଡୁଥିବାରୁ, ତାର ଏଇ ସନ୍ତୋଷମୟ ଜୀବନଧାରା ବ୍ୟାହତ ହେଉଥିଲା । ବର୍ଷାଋତୁଟା କଟକରେ ଟୁର କରିବାର ଋତୁ । ନଈସବୁ ସେ ସମୟରେ ପାଣିରେ ଟୁଳୁଟୁଳୁ ହେଉଥାନ୍ତି । ତେଣୁ ନୌକାରେ ବସି ବୁଲିବା ସେତେବେଳେ ସୁବିଧାଜନକ ହୁଏ । ଶୀତଦିନରେ ମଧ୍ୟ କଲେକ୍ଟର ଟୁର୍ ପକେଇଲେ । ସେଇ ଟୁର ଭିତରୁ ଗୋଟାକର ସ୍ମୃତି ତାର ମନଫଳକରେ ଛାପି ହୋଇ ଯାଇଛି । ସାହେବ, ମେମ୍‌ସାହେବଙ୍କ ସହ ଲଞ୍ଚରେ ବସି ନଈର ଉପର ମୁଣ୍ଡକୁ ଯାତ୍ରା କଲେ । କୃପା ଓ ଚାକରମାନେ ଜିନିଷପତ୍ର ଧରି ନଈର କୂଳେ କୂଳେ ବାଙ୍କ ବୁଲିବା ଯାଏ ଚାଲିଚାଲି ଗଲେ । ତାପରେ ସେମାନେ ନୌକାରେ ବସି ଗଲେ । ନୌକାରେ ଗଲାବେଳେ କୃପାସିନ୍ଧୁ ମହାନଦୀର ଧାରେ ଧାରେ ପାହାଡ଼ର ଦୀର୍ଘ କାନ୍ଥିନୀକୁ ଦେଖୁଥାଏ । ସେଗୁଡ଼ିକ ଏତେ ଉଚ୍ଚ ଏବଂ ଢଳାଣ ଯେ ସେଠାରେ ସେମାନେ ପହଞ୍ଚିବା ପରେ ଫେରିବା ଛଡ଼ା ଆଉ ବାଟ ନଥିବ । ମାତ୍ର ନାଉରୀ ତାର ନାଆର ମଙ୍ଗ ଟିକେ ବୁଲେଇ ଦେଲାରୁ ପାହାଡ଼ କାନ୍ଥିନୀ ଭିତରେ ଗୋଟାଏ ଜଳଧାରା ଦେଖାଗଲା ଯେମିତିକି ପର୍ବତ ଭିତରେ ଦେଇ ଯିବା ପାଇଁ ସୁବିଧା ହେବାକୁ ପଥର କାଟି ବାଟ ତିଆରି କରାଯାଇଛି ।

୧୯୧୩ ମସିହା ମେ ମାସରେ ଗୋଟାଏ ବଡ଼ ଘଟଣା ହେଲା ଗରୁବାଳା ପ୍ରଥମ କରି ପୁଅ ଛୁଆଟିଏ ଜନ୍ମ କଲା । ପିଲା ଜନ୍ମ ତ ଗୋଟାଏ ଅନନ୍ୟ ଘଟଣା । ଯେଉଁଲୋକ ସବୁଦିନ ସୂର୍ଯ୍ୟୋଦୟ ଦେଖେ ତାହା ତାକୁ ସାଧାରଣ ଘଟଣାର ପୁନରାବୃତ୍ତି ପରି ଲାଗେ । କିନ୍ତୁ ପ୍ରତ୍ୟେକ ସୂର୍ଯ୍ୟ ଉଦୟ ସଂପୂର୍ଣ୍ଣ ଏକାନ୍ତ ଶୈଳ୍ପିକ କାର୍ଯ୍ୟ ଓ ସେହି ବିରାଟ କଳାକାରଙ୍କର ଗୋଟାଏ ମୌଳିକ କଳାତ୍ମକ କୃତି । ତାହା ହେଉଛି ପ୍ରତ୍ୟୁଷର ଚମ୍‌ତ୍କାର ଏବଂ ଗୌରବ ।

ସେହିପରି ଗୋଟାଏ ନୂଆଜୀବନ ଏହି ପୃଥିବୀକୁ ପ୍ରବେଶ କରିବା ମଧ୍ୟ ଗୋଟାଏ ଘଟଣା ଯାହା ଆଗରୁ ଘଟି ନ ଥାଏ ଏବଂ ପରେ ମଧ୍ୟ ଘଟିବ ନାହିଁ । ଗୋଟାଏ ବିସ୍ମୟ ଯାହାର ଭାବ କେବେ ପୁନର୍ ଆବିର୍ଭାବ ଦ୍ୱାରା କମିବ ନାହିଁ ।

କାରଣ ପ୍ରତ୍ୟେକ ନବଜାତକ ହେଉଛି ଏକ ନୂଆ ବ୍ୟକ୍ତି ବିଶେଷ ।

ଏତେକଥା କୃପାସିନ୍ଧୁର ସମଝ ଭିତରେ ଥିଲା କି ନାହିଁ କେଜାଣି ଶିଶୁଜନ୍ମ ତା ପାଇଁ କିନ୍ତୁ ଏକ ମୌଳିକ ଏବଂ ମହିମାମୟ ଘଟଣା ଥିଲା ।

ପିଲାଜନ୍ମ ସମୟ ଉପଗତ ହେବାରୁ କୃପାସିନ୍ଧୁ ରାତିସାରା ବାରଣ୍ଡାରେ ବସି ରହିଥିଲା । ପ୍ରତ୍ୟୁଷର ପୂର୍ବରୁ ସେ ଏକ କ୍ଷୀଣ କ୍ରନ୍ଦନ ଶୁଣିପାରିଲା । ନୂଆ ପୃଥିବୀରେ ନୂଆ ସ୍ୱରଟିଏ । କିଛି ସମୟ ଅପେକ୍ଷା କରିବା ଭିତରେ ଧାଈ ଆସି କହିଲା ଯେ ପିଲାଟି ଭଲରେ ଜନ୍ମ ହୋଇ ଗଲା । ଭିତରକୁ ଯାଇ ଖଟ ଉପରେ ଗରୁବାଳାକୁ ଶୋଇଥିବାର ଦେଖିଲା ।

'ଓଃ ଏ ଯେ ଗୋଟାଏ ଝିଅ ! ମୋର ଦି'ଟା ପୁଅ ଥିବାରୁ ଏ ଝିଅଟି ପାଇଁ ମୁଁ ଖୁବ୍ ଖୁସି । ଏତ ଭାରି ସୁନ୍ଦର ହୋଇଚି । ବଡ଼ ହେଲେ ସୁନ୍ଦରୀ ନାରୀଟିଏ ହେବ ।'

ଗରୁବାଳାର ନିଦ ଭାଙ୍ଗିବା ପରେ ସେ ନିଜକୁ ସଂପୂର୍ଣ୍ଣ ମା'ଟିଏ ରୂପରେ ଆବିଷ୍କାର କଲା । ସେ ଏବେ କମ୍ ଶାନ୍ତି ଓ ବେଶୀ ଉଦ୍‌ବିଗ୍ନ ହୋଇ ଉଠୁଥିଲା । ବେଶୀ ଦାମ୍ଭିକତାର ସହ କୌଣସି ଦରକାରୀ ଜିନିଷ ପାଇଁ ସ୍ୱାମୀକୁ କହିବାକୁ ଦ୍ୱିଧା କରୁ ନ ଥିଲା । ଆଗଠାରୁ ନିଜ ସ୍ୱାମୀକୁ ଅଧିକ ଭଲ ପାଇଲା । ପିଲାକୁ ଖୁବ୍ ଭଲ ପାଉଥିଲା । ସେ ପୁଅ ନୁହେଁ ବୋଲି ଆଦୌ ବ୍ୟସ୍ତ ହେଉ ନଥିଲା । କନ୍ୟା ଶିଶୁଟିର ନାଁ ସେମାନେ ଦୟାବାଳା ରଖିଲେ ।

ଝିଅର ଜନ୍ମହେବା ଖବର କୃପାସିନ୍ଧୁ ତାର ସାହେବଙ୍କୁ ଜଣେଇବାକୁ ଧାଇଁଲା । ମେମ୍‌ସାହେବଙ୍କୁ ଦେଖି ସବୁକଥା କହିଲା । ମେମ ସାହେବ ବି କୃପାକୁ ଦେଖିଲେ ପିଲାଟିର ଭଲମନ୍ଦ ବିଷୟ ପଚରୁଥିଲେ । କେବେ ଥରେ ସମ୍ଭବ ହେଲେ ପିଲାଟିକୁ ଆଣି ତାଙ୍କୁ ଦେଖାଇବାକୁ କହିଲେ ।

ବର୍ଷେ ବା ତାଠାରୁ ଅଧିକ ସମୟ ଭଲରେ କଟିବା ପରେ ଅଗଷ୍ଟ ମାସରେ ଗରୁବାଳା ଆଉ ଗୋଟାଏ ପିଲା ଜନ୍ମ କଲା । ସେଇଟି ମଧ୍ୟ ଝିଅ ପିଲାଟିଏ ଥିଲା । ତାର ନାମ କୃପାବାଳା ରଖାଗଲା ।

କୃପା ସାହେବଙ୍କୁ ସେ ଝିଅ ଜନ୍ମ କଥା କହିଲା, ମାତ୍ର ସାହେବ ତା କଥାରେ ଏତେ ଆଗ୍ରହ ପ୍ରକାଶ କଲେ ନାହିଁ । କାରଣ ତାଙ୍କଠାରେ ଆଉ ଗୋଟାଏ ଜରୁରୀ ଖବର ପହଞ୍ଚି ଥିଲା । ଖବରଟି ହେଲା ବିଶ୍ୱଯୁଦ୍ଧ ଆରମ୍ଭ ହୋଇ ଯାଇଥିବାର ଖବର ।

## ଷୋଡ଼ଶ ପରିଚ୍ଛେଦ

ବିଶ୍ୱଯୁଦ୍ଧର ଘୋଷଣା ସାରାଦେଶରେ ଚହଳ ପକାଇ ଦେଲା । ଥରେ କୃପାସିନ୍ଧୁର ଗାଁରୁ କେତେକ ଲୋକ ଗୋଟାଏ ଗଣ୍ଡଗୋଳ ମାମଲାର ଫଇସଲା ପାଇଁ କଟକ କଚେରୀକୁ ଆସିଥିଲେ । ସଂଧ୍ୟାବେଳେ କୃପାସିନ୍ଧୁ ସହିତ ଦେଖାକରି ବିଶ୍ୱଯୁଦ୍ଧ ବିଷୟରେ କିଛି ଖବର ଜାଣିବା ପାଇଁ ସେମାନେ କୃପାସିନ୍ଧୁ ପାଖକୁ ଆସିଲେ ।

ସେମାନଙ୍କ ମଧ୍ୟରୁ ଜଣେ କହିଲା, 'ମୁଁ ଶୁଣିଲି ଯେ କେତେକ ସୈନିକ ଯୁଦ୍ଧକୁ ଯାଇଛନ୍ତି । ଯଦି ସମସ୍ତେ କଲେକ୍ଟରଙ୍କର ବାସ ଭବନରେ ଉପସ୍ଥିତ ରହିବେ ତ ସେଠାରେ ଜାଗା ଅଣ୍ଟିବ ନାହିଁ ।'

ଆଉ ଜଣେ କହିଲା, 'ମୁଁ ଶୁଣିଛି ଦଶହଜାରରୁ କମ୍ ସୈନିକ ଯୁଦ୍ଧ କରିବାକୁ ଯାଇ ନାହାନ୍ତି ! ହେଲେ, ସବୁ ଶୁଣା କଥାକୁ ମୁଁ ବିଶ୍ୱାସ କରେ ନାହିଁ ।'

କୃପା ଉତ୍ତର ଦେଲା, 'ଏ ଯୁଦ୍ଧରେ ହଜାର ହଜାର କ'ଣ ଶହଶହ ହଜାର ସୈନିକ ପରା ଯୋଗ ଦେଇଛନ୍ତି ।'

ଏ କଥା ଶୁଣି ସେମାନେ ପରସ୍ପରର ମୁହଁକୁ ଏମିତି ଚାହିଁଲେ ସତେ ଯେପରି ତାଙ୍କ ପଡ଼ିଶା ଘରର ଲୋକଟା ବି ସେମାନଙ୍କୁ ଠକି ଦେଉଛି । ଜଣେ ଅଳ୍ପପଢୁଆ ଲୋକର କିଛି ଇତିହାସ ଜ୍ଞାନ ଥିଲା ।

"ମୁଁ ବୁଝିପାରୁନି କୃପାବାବୁ, ଧର ଯଦି ଯୁଦ୍ଧ ଲାଗିଲା - ସୈନ୍ୟମାନେ ଆଗେଇ ଗଲେ, ଆଉ ପରସ୍ପରକୁ ସାମ୍ନା କଲେ । ତାପରେ ଟିକେ ଯୁଦ୍ଧ କଲା ପରେ ବିପକ୍ଷ ସୈନ୍ୟମାନେ ଛତ୍ର ଭଙ୍ଗ ଦେଲେ, ତାପରେ ସେମାନେ ବିଶ୍ରାମ ନିଅନ୍ତି । ପୁଣି ବହୁଦିନ ଉତ୍ତାରେ ସେମାନେ ଯୁଦ୍ଧର ସାମ୍ନା କରନ୍ତି । ଏ ଯୁଦ୍ଧରେ ତ ସୈନ୍ୟମାନେ ଦିନରାତି ଯୁଦ୍ଧ କରିବେ ? ଜଣେ କିପରି ଘଣ୍ଟା ଘଣ୍ଟା ଧରି ଯୁଦ୍ଧ କରିପାରିବ ? କାରଣ, ତାର ବାହୁ ଏତେ ଥକି ଯାଇଥିବ ଯେ ସେ ଆଉ ଖଣ୍ଡା ଧରି ପାରିବ ନାହିଁ ।'

"ହଁ, ମୁଁ ବି ସେକଥା ବୁଝିପାରେନି । ହୁଏତ ସେ ସ୍ଥଳେ ଦଳକ ପରେ ଦଳେ ସୈନ୍ୟ ଯୁଦ୍ଧ କରୁଥାଇ ପାରନ୍ତି । ମୁଁ ଲକ୍ଷ୍ୟ କରିଛି ଯେ ସାହେବମାନେ ଲକ୍ଷ୍ୟ ସ୍ଥଳକୁ ପେଟେଇ ପଡ଼ି ବଂଧୁକ ମାରନ୍ତି । ତେଣୁ ଯୁଦ୍ଧ କଲାବେଳେ ସେମାନେ ବେଶୀ କ୍ଳାନ୍ତ ହୋଇ ପଡ଼ନ୍ତି ନାହିଁ । ତଳେ ଶୋଇକରି ବି ଯୁଦ୍ଧ କରିହେବ ।"

'ପେଟେଇ ପଡ଼ି ଖଣ୍ଡାରେ କିପରି ଯୁଦ୍ଧ କରି ହେବ, ମୁଁ ଭାବିପାରୁନି ।' ଆଉ ଜଣେ ଉପରେ ପଡ଼ି କହିଲା, 'ମୁଁ ଶୁଣିଛି ଗଡ଼ଜାତର ପାହାଡ଼ମାନଙ୍କରେ ଲୁହା ଥାଏ। ପୂର୍ବକାଳରେ ଲୋକେ ତାକୁ ଖୋଳି ଖଣ୍ଡା ଓ କୁରାଢ଼ୀ ଆଦି ତିଆରି

କରି ସୈନ୍ୟମାନଙ୍କୁ ଯୋଗାଉ ଥିଲେ ।'

କୃପା କହିଲା, 'ଭାଇମାନେ, ଯୋଦ୍ଧାମାନେ କେଉଁ ଅସ୍ତ୍ର ନେଇ ଯୁଦ୍ଧ କରୁଥିଲେ ବୋଲି ତମେ ଭାବୁଛ କହିଲ ?'

ଅନ୍ତପାଠୁଆ ଲୋକଟି କହିଲା, 'ଖଣ୍ଡା ଓ ବର୍ଚ୍ଛା ନେଇ କରୁଥିବେ ।'

'ମୁଁ ଇଂରେଜ ସୈନ୍ୟଙ୍କୁ ଦେଖିଛି । ସେମାନେ ଖଣ୍ଡା କି ବର୍ଚ୍ଛା କିଛି ଧରନ୍ତି ନି । ସମସ୍ତଙ୍କ କାନ୍ଧରେ ବଂଧୁକ ଝୁଲୁଥାଏ ।'

'ତମେ ଗୋଟାଏ ମିଛୁଆ ଲୋକ କୃପାବାବୁ ଆମ ସଂଗେ ତାମସା ଲଗେଇଛ ?'

'ବାବୁ, ତମେମାନେ ତ ଗୋଟାଏ ବି ସୈନ୍ୟ ଦେଖି ନାହିଁ ?'

'ନାଇଁ, କିନ୍ତୁ ମୁଁ ବଂଧୁକ ଦେଖିଛି । ଜନାର୍ଦ୍ଦନ ଜେଠୀର ବନ୍ଧୁକଟିଏ ଅଛି । ସେ ସେଇଟାକୁ ଖାଲି ଦେଖେଇବାକୁ ରଖିଛି । ପ୍ରତିଥର ଗାଁକୁ ଆସିଲେ ସେ ସେଇଟା ନେଇ ଡାହୁକ ମାରେ । ବଂଧୁକ ସବୁ ଏଇ ସବୁ ପାଇଁ ଅଛି । ଯୁଦ୍ଧ ପାଇଁ ନୁହେଁ, ବୁଝିଲ । ସୈନ୍ୟମାନେ ଖଣ୍ଡା ଓ ବର୍ଚ୍ଛା ନେଇ ଯୁଦ୍ଧ କରନ୍ତି ।'

'ମୁଁ ପରା କହୁଚି ସେମାନେ ବନ୍ଧୁକରେ ଯୁଦ୍ଧ କରନ୍ତି ।'

'ଚଢ଼େଇ ମାରିବାକୁ ବନ୍ଧୁକ ବ୍ୟବହାର ହୁଏ । କାହାକୁ ମାରିବା ଲାଗି ବଂଧୁକ ବ୍ୟବହାର ହେବା କଥା ଶୁଣିଛକି ? କି ହାସ୍ୟାସ୍ପଦ କଥା କହିଲ ।'

ଏକଥାରେ ସେ ସବୁ ଗାଉଁଲି ଲୋକମାନେ ହସିହସି ବେଦମ୍ ହୋଇ ଗଲେ ।

ଯେତେବେଳେ ଯୁଦ୍ଧ ଆରମ୍ଭ ହେଲା, ସମସ୍ତେ ଭାବିଥିଲେ ଯେ ଇଂରେଜମାନେ ନିଶ୍ଚୟ ଜିତିବେ । ଏକଥାର ଅନ୍ୟଥା ହେବ ବୋଲି କୃପାସିନ୍ଧୁ ଘୃଣାକ୍ଷରେ ବି ଭାବି ନ ଥିଲା । ତାର ସାହେବ ବିରାଟ ଗୋଟାଏ ମ୍ୟାପ୍ ନେଇ ପଢ଼ାଘର କାନ୍ଥରେ ଟାଙ୍ଗିଥିଲେ । ତା ଉପରେ ଢ଼େର ପିନ୍‌କଣ୍ଟା ମାରି ଉପରେ ପତାକା ଯୋଡ଼ି ରଖି ଥିଲେ । ସେଇ ପିନ୍‌ଗୁଡ଼ାକ ଶତ୍ରୁମାନଙ୍କ ରହଣୀ ସ୍ଥଳକୁ ସୂଚଉ ଥିଲା । ଦିନେ କୃପା ଯୁଦ୍ଧ ସମ୍ବନ୍ଧରେ ଖବର ଜାଣିଛନ୍ତି କି ବୋଲି ତାର ସାହେବଙ୍କୁ ପଚାରିଲା । ଉତ୍ତରରେ ସାହେବ କହିଲେ ଯେ କିଛି ଭଲ ସମ୍ବାଦ ନାହିଁ । ତାପରେ ପିନ୍ କଣ୍ଟାମାନଙ୍କର ସ୍ଥିତି ବିଷୟରେ ତାକୁ ବୁଝେଇ କହିଲେ । କୃପା ବୁଝିଲା ଯେ ଜର୍ମାନମାନେ ମାଡ଼ି ଆସୁଛନ୍ତି ତେଣୁ ଇଂରେଜ ଓ ତାର ସାଥୀଦେଶମାନେ ପଛେଇ ପଛେଇ ଆସୁଛନ୍ତି । ପୁଣି କିଛିଦିନ ପରେ ସେ ସେଇ ମ୍ୟାପରେ ପିନ୍‌କଣ୍ଟା ଗୁଡ଼ିକୁ ଲକ୍ଷ୍ୟ କଲାରୁ ଜାଣି ପାରିଲା ଯେ ଇଂରେଜ ଓ ତାର ମିତ୍ରଦଳ ମାନେ ଧାଇଁ ପଳେଇ

ଆସୁଛନ୍ତି । ଏସବୁ ଜାଣିଥିଲେ ମଧ୍ୟ ସେ କାହାକୁ କିଛି ନ କହି ଚୁପ୍ ରହିଲା ।

କିନ୍ତୁ କିଛି ସମୟ ଭିତରେ ଏ କଥା ସବୁଆଡ଼େ ପ୍ରଘଟ ହୋଇ ଗଲା ଯେ ଇଂରେଜମାନେ ହାରିଗଲେ । ତାପରେ, ରାଜନୀତି କରୁଥିବା ନେତାମାନେ ଖୁବ୍ ଖୁସି ହୋଇଗଲେ । କିନ୍ତୁ ବଂଗାଳୀଏ ସଂଜବେଳେ ସେମାନଙ୍କର ବାରଣ୍ଡାରେ ବସି ମୃତକମାନଙ୍କ ତାଲିକା ବଡ଼ ପାଟିରେ ପଢୁଥିଲେ । ଏତେ ସଂଖ୍ୟାରେ ଇଂରେଜମାନେ ମରୁଛନ୍ତି ଜାଣି ଅନ୍ୟମାନେ ଖୁସି ହେଉଥିଲେ ।

ସମସ୍ତେ ଯେତେବେଳେ ଜାଣିଲେ ଘଟଣାର ମୋଡ଼ ଠିକ୍‌ବାଟରେ ଯାଉନି, ଯୁଦ୍ଧ ବେଶ୍ କିଛିଦିନ ଧରି ଚାଲିବ ବୋଲି । ଏପରିକି ସାହେବମାନେ ମଧ୍ୟ ଯୁଦ୍ଧକୁ ଡେଇଁ ପଡ଼ିବାକୁ ତୟାର । କମିଶନର ଖୁବ୍ ବୁଢ଼ା ହୋଇ ଉଠିଥିଲେ । କଲେକ୍ଟରମାନଙ୍କୁ ଯୁଦ୍ଧକୁ ଯିବାକୁ ଅନୁମତି ନ ଥିଲା । ତେଣୁ ସହକାରୀ କଲେକ୍ଟର ଓ ଅନ୍ୟମାନେ ଯୁଦ୍ଧକୁ ଗଲେ । ସେମାନଙ୍କର ପଦବୀରେ ବାବୁମାନେ ବାହେଲ ହେଲେ । ଏପ୍ରକାର ଯୁଦ୍ଧ କେତେକ ଲୋକଙ୍କର ଉପକାରରେ ଆସିଲା । ଦୟାନିଧି ମଧ୍ୟ ଯୁଦ୍ଧ ଯୋଗୁଁ ଉପକୃତ ହେଲା ।

ଓଡ଼ିଶାରେ ଜଣେ ଜମିଦାର ଥିଲେ । ତାଙ୍କର ଜମିଦାରି ବୁଝିବାକୁ ଜଣେ ଇଂରେଜ ସାହେବ ଥିଲେ । ସେ ସାହେବ ଜଣଙ୍କ ନୀଳଚାଷ ଓ ଚାଷୀଙ୍କ ବିଷୟରେ ପୂରାପୂରି ଅଭିଜ୍ଞତା ଅର୍ଜନ କରିଥିଲେ । ଜମିଦାରଙ୍କର କେହି ଚାକର କାମ ନ କରି ଚାଲି ଯାଉଥିଲା ତ ସେ ଚାକରଟି ଘରର ବାସନ କୁସନ ସବୁ ଜବତ କରିଆଣି ସେ ନ ଫେରିବା ଯାଏ ଜିନିଷକୁ ସିନ୍ଦୂକରେ ତାଲାପକେଇ ରଖୁଥିଲେ । ଯଦି କେହି ଭଡ଼ାବାଲା ବଦ୍‌ମାସୀ କରୁଥିଲା ତାର ଦୁର୍ଭାଗ୍ୟ ପଡୁଥିଲା – ତାଘରେ ନିଆଁ ଲାଗି ଯାଉଥିଲା, ନହେଲେ ତାର ଗୋରୁମାନଙ୍କୁ ବିଷ ଦେଇ ମାରିଦିଆ ଯାଉଥିଲା । ନଚେତ୍, ବାଟରେ ଗଲାବେଳେ ଡକାୟତମାନେ ତାକୁ ଲୁଟ୍‌ମାର କରୁଥିଲେ । ଏମିତି ଅନେକ କାୟଦା ସେ ସାହେବଙ୍କୁ ଜଣାଥିଲା । କେହି ଚାଷୀ ଯଦି ଦେଣା ପାଉଣାଠାରୁ ଅଧିକ ଦେଉ ନ ଥିଲା ତ ତା ଉପରେ ଏସବୁ ଦୁର୍ଭାଗ୍ୟ ପଡୁଥିଲା । ସେ ସାହେବ ଜଣକ ନିଜର ଖାଉନ୍ଦ ଜମିଦାରଙ୍କୁ ଅତି ପ୍ରଶଂସନୀୟ ବିଶ୍ୱସ୍ତତାର ସହିତ ସନ୍ତୁଷ୍ଟ ରଖିଥିଲେ ଏବଂ ନିଜ ଛଡ଼ା ଅନ୍ୟ କାହାକୁ ତାଙ୍କଠୁଁ ଚୋରୀ କରିବାକୁ ସୁଯୋଗ ଦେଉ ନ ଥିଲା ।

ଯେତେବେଳେ ଯୁଦ୍ଧ ଆରମ୍ଭ ହେଲା, ସେ ଯୁଦ୍ଧକୁ ଯିବାକୁ ଚାହିଁଲେ । ତାଙ୍କୁ ଯୋଗାଣ ଓ ପରିବହନ ନିଗମରେ ନିଯୁକ୍ତ କରାଗଲା । ସେ ଖୁବ୍ ଖୁସିରେ ଏ ଚାକିରୀକୁ ସ୍ୱାଗତ କଲେ କାରଣ ତାହାହେଲେ ସେ ଜଣେ ବଡ଼ ଅଫିସର ଓ

ଭଦ୍ରଲୋକ ହିସାବରେ ପରିଗଣିତ ହେବେ । ସେ ବି ଭଲରେ ଜାଣିଥିଲା ଯେ ଏବେ ସରକାରଙ୍କୁ ଖିଅର କରିବାକୁ ସେ ସୁଯୋଗ ପାଇବ । ଆଗରୁ କେବଳ ଜଣେ ମୂର୍ଖଦେଶୀୟ ଲୋକଙ୍କୁ ଚନ୍ଦଉ ଥିଲା ।

ତାର ମାଲିକ କିନ୍ତୁ ବ୍ୟସ୍ତ ହୋଇପଡ଼ିଲେ । ତାଙ୍କୁ କ'ଣ ସେ ଛାଡ଼ିବେ ? ଥରେ ସେ ଚିନ୍ତାକରି ନିଶ୍ଚିତ କଲେ ଯେ ଯେଉଁକାମ ସବୁ ତାଙ୍କର ଚାଲିଛି –ସେ କାମକୁ ସାହେବ ଜଣକ ଠିକ୍ ଥିଲା । ସେ ଗଲାପରେ, ଜଣେ ବାବୁ ବା ପୋଲିସ ସେ ଜାଗାରେ ଲୋଡ଼ା । ତେଣୁ ଦୟାନିଧିଙ୍କୁ ସେ ନିଯୁକ୍ତି ଦେଲେ । ଏକଥା କୃପା ଓ ହରିବନ୍ଧୁଙ୍କ ପାଇଁ ଖୁବ୍ ଜବର ଖବରଟିଏ ଥିଲା । ତାର ବଡ଼ଭାଇ ପୁଣି ଚାକିରୀରେ ମୁକରିର ହେଲା ଯାହାହେଉ ।

ଏମିତି କିଛିମାସ ଯୁଦ୍ଧ ଚାଲୁଥିବା ବେଳେ ଲୋକମାନେ ଲକ୍ଷ୍ୟକଲେ ଯେ ଇଂରେଜମାନେ ପଛେଇ ଗଲେ ବି ଯୁଦ୍ଧ ବଂଦ ହେଉନାହିଁ । ତେଣୁ ସେମାନେ ଭାବିଲେ ଯେ ଯେତେଯାହା ମନ୍ଦ ଖବର ହେଉ ପଛେ ଇଂରେଜ ହଟିଯିବା ଜାତି ନୁହେଁ। କୃପାସିନ୍ଧୁ ଭାବୁଥିଲା ଯେ ଇଂରେଜମାନେ ଦିନେ ନା ଦିନେ ଜିତିବେ । ଏକଥା ଆଉ ଜଣେ କିରାଣୀ ବିଶ୍ୱାସ କରୁ ନଥିଲେ ।

ଯୁଦ୍ଧ ଯୋଗୁଁ ଓଡ଼ିଶାରେ ସେମିତି କିଛି ଅସୁବିଧା ଦେଖାଯାଉ ନଥିଲା । ସୁନାମୋହର ବଦଳରେ କାଗଜନୋଟ ବେଶୀ ହେଲା । ଦରଦାମ ବଢ଼ିଥିଲା । କେତେକେତେ ଲୋକ ବାହାରକୁ ମୂଲିଆକାମ କରିବାକୁ କି ବଡ଼ବଡ଼ ବାବୁମାନଙ୍କର ଚାକର କାମ କରିବାକୁ ପଳେଇଲେ । ଏମିତି ଥିଲା ଯୁଦ୍ଧର ପ୍ରଭାବ । ତେଣୁ କୃପାସିନ୍ଧୁ ଯୁଦ୍ଧ କଥାରେ ମୁଣ୍ଡ ନ ପୂରେଇ ନିଜ ବ୍ୟକ୍ତିଗତ କଥାରେ ମନୋନିବେଶ କଲା ।

ଦୀର୍ଘ ଦୁଇବର୍ଷ ଧରି ଯୁଦ୍ଧ ଲାଗିରହିଲା । କୃପାସିନ୍ଧୁ ଭାବିଲା ଯେ ଆଉ ଡେ଼ରି କରି ଲାଭ ନାହିଁ । ବରଂ ତାର ପୁଅମାନଙ୍କୁ ନେଇ ସ୍କୁଲରେ ଭର୍ତ୍ତି କରାଇବା ଉଚିତ । ଗୁରୁଚରଣଙ୍କୁ ବାରବର୍ଷ ବୟସ ହେଇଥିଲା ଏବଂ ସାଧୁଚରଣଙ୍କୁ ଏଗାରବର୍ଷ । ସେମାନେ ଗାଁକୁ ଯାଇ ଓଡ଼ିଆ ଓ ଅନ୍ୟ ପ୍ରାଥମିକ ପାଠ ପଢ଼ିବା କି ଲେଖିବା ଶିଖିଲେ । ତାପରେ ସେମାନଙ୍କୁ ଇଂରେଜୀ ପଢ଼େଇବାକୁ ପଡ଼ିବ । ତେଣୁ ଗାଁ ସ୍କୁଲର ପ୍ରଧାନଶିକ୍ଷକଙ୍କୁ ତାଙ୍କ ସ୍କୁଲରେ ତାର ପିଲାଙ୍କ ଦାଖିଲା ପାଇଁ ଲେଖିଲା । ହେଡ଼ମାଷ୍ଟ୍ରଙ୍କଠାରୁ ସମ୍ମତିପତ୍ର ପାଇ ହରିବନ୍ଧୁକୁ ପୁଅମାନଙ୍କୁ ନେଇ ସ୍କୁଲରେ ଭର୍ତ୍ତି କରାଇବା କଥା ସେ ଚିଠି ଦେଇ ଜଣାଇଲା ।

କୃପାର ପିଲାମାନେ ସ୍କୁଲ ଯିବା ପାଇଁ ପ୍ରସ୍ତୁତି ସରିଲା ପରେ ହରିବନ୍ଧୁ

ସେମାନଙ୍କୁ କିଛି ଉପଦେଶ ଦେବା ତାର ଦାୟିତ୍ୱ ବୋଲି ଭାବିଲା ଓ କହିଲା, "ପିଲାଏଁ, ତମେମାନେ ସବୁବେଳେ ମନେ ରଖିବ ଯେ ଆମେ କରଣ ହେଲେ ବି ଚାଷୀ । ତମ ବାପା ଚାଷୀ ହୋଇ ମଧ୍ୟ କିରାଣୀ କାମ କରୁଛନ୍ତି । ଆମେ କୋଡ଼ିଏ ବର୍ଷଧରି ପୈତୃକ ଜମି ଚାଷ କରି ଚଳୁଛୁଁ । ଚାଷକାମ ହେଉଛି ସବୁଠାରୁ ସମ୍ମାନାସ୍ପଦ କାମ । ଉଚ୍ଚ ଚାକିରୀରେ ରହିଥିବା ଲୋକଙ୍କୁ ସମ୍ମାନ କରିବା ଲାଗି ଚାଷ ହିଁ ଶିଖାଇ ଥାଏ । ତୁମେମାନେ ସର୍ବଦା ଧାର୍ମିକ ଓ ସତ୍ୟନିଷ୍ଠ ହୋଇ ରହିବାକୁ ଚେଷ୍ଟା କରିବ । ମାଷ୍ଟରଙ୍କୁ ମାନିବ ଓ ପିତାଙ୍କୁ ଶ୍ରଦ୍ଧା କରିବ ।"

ପୂଜା ଛୁଟିରେ କୃପା ଆସି ତାର ଏ ଦୁଇ ପୁଅଙ୍କୁ ଦେଖି ଖୁସିହେଲା । ଘଣ୍ଟା ଘଣ୍ଟା ଧରି ସେମାନଙ୍କର ସ୍କୁଲ ବିଷୟରେ ବୁଝି କଥାବାର୍ତ୍ତା କଲା । ଛୁଟି ଶେଷରେ ସେ ନିଜେ ନେଇ ସେମାନଙ୍କୁ ସ୍କୁଲରେ ଛାଡ଼ିଲା । ବାଟରେ ସେ ସଦୁପଦେଶ ଦେବାକୁ ଭାବି ପିଲାଙ୍କୁ କହିଲା,-

'ପୁଅମାନେ, ତମେ ସବୁବେଳେ ପରିଶ୍ରମ କରି ମନଦେଇ ପଢ଼ିବ । ପରିଶ୍ରମ ସହ ନ ପଢ଼ିଲେ ମ୍ୟାଟ୍ରିକ ପାସ କରିବା ସହଜ ହେବ ନାହିଁ କିମ୍ବା ଶ୍ରୀ ଭାରତେଶ୍ୱର ସରକାରଙ୍କର ଚାକିରୀ ପାଇବ ନାହିଁ । ପଢ଼ା ସହ ଖେଳାଖେଳି କରିବା ମଧ୍ୟ ଜରୁରୀ । ତମେମାନେ ଭଲଭାବେ ଫୁଟବଲ କି ହକି ଖେଳ ଶିଖିବା ଉଚିତ ।'

ଗୁରୁଚରଣ ପଚାରିଲା, 'ବାପା ସେ ଇଂରାଜୀ ଖେଳ ଖେଳିବା ଏତେ କଣ ଦରକାର ? ଜଣେ ପିଲା ମାଛ ଧରି ପହଁରା ପହଁରି କରି କି କୁସ୍ତିକସରତ ଦ୍ୱାରା କଣ ସ୍ୱାସ୍ଥ୍ୟବାନ ହୋଇ ପାରିବନି ?'

କୃପା କହିଲା, 'ପୁଅରେ, ସବୁବେଳେ ମନେ ରଖିବୁ ଇଂରେଜମାନେ ଖେଳକୁ ଧର୍ମ ପରି ଗ୍ରହଣ କରିଥାନ୍ତି । ଯେଉଁମାନେ ଏସବୁ ଖେଳ ଖେଳନ୍ତି, ତାଙ୍କୁ ଇଂରେଜମାନେ ନିଜ ଧର୍ମକୁ ସମ୍ମାନଦେବା ପରି ସମ୍ମାନ ଦିଅନ୍ତି । ତେଣୁ ତମେ ସବୁ ଏ ଖେଳ ସବୁ ଖେଳିବା ଦରକାର । ତେବେ ସିନା ସାହେବମାନେ ତୁମ୍ଭମାନଙ୍କ ଉପରେ ସନ୍ତୁଷ୍ଟ ହେବେ ଓ ଭଲଭଲ ଚାକିରୀ ଦେବେ । ତେବେଯାଇ ତମେମାନେ ଦିନେ ନା ଦିନେ ତମ ବାପାଙ୍କ ପରି ବଡ଼ ଚାକିରୀ ପାଇବ -ବେଶୀ ପଇସା କମେଇବ ।'

ଏଣିକି କୃପାସିନ୍ଧୁ ଫି ଏବଂ ଗ୍ରାଚ୍ୟୁଟି ବାବଦକୁ ପ୍ରଚୁର ପଇସା ଆୟ କଲା । ମାତ୍ର ପୁରୀ ଆସିବା ପରେ ଗୋଟାଏ ସୌଭାଗ୍ୟ ସେ ପାଇ ପାରି ନଥିଲା । ତେଣୁ ତା ନିଜ ସମ୍ପର୍କୀୟ ରାୟସାହେବ ଗୋପାଳକୃଷ୍ଣ ମହାନ୍ତିଙ୍କୁ ଦିନେ ଯାଇ ସେ ଭେଟିଲା ଓ ତାଙ୍କୁ ପଚାରିଲା ଏଯାବତ୍ ସେ କାହାର କିଛି କାମ କରେଇ ଦେବାର ସୁଯୋଗ ତ

ପାଇଲା ନାହିଁ । ରାୟସାହେବ ଉତ୍ତର ଦେଲେ ଯେ ଏବେ ସେ ସମୟ ସୁଯୋଗ ଆସିଚି । କିନ୍ତୁ ଧରା ନ ପଡ଼ି ଏ ସୁଯୋଗର ସଦୁପଯୋଗ କିପରି କରାଯିବ ସେ ବିଷୟରେ ସେ କିଛି ବାଟ ପାଉ ନ ଥିଲେ ।

କୃପାକୁ ସେ ବୁଝେଇଲେ, 'କଥାଟା କଣ କି ମାସେ ତଳେ ମାଜିଷ୍ଟ୍ରେଟଙ୍କ ଘରେ ପୁଅ ପିଲାଟିଏ ଜନ୍ମ ହୋଇଛି ମାତ୍ର ସେ ବିଷୟରେ ସେ ଏଯାବତ୍ ସରକାରଙ୍କଠାରେ ଘୋଷଣା କରି ନାହାନ୍ତି । ଶିଶୁ ଜନ୍ମକୁ ଲୁଚେଇବାଟା ତାଙ୍କର ଉଦ୍ଦେଶ୍ୟ ନୁହେଁ କିନ୍ତୁ ସେ ସେକଥା ପୁରାପୂରି ଭୁଲିଯାଇଛନ୍ତି । ଏଣୁ ମୁଁ ଯାଇ ସାହେବଙ୍କୁ କହିଲାରୁ ସାହେବ କେତେ କଥା ପଚାରିଲେ ।'

ସେ ଯେତେବେଳେ ଜାଣିଲେ ଯେ ପିଲାଟା ଡିଏମ୍‌ଙ୍କ ବିଧବା ଝିଅର ପିଲା-ସେତେବେଳେ ସେ ପିଲାଟାକୁ ଅବୈଧ ବୋଲି ଠଉରାଇଲେ । ସେହି ହେତୁରୁ ଡ଼େପୁଟୀ ମାଜିଷ୍ଟ୍ରେଟ ଲଜ୍ୟାରେ ହୁଏତ କଥାଟା ଲୁଚେଇଛନ୍ତି । ତୁମେ ତ ଜାଣିଛ ଶିଶୁ ଜନ୍ମ ପଞ୍ଜିକରଣ ନ କରି ଲୁଚେଇବା ଗୋଟାଏ ଅପରାଧ । ତେଣୁ ସାହେବ ସେ ବିଧବା ମା'ର ସ୍ୱାମୀର ମୃତ୍ୟୁ ତାରିଖ ଖୋଜି ବାହାର କରିବା ଦାୟିତ୍ୱ ମୋତେ ଦେଲେ । ମୁଁ ତାର ସ୍ୱାମୀର ମୃତ୍ୟୁ ତାରିଖ ବାହାର କରି ପିଲାର ଜନ୍ମ ତାରିଖ ସହ ମିଳେଇଲି । ଏବଂ ମୁଁ ଜାଣିଲି ଯେ ପିଲାଟି ତାର ସ୍ୱାମୀର ଔରସରୁ ହେବା ନିଶ୍ଚିତ ଭାବେ ନୁହେଁ । ଏଣେ ଡେପୁଟୀ ବାବୁ ଖୁବ୍ ଡରିଯାଇଛନ୍ତି । ଏଣୁ ଦଣ୍ଡରୁ ମୁକ୍ତି ପାଇଁ ସେ ଟ.୧୦୦୦/-ଙ୍କା ଲାଞ୍ଚ ଦେଉଛନ୍ତି । ମାତ୍ର କଥାଟା କିପରି ଫଇସଲା ହେବ ମୁଁ କିଛି ବୁଝିପାରୁନାହିଁ ।'

'ଯଦି ସେ ଜଣେ ଓଡ଼ିଆ ହୋଇଥିବେ ତ ହଜାରେ ଟଙ୍କାରେ ଆମେ ତାଙ୍କ କାମ କରିଦେବୁ । ବଙ୍ଗାଳୀ ହୋଇଥିଲେ ଦୁଇହଜାର ପଡ଼ିବ ।'

'ସେ କଥା ତ ହେବ, ମାତ୍ର ସୁରୁଖୁରୁରେ କିପରି ହେବ ? ମୁଁ ତ ଗୋଟାଏ ମିଛ ରିପୋର୍ଟ ଦେବାକୁ ସାହସ କରିପାରିବନି ।'

'ଆମେ ତାକୁ ଏମିତି କରିବା ଦେଖନ୍ତୁ- ରିପୋର୍ଟଟି ଲେଖି ଟାଇପ ବା ଉତାରିବା ପାଇଁ କୌଣସି କିରାଣୀର ସାହାଯ୍ୟ ନେବେ ନାହିଁ । ନିଜର ଖରାପ ହସ୍ତାକ୍ଷରରେ ତାହା ସାହେବଙ୍କଠାରେ ପେଶ୍ କରିବେ । ସାହେବ ସେହି ଅପରିଷ୍କାର ଅକ୍ଷର ପଢ଼ିପାରିବେନି ବୋଲି ମୋତେ ଟାଇପ କରିଦେବାକୁ କହିବେ । ଟାଇପ କପିରେ ସେ ବିଧବା ମା'ର ସ୍ୱାମୀଙ୍କ ମୃତ୍ୟୁ ତାରିଖକୁ ମୁଁ ଏପଟ ସେପଟ କରି ଛାପି ଦେବି । ଏପରି ହେବ ଯେ ପିଲାଟିର ବାପା ବିଧବାର ସ୍ୱାମୀ ନିଜେ ବୋଲି ପ୍ରମାଣିତ

ହେବ । ଯଦି ତାରିଖ ବଦଳିବା କଥାଟି ଜଣାପଡ଼ିଯାଏ ତ ମୁଁ ଦୋଷଟା ମୋ ଉପରକୁ ନେଇ କହିବି ଯେ ହସ୍ତାକ୍ଷରରୁ ତାରିଖଟା ମୁଁ ଠିକ୍‌ରେ ପଢ଼ିପାରିଲି ନାହିଁ ହୁଏତ । ସେଥିପାଇଁ ଭୁଲ୍ ହୋଇଯାଇଛି । ଆପଣଙ୍କର ହସ୍ତାକ୍ଷର କିନ୍ତୁ ନିହାତି ଖରାପ ଥିବ ଯେମିତି ।'

ଠିକ୍ ସେମିତି କରାଗଲା । ସାହେବ ସନ୍ତୋଷ ପ୍ରକାଶ କଲେ । ଟିକେ ବି ସନ୍ଦେହ କଲେ ନାହିଁ । ଡ଼େପୁଟୀ ମାଜିଷ୍ଟ୍ରେଟ ସାହେବ ବି ଖୁସ୍ । ରାୟ ସାହେବ ତ ଅତିଆନନ୍ଦ ହେଲେ । କାରଣ କୃପାସିନ୍ଧୁର ସହଯୋଗରୁ ସେ ବେଶ୍ କିଛି କମେଇ ନେଲେ । ସେଇ ଦିନଠୁ ଏମିତି କାହାକୁ ସନ୍ତୁଷ୍ଟ କରିବାର ସୁଯୋଗ ସବୁ ସେମାନେ ଖୋଜି ବୁଲିଲେ ।

## ସପ୍ତଦଶ ପରିଚ୍ଛେଦ

କୃପାସିନ୍ଧୁର ସାହେବଙ୍କର କଟକରେ ତିନିବର୍ଷ ଚାକିରୀରେ ରହଣି ପରେ ଉତ୍ତର ବିହାରର ଗୋଟାଏ ଜିଲ୍ଲାକୁ ବଦଳି ହେଲା । କୃପା ଏଥର ଆଉ ତାଙ୍କ ସହ ଯିବାକୁ ଇଚ୍ଛା ପ୍ରକାଶ କଲାନି । ଥଟ୍ଟାରେ ଥଟ୍ଟାରେ ସାହେବ ତାକୁ ସେକଥା ପଚାରିବାରୁ ସେ ଉତ୍ତର ଦେଲା ଯେ ସାହେବଙ୍କ ବଦଳି ହେବା ସ୍ଥାନରେ ଜଣେ ଭଲ ଷ୍ଟେନୋଗ୍ରାଫର ଅଛନ୍ତି ବୋଲି ସେ ଶୁଣିଛି ।

ବଦଳି ହୋଇ ବିଦାୟ ନେବା ବେଳେ ଡେପୁଟୀ ମାଜିଷ୍ଟ୍ରେଟ ସହରର ମାନ୍ୟଗଣ୍ୟ ଲୋକ, ଅନ୍ୟାନ୍ୟ କିରାଣୀ ଓ ଚାକର ବାକରମାନେ କେବଳ ଜଣକୁ ଛାଡ଼ି, ସମସ୍ତେ ତାଙ୍କୁ ରେଳଷ୍ଟେସନ ଯାଏ ବିଦାୟ ସମ୍ବର୍ଦ୍ଧନା ଜଣାଇବାକୁ ଯାଇଥିଲେ । ଡେପୁଟୀ ମାଜିଷ୍ଟ୍ରେଟ ଓ କଲେକ୍ଟରମାନେ ଭଲ ଭାଷାରେ ତାକୁ ବେଶ୍ ପ୍ରଶଂସା କରି ସମ୍ବର୍ଦ୍ଧନା ଜଣାଇଲେ । ଚପ୍ରାସୀମାନେ ଚୁପଚାପ କାନ୍ଦିଲେ । କୃପାସିନ୍ଧୁ ବି ଢ଼େର କାନ୍ଦିଲା କାରଣ ସାହେବ ଓ ମେମ୍ ଦୁହେଁ ତାକୁ ଖୁବ୍ ଭଲ ପାଉଥିଲେ ଓ ନିଜଘରର ସଦସ୍ୟ ଭଳି ବ୍ୟବହାର କରୁଥିଲେ ।

ନୂଆକଲେକ୍ଟର ଜଣକ ପୂର୍ବରୁ ଓଡ଼ିଶାରେ କେବେ ଚାକିରୀ କରି ନ ଥିଲେ । ଚାକିରୀରେ ଯୋଗ ଦେବା ମାତ୍ରେ ସେ କୃପାକୁ ଡ଼କେଇଲେ ।

'ବାବୁ, ମୋର ଘୋଡ଼ା ଆସି ପହଞ୍ଚିବା ମାତ୍ରେ ଆମେ ଟୁରରେ ବାହାରିଯିବା ।

ଶୀତଋତୁ ତ ଆରମ୍ଭ ହୋଇଗଲାଣି । ମୁଁ ଏଠାରେ ନୂଆ । ତେଣୁ ଟୁର ପ୍ରୋଗ୍ରାମ ସବୁ ତୁମେ ପ୍ରସ୍ତୁତ କରିବ ।'

କୃପା ତାଙ୍କୁ ବୁଝେଇ ଦେଲା ଯେ ଏଠାରେ ଘୋଡ଼ାରେ ଯିବା ସୁବିଧା ଜନକ ନୁହେଁ । ତେଣୁ ମହାଶୟଙ୍କର ଘୋଡ଼ା ଦରକାର ପଡ଼ିବନି ।

- 'ଓ ଭଗବାନ୍ ! ତେବେ ଆମେ କିପରି ଟୁର୍ କରିବା ?'

- 'ସାର୍, ଋତୁର ଗତି ଅନୁସାରେ ଏଠାରେ ଟୁର୍ ପ୍ରୋଗ୍ରାମ ସ୍ଥିର ହୁଏ ?'

- 'ଆଛା, ଯେବେ ସୁବିଧା ହେବ, ଆମେ ସଙ୍ଗେ ସଙ୍ଗେ ଟୁରରେ ବାହାରି ଯିବା ।'

- 'ବଡ଼ଦିନ ପୂର୍ବରୁ ଆଜ୍ଞାଙ୍କର ଟୁର୍‌ଯିବା ସମ୍ଭବ ହେବ ନାହିଁ ।'

- 'ହେ, ଭଗବାନ୍ ! କାହିଁକି ହେବନି ?'

- 'କାରଣ, ସେତେବେଳକୁ ନଈସବୁ ପାରିହେବାକୁ ସୁବିଧା ହେବ । ବର୍ଷା ଦିନରେ ଆମେ ନୌକାରେ ଯାଇ ପାରିବୁ । ଖରାଦିନେ ଜମିଦାରମାନେ ନଈ ଉପରେ ରାସ୍ତା ତିଆରି କରିଥାନ୍ତି । ତେଣୁ, ଆପଣ ମୋଟର କାର ନେଇ ବି ଟୁର୍ କରିପାରିବେ । କିନ୍ତୁ ଏବେ ନଈରେ ପାଣି ଥିବାରୁ କାର୍ ଯିବାକୁ ଅସୁବିଧା ଏବଂ ଏତେ ବେଶୀ ପାଣି ବି ନାହିଁ ଯେ ନୌକାରେ ଯାଇହେବ ।'

-'ତେବେ ଘୋଡ଼ାରେ ନଈ ପାରି ହୋଇ ହେବ ।'

-'ସେ'ତ ବଡ଼ ବିପଦର କଥା ସାର୍ । ନଈର ଘେରାବାଲିରେ ଘୋଡ଼ାର ପାଦ ଦବି ଯାଇପାରେ... ।'

-'ଓଃ ଗଡ୍, କେତେ ବାଜେ ଦେଶ ଏଇଟା ।'

- 'ସାର୍, ଏମିତି କଲେ ହେବ ଯେ କାରରେ ଯାଇପାରୁଥିବା ଜାଗାକୁ ଶୀତ ଦିନରେ ଯିବା । ଟ୍ରେନରେ ଅନ୍ୟ ସ୍ଥାନମାନଙ୍କୁ ଓ ନୌକାରେ ଅନ୍ୟ ସ୍ଥାନମାନଙ୍କୁ ଯିବା । ତେଣୁ ଏଠାରେ ଟୁର୍ କରିବା ସମୟଟି ହେଉଛି ବର୍ଷା ସମୟ ।'

'ଆମେ କେମିତି ମୋଟର ଲଞ୍ଚରେ ଯିବା ଯେ । ଯୁଦ୍ଧ ପାଇଁ ସେସବୁ ମେସୋପଟାମିଆଁ ଯାଇଛି ।' ସାହେବ କହିଲେ ।

'ଆପଣଙ୍କ ପାଇଁ ଘରଥିବା ନୌକା ନେବା । ସେ ଘରଗୁଡ଼ିକ ଏତେ ଛୋଟ ଯେ ସେଠି ଖଟ ପଡ଼ିପାରିବନି । ଆପଣଙ୍କୁ ଟେବୁଲ ଉପରେ ଶୋଇବାକୁ ପଡ଼ିବ ।'

'ଏତ ବଡ଼ ମୁଷ୍କିଲ କଥା ।'

'ଏତେ କଷ୍ଟ ବି ନୁହେଁ । ତେବେ ଯାହାହେଲେ ବି ସାର ଆପଣ ଯଦି

ରହିଁବେ ତ ସାରାବର୍ଷରେ ଟୁର୍ ପ୍ରୋଗ୍ରାମ ମୁଁ ପ୍ରସ୍ତୁତ କରିଦେବି । ଯେତିକି ଜାଗା ବୁଲିବା ଦରକାର, ବୁଲିହେବ । ପ୍ରତ୍ୟେକ ସ୍ଥାନରେ ପୁଲିସ ଷ୍ଟେସନ ଓ ଅନ୍ୟାନ୍ୟ ମୁଖ୍ୟ ଜାଗାଗୁଡ଼ିକ ବିଷୟରେ ମଧ୍ୟ ମୁଁ ଉଲ୍ଲେଖ କରିବି ଯେଉଁ ସ୍ଥାନ ମାନଙ୍କୁ ଆମେ ଯାଞ୍ଚ କରିବାକୁ ଯିବା ।'

'ଠିକ୍ ଅଛି, ତୁମେ ସେସବୁ ପ୍ରସ୍ତୁତ କର । ମୋ ସହିତ ତୁମେ ପୁରାମାତ୍ରାରେ ସହଯୋଗ କରିବ ।'

ଏଣିକି, କୃପା ତାର ବଳକା ସମୟମାନଙ୍କରେ ବସି ଟୁରପ୍ରୋଗ୍ରାମ ତିଆରି କରେ ଓ ସାହେବଙ୍କୁ ଦେଖାଏ । ଏମିତି ସେ ଟୁରର ଏକ ପରବର୍ତ୍ତୀ କାର୍ଯ୍ୟ ନିର୍ଘଣ୍ଟ ତିଆରି କରିଥିଲା ଯେଉଥିରେ କି କମ୍ ଅସୁବିଧା ପଡ଼ିବ । ନିଜ ଜୀବନରେ ସ୍ୱଚ୍ଛଳତା ଏବଂ ନିୟମାନୁବର୍ତ୍ତିତା ଉପରେ କୃପାସିନ୍ଧୁ ଖୁବ୍ ସଚେତନ ଥିବାରୁ ଓ କିଛି ସଞ୍ଚୟ ବଢ଼ାଇ ପାରିଥିବାରୁ ଖୁସି ବି ଥିଲା । ଘରକୁ ଫେରିବା ବେଳେ ବେଶ୍ କିଛି ଚାଉଳ, ଡାଲି, ମସଲାମସଲି ଓ ଅନ୍ୟାନ୍ୟ ଖର୍ଚ୍ଚ ସାମଗ୍ରୀ ନିଜ ଜମିରେ ଯାହା ଉତ୍ପାଦନ ହେଉଥିଲା, ସେସବୁ ଧରି ଆସୁଥିଲା । ହରିବନ୍ଧୁ ମଧ୍ୟ ଗାଁରୁ ବହୁତ କିଛି ଜିନିଷ ପଠେଇ ଦେଉଥିଲା । ତେଣୁ ସେସବୁ କିଣିବାର ଖର୍ଚ୍ଚ ତାର ବଂଚି ଯାଉଥିଲା । ଷ୍ଟେନୋଗ୍ରାଫରର ମାସିକ ଦରମା ୬୦ଟଙ୍କା । କଟକ ରହଣୀ କାଳରେ ପିଲାଙ୍କ ସ୍କୁଲ ଖର୍ଚ୍ଚ ମିଶେଇ ତାହା ଯଥେଷ୍ଟ ହେଉ ଥିଲା । ଛୁଟିଦିନ ମାନଙ୍କରେ ତ ଖର୍ଚ୍ଚ ଆଦୌ ନାହିଁ । କାରଣ ସମସ୍ତେ ଗାଁକୁ ଛୁଟୀରେ ଯାଇ ଗାଁ ଜମିର ଅର୍ଜନରେ ଚଳୁଥିଲେ । ଫି ଓ ଗ୍ରାଚ୍ୟୁଟି ବାବଦରେ ସେ ଯାହା ପାଉଥିଲା, ଏସବୁ କଥା ପାଇଁ ସେ ଟଙ୍କାରୁ ବେଶ୍ କିଛି ସେ ବଂଚେଇ ରଖି ପାରୁଥିଲା । କିରାଣୀ ହିସାବରେ ତାର ଦରମା ତ ନଗଣ୍ୟ । କୃପା ତାର ଆର୍ଥିକ ଉନ୍ନତି ଘଟେଇ ବେଶ୍ ଖୁସିବାସିରେ ଚଳୁଥିଲା ।

ଯୁଦ୍ଧ ଆରମ୍ଭ ହେବାର ତିନିବର୍ଷ ଭିତରେ କୃପା ଜାଣିପାରିଲା ଯେ ମହାରାଜ୍ୟ ସଚିବ ମି.ମଣ୍ଟେଗ୍ୟୁ କଣ ସବୁ ଘୋଷଣା କରିଛନ୍ତି । ଘୋଷଣାଟି କ'ଣ ବୋଲି ସେ ଥରେ ସାହେବଙ୍କୁ ପଚାରିଲା । ଘୋଷଣାଟି ରାଜନୀତି ସହିତ ସଂଶ୍ଳିଷ୍ଟ ବୋଲି ସାହେବ କହିବାରୁ ତାର ସେଥିରୁ ଆଗ୍ରହ କମିଗଲା । ଅଯଥାଟାରେ ସେଥିରେ ଆଉ ମୁଣ୍ଡ ଖେଳାଇଲା ନାହିଁ ।

ଏହି ସମୟରେ ପୋଲିସ ସାହେବ ମଧ୍ୟ ବଦଳି ହୋଇ ଆସିଲେ । ଆଉ କେତେକ ପୋଲିସମାନେ ବି ସୈନ୍ୟ ବିଭାଗରେ ଯୋଗ ଦେଲେ । ତେଣୁ କେହି ବ୍ରିଟିଶ୍ ଅଫିସର ସେମାନଙ୍କ ଦାୟିତ୍ୱ ଗ୍ରହଣ କରିବାକୁ ନ ମିଳିବାରୁ ରାୟସାହେବ

ପୋଲିସ ସୁପରିଣ୍ଟେଣ୍ଡେଣ୍ଟ ଦାୟିତ୍ୱ ଗ୍ରହଣ କଲେ । ସବୁ ଗୋପନୀୟ କାଗଜପତ୍ର ତାଙ୍କ ହାତରେ ପଡ଼ିଲା । ସେଗୁଡ଼ିକର ଠିକଣା କାର୍ଯ୍ୟ ନିର୍ବାହ ମଧ୍ୟ କରିବାକୁ ତାଙ୍କୁ ହେଲା । ସେ ଗୋପନୀୟ କାଗଜପତ୍ରର ଦୁଇଟି ସେଟ୍ ତିଆରି କଲେ । ଗୋଟାଏ ସେଟ ତଦାରଖକାରୀ ଅଫିସରଙ୍କ ତନଖି ପାଇଁ ସୁନ୍ଦର ଭାବେ ସଜାଡ଼ି ଦରକାରୀ ତଥ୍ୟ ସହିତ ରଖାଗଲା । ଆଉ ସେଟ୍‌ଟି ନିଜର ବ୍ୟକ୍ତିଗତ ବ୍ୟବହାର ପାଇଁ ରଖିଲେ ।

ଏଇ ସେଟ୍‌ଟିରେ ବହୁତ କିଛି ନିଷ୍ଠୁର ସତ୍ୟ ତଥ୍ୟ ଥିଲା ଯାହା ଦେଖିଲେ ଯାଞ୍ଚ କରୁଥିବା ଅଫିସରର ମନରେ ବିସ୍ମୟ ସୃଷ୍ଟି ହୁଅନ୍ତା ।

ଏସବୁ କାମ ସାରିବା ପରେ ରାୟସାହେବ କୃପାକୁ ଡାକି ପଠେଇଲେ ଏବଂ ସେଠାକାର ଜଣେ ଗଣ୍ୟମାନ୍ୟ ଲୋକଙ୍କୁ ସେ ସନ୍ତୁଷ୍ଟ କରିବାକୁ ଚାହେଁ କି ବୋଲି ତାଙ୍କୁ ପଚାରିଲେ । ଏ ବିଷୟରେ କୃପାର ମନା କରିବାର କାରଣ ନଥିଲା ।

ପ୍ରଥମେ ରାଜା ମାନସିଂଙ୍କ କଥା ରାୟସାହେବ କହିଲେ । ସେ ସବୁବେଳେ ତାଙ୍କ ପଡ଼ୋଶୀ ରାଜା ହରିଚ୍ଚନ୍ଦନଙ୍କ ସହ କଳହରେ ଲିପ୍ତ ଥାନ୍ତି ଓ ତାଙ୍କ ଜମିଦାରୀ ସମ୍ଭାଳୁଥିବା ଚାଷୀଙ୍କୁ ଶୋଷଣ କରନ୍ତି । ଅଫିସରମାନଙ୍କ ଉପରେ ମଧ୍ୟ ଗରମ ରହିଥାନ୍ତି ଠିକ୍ ତାଙ୍କ ବାପାଙ୍କପରି । ପୂର୍ବ କଲେକ୍ଟର ତେଣୁ ତାଙ୍କ ବନ୍ଧୁକ ଲାଇସେନ୍ସ ରଦ୍ଦ କରିଦେଇଥିଲେ, ଏବଂ ଶେଷ ଦରବାରକୁ ତାଙ୍କୁ ଆମନ୍ତ୍ରଣ କରି ନଥିଲେ । ଏମିତି ଅନେକ କଥାରେ ତାଙ୍କୁ ଅପମାନିତ କରୁଥିଲେ । ଏବେ ଯେହେତୁ ଜଣେ ନୂଆ କଲେକ୍ଟର ଆସିଛନ୍ତି, ତାଙ୍କର ସହାନୁଭୂତି ପାଇବାର ଆଶା ସେ ରଖିଥିବେ ।

'ତାଙ୍କ ଘରେ ଚାକରାଣୀ ଝିଅ ଅଛନ୍ତି କି ?'

'ଦଶ କୋଡ଼ିଏ ଜଣ ଥିବେ ହୁଏତ ।'

'ତାହେଲେ, ସେ ନିର୍ଦ୍ଦେଶନାମା ନେବାକୁ ମୋ ପାଖକୁ ଲୋକଟିଏ ପଠାନ୍ତୁ । ପରେ ଆମେ ସେ ବାଟ ଦେଇ ଟୁର୍ ଗଲାବେଳେ, ସେ କଲେକ୍ଟର ସାହେବଙ୍କୁ ତାଙ୍କ ଘରକୁ ନିମନ୍ତ୍ରଣ କରିବେ । ମୋ କହିବା ଅନୁସାରେ ସବୁକିଛି କରିବେ ଯଦି, କଲେକ୍ଟର ତାଙ୍କର ଆପଣାର ବନ୍ଧୁ ବନିଯିବେ ଏବଂ ସେ ତାଙ୍କର ଦୟା ଦୃଷ୍ଟିରେ ରହିବେ –ଏ କଲେକ୍ଟର ଜଣେ ଅବିବାହିତ ବ୍ୟକ୍ତି ଅଟନ୍ତି ।'

'ଅତି ଉତ୍ତମ କଥା । ରାଜା ଭଲ ଖର୍ଚ୍ଚ କରିବେ । ସେ ପୁଣି ହରିଚନ୍ଦନ ରାଜା । ସେ ଖୁବ୍ ଧନୀ । ଆମକୁ ଟିକେ ଖୁସିରେ ରଖିଲେ ତାଙ୍କର ଆର୍ଥିକସ୍ୱାସ୍ଥ୍ୟ ବି ଖୁବ୍ ଭଲ ରହିବ ।'

'ସେ ମଧ୍ୟ ସରକାରଙ୍କ ଅନୁଗ୍ରହ ପାଇବାରୁ ବାଦ୍ ପଡ଼ି ଯାଇଛନ୍ତି । ଲୋକେ

କହନ୍ତି, ସେ ଇଂରେଜ ଓ ତାଙ୍କ ଶାସନକୁ ଲୋକେ କାଳେ ଖୁବ୍ ଘୃଣା କରନ୍ତି । ତେଣୁ ତାଙ୍କର ବି ବହୁତ ଅଭିଯୋଗ ଥିବ । ସେସବୁର ଖବର ଆମକୁ ନେବାକୁ ହେବ ଏବଂ ସେ ସବୁର ସମାଧାନ କରିହେବ କି ନାହିଁ ସେ ବିଷୟରେ ଅନୁଧାନ କରିବାକୁ ପଡ଼ିବ ।'

ସେ କଥା ସବୁର ସନ୍ଧାନ ମୁଁ ନେଇ ସାରିଛି । ତାଙ୍କର ପାରିବାରିକ ଐତିହ୍ୟ ଖୁବ୍ ପୁରୁଣା । ଉତ୍କଳର ପୁରାତନ ରାଜାଙ୍କଠାରୁ ସେ ଜାଗିରି ପାଇ ରାଜା ବୋଲାଇ ଆସୁଛନ୍ତି । କିନ୍ତୁ ୧୮୭୨ରେ ସରକାର ଉପାଧିକାରୀ ମାନଙ୍କର ତାଲିକା ପ୍ରସ୍ତୁତ କଲାବେଳେ ଏଇ ପ୍ରକାର ଉପାଧି ମାନଙ୍କୁ ସରକାରୀ ଭାବେ ନିବନ୍ଧିତ କରିବାବେଳେ, ଏ ରାଜାଙ୍କ ବାପାଙ୍କ ନାମ ସେ ତାଲିକାରୁ ବାଦ୍ ପଡ଼ିଯାଇଥିଲା । ତେଣୁ ସେ ସରକାରୀ ଭାବେ ରାଜା ନ ହେଲେ ବି ଲୋକ ମୁଖରେ ରାଜା ବୋଲାଉଥିଲେ । ତେଣୁ ସରକାରୀ ଅନୁଗ୍ରହରୁ ସେ କିପରି ଏ ସମ୍ମାନ ପାଇପାରିବେ, ସେ ବିଷୟରେ ମୁଁ ତାଙ୍କୁ ସାହାଯ୍ୟ କରିପାରିବି । ଏଥିପାଇଁ କିନ୍ତୁ ତାଙ୍କୁ ବେଶ୍ କିଛି ଖର୍ଚ୍ଚାନ୍ତ ହେବାକୁ ହେବ । ଏଇଠି ତ ତାଙ୍କର କଥା ଅଟକିଛି । ସେ କିଛି ଖର୍ଚ୍ଚ କରିବେନି କି ତାଙ୍କ ଉପାଧୀର ସରକାରୀକରଣ କରିବେ ନାହିଁ । ଆଉ, ଏଛଡ଼ା ସାଲେପୁର ହତ୍ୟାକାଣ୍ଡ ବି ଅଛି । ସେ ବିଷୟରେ କିଛି ଜାଣିଛ କି ?'

'ନା ଅପରାଧ ଘଟଣା ଗୁଡ଼ିକ ମୋର କାର୍ଯ୍ୟ ପରିସର ଭିତରେ ନାହିଁ ।'

'ଶୁଣ, ସେ ଇନ୍ସପେକ୍ଟର ଜଣକ ମୃତ ଦେହଟିକୁ ପୋଷ୍ଟମର୍ଟମ ପାଇଁ ଏତେ ଡେ଼ରିରେ ପଠେଇଲେ ଯେ, ଶବଟା ପୂରା ପଚି ଶଢ଼ି ଯାଇଥିଲା । ତେଣୁ ମୁଖ୍ୟ ଚିକିତ୍ସକ ମୃତ୍ୟୁର କାରଣ ସମ୍ପର୍କରେ ସଠିକ୍ ରିପୋର୍ଟ ଦେଇ ପାରିଲେ ନାହିଁ । ସେ କେଶ୍‌ଟା ଡାକ୍ତରୀ ସାକ୍ଷ୍ୟ ପ୍ରମାଣ ବିନା ପଡ଼ିଯିବ । ଏମିତି ଭାବେ ସେ ସବ୍‌ଇନ୍ସପେକ୍ଟର ବହୁତ ଆୟ କରିଚାଲିଛି । ଯଦି ଆମେ ତାକୁ ସାହାଯ୍ୟ କରିବା, ସେ ମଧ୍ୟ କିଛି ଆମକୁ ଦେବ । ବଡ଼ସାହେବ ଏ କେଶ୍ ବିଷୟରେ ଭୀଷଣ ଅସନ୍ତୁଷ୍ଟ ଅଛନ୍ତି ।'

'କାହାରିଠୁଁ କିଛି ନେବା ଦରକାର ନାହିଁ । ଆମେ ତାକୁ ରକ୍ଷା କରି ପାରିବୁ ନାହିଁ – ସେ ଦଣ୍ଡ ପାଇବ ତ ପାଉ ।'

'ଆଉ ସେ ଗୋରୁବାବୁ ଡେପୁଟୀ କଲେକ୍ଟରର । ସେ କଲେକ୍ଟରଙ୍କୁ କହୁଛନ୍ତି ଯେ ଫାଇଲ ପତ୍ର ବିଭାଗରେ ଯେତେ କିରାଣୀ ଅଛନ୍ତି, ସେ ତୁଳନାରେ କାମ ଯଥେଷ୍ଟ ବେଶୀ । ଏକଥା ସେ ତାଙ୍କ ଜୋଇଁର ଚାକିରୀକୁ ଆଖିରେ ରଖି କହୁଛନ୍ତି । କଲେକ୍ଟର ଗୋଟାଏ ନୂଆ କିରାଣୀ ପୋଷ୍ଟ ପାଇଁ ସୁପାରିଶ୍ କରିବେ ତ ଗୋରୁବାବୁ

ତାଙ୍କ ଜୋଇଁଙ୍କୁ ସେଠାରେ ରଖେଇ ଦେବେ ଯିଏ କି ସେ ପୋଷ୍ଟ ପାଇଁ ପୂରାପୂରି ଅଯୋଗ୍ୟ । ଘରୁବାବୁ ନିଜର ସମ୍ପର୍କକୁ ଲୁଚେଇ ଏ ବ୍ୟବସ୍ଥା କରୁଛନ୍ତି ଯେଉଁଟା କି ସରକାରୀ ନିୟମ କାନୁନର ଖିଲାପ ହେବା କଥା ।'

'ଏ କଥାଟା ସହଜରେ ହୋଇପାରିବ । ମୁଁ ଯାଇ ଘରୁବାବୁଙ୍କୁ କହିବି ଯେ ସେ ଯାହାକହୁଛନ୍ତି ତା ଉଚିତ ବାଟରେ କରନ୍ତୁ । ନହେଲେ କଲେକ୍ଟର ଏକଥା ନିଶ୍ଚୟ ଜାଣିପାରିବେ ।'

'ତୁମେ ଯେମିତି କହୁଚ, ଏ ସମସ୍ୟା ଏତେ ସହଜ ନୁହେଁ । ଖବରଟା ତ ଗୋଟାଏ ଉଡ଼ା ଖବର । ଘଟଣାର ସତ୍ୟାସତ୍ୟ ଜାଣିବା ଉଚିତ ଯାହାକି ଏଡ଼େ ସହଜ ନୁହେଁ । ଘରୁବାବୁ ମେଦିନୀ ପୁରର ଲୋକ । ତାଙ୍କ ଜୋଇଁ ବାଲେଶ୍ୱରର ।'

'ତେବେ କଥାଟା ମୋ ଭାଇ ମାଧ୍ୟମରେ ହୋଇ ପାରିବ ।'

'ଭଲ କଥା । ହଁ, ଆଉ ଗୋଟାଏ କେଶ ହେଉଚି ରାଜା ପରିଜା ଏବଂ ସେ ନୂଆ ଟାପୁ କେଶ୍ । ତୁମେ ସେ ବିଷୟରେ କିଛି ଜାଣ ?'

'ହଁ, ସେ ଦିନ କଲେକ୍ଟରଙ୍କ ଅଫିସରୁ କଣ ଗୋଟାଏ ଆସି ଥିଲା । ଆପଣ ଟିକେ କହିଲେ କଥାଟା ସତରେ କଣ ?'

'ତେବେ ଶୁଣ । ମହାନଦୀ ମୁହାଣରେ ଗୋଟାଏ ଟାପୁ ସୃଷ୍ଟି ହୋଇଛି ସମୁଦ୍ର ଭିତର ଆଡ଼କୁ । ପରିଜା ରଜାଙ୍କର ଜାଗିରି ଏଇ ସମୁଦ୍ର କୂଳଯାଏ ମାଡ଼ି ଯାଇଛି । ସେ ଏବେ ଦାବୀ କରୁଛନ୍ତି ଯେ ସେ ଟାପୁଟୀ ବି ତାଙ୍କ ଜାଗିରି ଭିତରେ ଆସିବ । ମାତ୍ର କମିଶନର କହୁଛନ୍ତି ଯେ ଟାପୁଟା ସରକାରଙ୍କର । କଥାଟି ଏଇଠି ଅଛି ଯେ ସମୁଦ୍ର ଗର୍ଭର ଦ୍ୱୀପଟି ତ ନଦୀ ଭିତରେ ସୃଷ୍ଟି ହୋଇ ନାହିଁ ତେଣୁ ତାହା ସରକାରଙ୍କର । ମୁଁ ଭାବୁଚି ଟାପୁଟା ପରିଜା ରାଜାଙ୍କର ବୋଲି ଦର୍ଶାଇ କମିଶନରଙ୍କୁ ରିପୋର୍ଟ କରିବା କଣ ଦରକାର ?'

'ମୁଁ ତ ସେମିତି ରିପୋର୍ଟ ଦେବିନି । ତେବେ, ଆପଣ ତାର ମ୍ୟାପ ରଖିଛନ୍ତି କି ?'

'ଏଇ ନକ୍ସଟା ଦେଖ । ଦ୍ୱୀପର ସୀମାଟି ପେନସିଲ ଦ୍ୱାରା ଗାର କାଟି ଚିହ୍ନିତ କରାଯାଇଛି ।'

କୃପାସିନ୍ଧୁ ଚୁପଚାପ ନକ୍ସାଟାକୁ କିଛି ସମୟ ଧରି ପଢ଼ିଲା ଓ ତାପରେ କହିଲା, 'ଦେଖନ୍ତୁ ସେଇ ବିନ୍ଦୁ ଦିଆଯାଇଥିବା ରେଖାଟିକୁ । ଏହି ରେଖାଟିକୁ ବଢ଼େଇ ଦେଲେ ଏହା ଦ୍ୱୀପ ପାଖରେ ପହଞ୍ଚୁଛି । ତେଣୁ ଦ୍ୱୀପଟି ସେଇ ଜିଲ୍ଲାର ହେବ କି ନାହିଁ ?'

'ଏ କଥା କେମିତି ହେବ ? ତୁମେ କଣ କହୁଛ ଯେ କଟକ କଲେକ୍ଟରଙ୍କଠୁ ବାଲେଶ୍ୱର କଲେକ୍ଟରଙ୍କୁ ସହଜରେ ଲାଞ୍ଚ ଦେଇ ହେବ ?'

'ନା ନା ସେକଥା ନୁହେଁ ଯେ- ମୁଁ କଲେକ୍ଟରଙ୍କୁ ସୂଚେଇ ଦେବି ଯେ ଦ୍ୱୀପଟି ବିଷୟରେ ତାଙ୍କର ମୁଣ୍ଡ ଖେଳାଇବା ଉଚିତ୍ ହେବନି । ତେଣୁ ସେ ଏଇ ଗୋଳମାଳିଆ କାମରୁ ମୁକ୍ତ ପାଇଲେ ଖୁସି ହୋଇଯିବେ ଏବଂ ସମସ୍ୟାଟିର ସମାଧାନ ପାଇଁ ଆଉ କାହାକୁ ଛାଡ଼ିଦେବେ । ସେ ରିପୋର୍ଟ ଦେବେ ଯେ ଦ୍ୱୀପଟି ରଜାଙ୍କ ଜିଲ୍ଲାରେ ଅବସ୍ଥିତ ନୁହେଁ । ତାପରେ କମିଶନର ବାଲେଶ୍ୱର କଲେକ୍ଟରଙ୍କୁ ପଚାରି ପଠାଇବେ ପ୍ରକୃତରେ ଦ୍ୱୀପଟି ତାଙ୍କ ଜିଲ୍ଲା ଅଧୀନରେ କି ନୁହେଁ ବୋଲି । ସେ ଯଦି ନୁହେଁ ବୋଲି କହନ୍ତି ତ କେଶ୍‌ଟି ସରକାରଙ୍କ ବିଚାର ପାଇଁ ପଠାଯିବ । ସରକାର ବିଚାର କରିବେ ଦ୍ୱୀପଟି କେଉଁ ଜିଲ୍ଲା ଅଧୀନରେ ରହିବ ଏଥିପାଇଁ ବହୁତ ସମୟ ଲାଗିବ ।'

'ଯଦି ବାଲେଶ୍ୱର କଲେକ୍ଟର ଦ୍ୱୀପଟିକୁ ତାଙ୍କ ଜିଲ୍ଲାଭୁକ୍ତ ବୋଲି କହନ୍ତି, ତେବେ ?'

"ତଥାପି, ଏସବୁ ଚିଠିପତ୍ର ହେବାକୁ ମାସେରୁ କମ୍ ସମୟ ଲାଗିବନି । ତାରି ଭିତରେ ପରିଜାରଜା ଟାପୁର ଦଖଲ ନେବାକୁ ତାଙ୍କ ଲୋକଙ୍କୁ ପଠାଇବେ । ବଡ଼ ବଡ଼ ଅଫିସରଙ୍କର ସେ ପ୍ରିୟ ଓ ପାଖ ଲୋକ । ସେମାନେ ଏହି ଟାପୁ ଦଖଲ ପାଇଁ ତାଙ୍କୁ ନିଶ୍ଚୟ ସାହାଯ୍ୟ କରିବେ । ଏଥିରୁ ବେଶୀ କିଛି ଫାଇଦା ହେବ ବୋଲି ମୁଁ ଆଦୌ ଭାବୁନି ।"

'ତାପରେ ଆଉ ଗୋଟାଏ କେଶ୍ ଯେଉଁଥିରେ କୃଷ୍ଣଚନ୍ଦ୍ରବାବୁଙ୍କର କିଛି ଉଦ୍ଦେଶ୍ୟ ରହିଛି । ତୁମେ ତ ଜାଣ ସେ ଖୁବ୍ ଅତ୍ୟାଚାରୀ ଜମିଦାର । ତାଙ୍କ ରୟତମାନଙ୍କ ସହିତ ସବୁବେଳେ ଝିକ୍ ଝିକ୍ ଲାଗି ଥାଆନ୍ତି । ଏଇ ଅଳ୍ପଦିନ ତଳେ ତାଙ୍କର ହାତୀଟି ମରିଗଲା । ତେଣୁ ସେ ଏକର ପିଛା ଦୁଇ ଅଣା କରି ରୟତଙ୍କ ଠାରୁ 'ହାତୀୟନା'କର ଉଠେଇ ଆଉ ଗୋଟାଏ ନୂଆ ହାତୀ କିଣିବାକୁ ଚାହୁଁଥିଲେ । ତେଣୁ କେତେକ ଚାଷୀ କଟକ ଆସି ଓକିଲଙ୍କ ସହ ସଲାହ ମସୁଧା କରିଥିଲେ ଏବଂ ପରେ ଗୋଟାଏ 'ରୟତ ସଂଘ ଗଢ଼ି' ଏ ପ୍ରକାର ଶୋଷଣ ବିରୁଦ୍ଧରେ ଲାଗିଲେ । ସେ ସଂଘର ନେତା ହେଉଛନ୍ତି ହରିବନ୍ଧୁ ବେହେରା । ଜମିଦାର ବାବୁ ଦଶହଜାର ପର୍ଯ୍ୟନ୍ତ ଟଙ୍କା ଦେଇ କନଭିକ୍ସନ କରି ହରିବଂଧୁକୁ ଜେଲ ପଠେଇବା ମତଲବରେ ଅଛନ୍ତି ।'

'ନିଜ ଖର୍ଚ୍ଚରେ ନୂଆ ହାତୀଟିଏ କିଣିବାକୁ ତ ଯାଠୁଁ କମ୍ ଖର୍ଚ୍ଚ ପଡ଼ିବ ।'

'ସେ କଥା ସତ ଯେ, ତେବେ ରୟତମାନଙ୍କୁ ଥୋଡ଼େ ଚଖେଇ ତାଙ୍କ ସଂଘ ଭାଂଗିବାର ଯୋଜନାରେ ସେ ଅଛନ୍ତି । ତା ନହେଲେ ସେମାନେ ଏଇ ଅନ୍ୟାୟ ଶୋଷଣ ବିରୁଦ୍ଧରେ ଯାଇ ତାଙ୍କ ଶୀକାରର ପରିପନ୍ଥୀ ହେବେ ନାହିଁ ବୋଲି ବାବୁଙ୍କର ଭୟ ବି ଅଛି ।'

'ଏ କଥାରେ ମୋର ଆଉ କିଛି କହିବାର ନାହିଁ ।' କୃପା କହିଉଠିଲା । କୃଷ୍ଣଚନ୍ଦ୍ରବାବୁଙ୍କ ଟଙ୍କା ତାଙ୍କ ପାଖରେ ଥାଉ । ନିରୀହ ଲୋକଙ୍କୁ ଜେଲ ପଠାଇବାକୁ ମୁଁ କିଛି କରିବି ନାହିଁ ।'

'ତମର ଯା ଖୁସି ତା କର । ତେବେ ତୁମକୁ ଗୁଡ଼ାଏ ବାଟ ମୁଁ ବଢେଇ ଦେଲି ବୋଲି କେମିତି ଧନୀମାନଙ୍କୁ ସହାୟତାର ସଦୁପଯୋଗ କରିବ ।' ରାୟ ସାହେବ କହିଲେ ।

ତହିଁ ପରବର୍ଷ 'ସନ୍ଧି' ଘୋଷଣା ହେଲା । ସମସ୍ତେ ଏହା ଶୁଣି ଖୁସି ହେଲେ । କୃପାସିନ୍ଧୁ ସବୁଠୁ ବେଶୀ ଖୁସି ହେଲା କାରଣ ତା ମତାନୁସାରେ ଇଂରେଜମାନେ ଜିତିଲେ । ସେ ଆଶା କରିଥିଲା ଯେ ବାଣିଜ୍ୟ ବ୍ୟବସାୟର ଉନ୍ନତି ଘଟି ଦରଦାମ କମି ଯିବ । ସବୁଠାରେ ସୁସ୍ଥ ବାତାବରଣ ବିରାଜମାନ କରିବ । ମାତ୍ର ସେମିତି କିଛି ଦେଖାଗଲା ନାହିଁ । ବାଣିଜ୍ୟ ବ୍ୟବସାୟର ପତନ ହେଲା । ଦରଦାମ ହୁହୁ ହୋଇ ବଢ଼ି ଚାଲିଲା । ଶାନ୍ତିର ପ୍ରାରମ୍ଭରେ କିଛି ଶୁଭସୂଚନା ଆସିବାର ଦେଖାଗଲା ନାହିଁ ।

'ସନ୍ଧି' ଘୋଷଣାର କିଛି ଦିନ ପରେ ଯୁଦ୍ଧରେ ଯୋଗ ଦେଇଥିବା ଲୋକେ ଫେରିଆସିଲେ । ସେମାନେ ବହୁତ ଟଙ୍କା ପଇସା ଧରି ଫେରିଲେ ଏବଂ ସରକାରଙ୍କ ବଦାନ୍ୟତା ପାଇଁ ସରକାରଙ୍କୁ ଭୁରିଭୁରି ପ୍ରଶଂସା କଲେ । ତାଙ୍କ ମଧ୍ୟରୁ ଜଣକୁ ପାଇ କୃପା ତାଙ୍କର ଅନୁଭୁତି କଥା ପଚାରିଲା । ସେ 'ମାରସ୍' ନାମକ ଗୋଟାଏ ଜାଗାରେ ଯୁଦ୍ଧ ପାଇଁ ଯାଇ ଥିଲେ । ସେଇଟା ଏକ ବଡ଼ ସହର-ଗାଈଗୋରୁମାନେ ସେଠାରେ ରାସ୍ତାରେ ବୁଲନ୍ତି ନାହିଁ । ମାତ୍ର ଦୁଧ କିଣିବାରେ ସେଠି ଅସୁବିଧା ନାହିଁ । ସେଠାରେ ଏତେ ଗାଢ଼ କୁହୁଡ଼ି ହେଉଥିଲା ଯେ ଜଣେ ନିଜ ହାତକୁ ଦେଖିପାରିବା ଅସମ୍ଭବ ଥିଲା ।

ଗାଁକୁ ଯାଇ ଫ୍ରାନ୍ସର ଚାଷୀମାନେ କିପରି ଚାଷବାସ କରନ୍ତି ତାହା ସେ ଦେଖିଥିଲେ । ଧାନ ବ୍ୟତୀତ ରବି ଓ ଗହମ ଚାଷ ସେଠାରେ ହୁଏ । ସେମାନଙ୍କ ଚାଷ ପ୍ରଣାଳୀ ବିଷୟରେ ମଧ୍ୟ କିଛି ସେ କହିଲା । ବଳଦ ବିନା ଘୋଡ଼ାକୁ ନେଇ ଜମି କିପରି ଚାଷ କରାଯାଏ ଏକଥା ସବୁକୁ କୃପା ଖୁବ୍ ଆଗ୍ରହ ସହକାରେ ଶୁଣି ଚାଲିଥିଲା ।

ଲୋକଟି କହୁଥାଏ ଯେ ଫ୍ରାନ୍ସରେ ମଇଁଷି ଦେଖାଯାଆନ୍ତି ନାହିଁ । ସେକଥା କୃପାର ବିଶ୍ୱାସ ହେଲା ନାହିଁ । ତେଣୁ ସେ କଥାର ଉପସଂହାର କରି ମନ୍ତବ୍ୟ ଦେଲା ଯେ ଲୋକଟା ଗୋଟାଏ ମସ୍ତବଡ଼ ମିଥ୍ୟାବାଦୀ । ଜଣେ ବାରବୁଲା ଯାଯାବରର କାହାଣୀ କହିବା ଛଡ଼ା ସେ ଆଉ କିଛି ଜାଣେନି ।

## ଅଷ୍ଟାଦଶ ପରିଚ୍ଛେଦ

ଯୁଦ୍ଧ ସଂତ୍ରସ୍ତ ଇଉରୋପକୁ ଶାନ୍ତି ଫେରି ଆସିଲା, ହେଲେ ଭାରତରେ ଶାନ୍ତି ବ୍ୟାହତ ହେଲା ଏବଂ ଆରମ୍ଭ ହେଇଗଲା ଗଣ୍ଡଗୋଳ । ଆଦୌ ଖବର କାଗଜ ପଢୁ ନ ଥିବା କୃପାସିନ୍ଧୁ ଉଡ଼ା ଖବରରୁ ଜାଣିଲା ଯେ ବିଭିନ୍ନ ସ୍ଥାନରେ ଦଂଗା ହଙ୍ଗାମା ଲାଗି ରହିଛି । ଏହି ଉଡ଼ା ଖବର ଗୁଡ଼ିକ ଦିନକୁ ଦିନ ତାକୁ ବେଶୀ ସଂତ୍ରସ୍ଥ କରିବାରୁ ସେ ତାର ସାହେବଙ୍କ ପାଖକୁ ଯାଇ ଇଂରାଜୀ ଖବର କାଗଜଟି ମାଗି ଆଣିଲା । ସେ କାଗଜଟିକୁ ସାହେବ କଲିକତାରୁ ମଗାଉଥିଲେ । ତାପରେ ଯାଇ କୃପାସିନ୍ଧୁ ଜାଣିଲା ଯେ ପଞ୍ଜାବର ଲୋକେ ଇଂରେଜ ବିଦ୍ରୋହୀ ହୋଇ ଯେଉଁଠାରେ ଇଂରେଜଲୋକ ଦେଖୁଛନ୍ତି, ଛୁଆପିଲା, ବୃଦ୍ଧ କି ସ୍ତ୍ରୀଲୋକ ନିର୍ବିଶେଷରେ ସଭିଙ୍କୁ ମାରିପକାଉଛନ୍ତି । ଏକଥା ଜାଣିବା ପରେ କୃପା ଆଉ ସେତେ ବେଶୀ ବିଚଳିତ ହେଲା ନାହିଁ । କାରଣ ଏତେ ଦୂର ଟପି ଦଂଗାହଙ୍ଗାମା ଓଡ଼ିଶାରେ ପହଞ୍ଚି ପାରିବ ନାହିଁ । ସରକାର ମଧ୍ୟ ଏ ଦିଗରେ କିଛି ନା କିଛି ପଦକ୍ଷେପ ନେବେ ।

ମାତ୍ର କିଛିଦିନ ବାଦେ, ଏ ଗୁଜବସବୁ ପରିବର୍ତ୍ତିତ ହୋଇ ଶୁଣାଗଲା । ଆଗରୁ ଏଇ ସବୁ ନିର୍ଯ୍ୟାତନା ଓ ପୀଡ଼ନ ଗୁଡ଼ିକ ଉଗ୍ରପନ୍ଥୀଙ୍କ ଦ୍ୱାରା କରାଯାଉଥିବାର ଶୁଣାଯାଉ ଥିଲା । ଏବେ ଶୁଣାଗଲା ଯେ ସୈନ୍ୟମାନେ ଉଗ୍ରପନ୍ଥୀଙ୍କୁ ଦମନ କରିବା ନାମ ନାମରେ ସେଇ ସବୁ କାଣ୍ଡ ଭିଆଉଛନ୍ତି । କୃପା ନିଜେ ଆଉ ବ୍ୟସ୍ତ ନ ହୋଇ ଅନ୍ୟ ଯେଉଁମାନେ ଏକଥାସବୁ ବିବ୍ରତ ହୋଇ ଆଲୋଚନା କରୁଥିଲେ ସେମାନଙ୍କୁ ମଧ୍ୟ ଶାନ୍ତିରେ ରହିବା ପାଇଁ କହିଲା । କାରଣ ତାର କଥା ଅନୁସାରେ ସେମାନେ ଓଡ଼ିଆ । ପଞ୍ଜାବରେ ଯାହା ଘଟୁଚି, ଓଡ଼ିଶାରେ ତାହା ଘଟିବାରେ ସମ୍ଭାବନା ନାହିଁ ।

ସ୍ୱରାଜ ବିଷୟରେ ଆଲୋଚନା ପଡ଼େ । ସଂଧ୍ୟାବେଳେ ଦିନେ ଜଣେ କିରାଣୀ କୃପାସିନ୍ଧୁ ପାଖକୁ ଆସି ସ୍ୱରାଜ ବିଷୟରେ ମତ ଦେଇ କହିଲା,

-'କୃପାବାବୁ ଶୁଣିଛି ନା ଆମେ ସ୍ୱରାଜ ପାଇବାକୁ ଯାଉଛୁଁ ।'

- 'ନା, ମୁଁ ତ ଏକଥା ଶୁଣିନି- ବିଶ୍ୱାସ ହେଉନି ।'

- 'କିନ୍ତୁ, କଥାଟା ସତ । ଇଂରେଜ ସରକାରଙ୍କ ପାର୍ଲ୍ୟାମେଣ୍ଟରେ ସଂସ୍କାର ପାଇଁ ଗୋଟାଏ ଆଇନ ପାସ୍ ହୋଇଛି ।'

'ଏ ସଂସ୍କାର ଆଇନ ଦଶବର୍ଷ ତଳେ ପାସ୍ ହୋଇଥିବା ଭଳି ମନେ ପଡୁଛି। କିନ୍ତୁ ତା ଦ୍ୱାରା ସେମିତି କିଛି କ୍ଷତି ତ ମୋର ହୋଇନି । ତୁମେ ଏତେ ବ୍ୟସ୍ତ ହେଉଛ ନାହିଁକି ?'

'ଏ ବର୍ଷ ସଂସଦ ନିର୍ବାଚନ ଇଂରେଜ ସଂସଦ ନିର୍ବାଚନ ଢ଼ଙ୍ଗରେ ଏଠି ହେବ । ଆମ ସମସ୍ତଙ୍କୁ ଭୋଟ ଦେବାକୁ ପଡ଼ିବ ।' କିରାଣୀଟି କହିଲା ।

'ସେଥିରେ ମୋର ଯାଏ କେତେ ଆସେ କେତେ ? ମୁଁ ଭୋଟ ଦେବିନି ।'

'କିନ୍ତୁ ଆମ ସମସ୍ତଙ୍କ ପାଇଁ ଏହା ଢ଼େର ଫରକ ପଡ଼ିବ । କାରଣ କଲେକ୍ଟର ସାହେବ ଇଲେକ୍ଟୋରାଲ ରୋଲ ପ୍ରସ୍ତୁତ କରିବେ । ତେଣୁ ଏଇଥି ଲାଗି ଅଫିସରେ ଆମ ଉପରେ ଢ଼େର ବେଶୀ କାମ ପଡ଼ିବ ।'

'ତା ଯଦି ହୁଏ, ତେବେ ଆମେ ଯାଇ ସାହେବଙ୍କୁ କହିବୁ, ଅଧିକ କାମ ପଡୁଥିବାର ଆଉ ଅଧିକ କିରାଣୀ ନିଯୁକ୍ତି ପାଇଁ ସାହେବ ସୁପାରିଶ କରନ୍ତୁ । ଯେତେ ବେଶୀ କାମ ହେବ, ସେତେ ଭଲ ।'

'ତା'ତ ସତ । ହେଲେ ଯଦି ଏ ଇଂରେଜ ରାଜ ସରିଯିବ, ତାପରେ କଣ ହିନ୍ଦୁ ନା ମୁସଲମାନ ରାଜ ଆସିବ ?'

'ଏମିତି ବାଜେ କଥା କଣ କହୁଛ ମ !' ମୁଁ ସବୁବେଳେ କହେ ଯେ ରାଜନୀତିଟା ସବୁଠାରୁ ବାଜେ ଜିନିଷ । ଏଇ ରାଜନୀତି ଆମକୁ ଓ ମୁସଲମାନମାନଙ୍କୁ ଉସୁକାଉଛି । ଆମେ ପରସ୍ପର ଉତ୍ତମ ପଡ଼ୋଶୀ ହୋଇ ରହିପାରିବୁନି କି ? ଓଡ଼ିଶାରେ ତ ହିନ୍ଦୁ ଓ ମୁସଲମାନ ଦିହେଁ ଭାଇଭାଇ ପରି ରହିଛନ୍ତି ।'

'ଆମେ ଚଳିପାରିବୁ ସତ ହେଲେ ରାଜନେତା ଓ ମୁସଲମାନ ମାନେ ଏ ବିଷୟରେ ଯାହା ସବୁ କହୁଛନ୍ତି ସେ ସବୁ ଯଦି ତମେ ଶୁଣିବ ତ... ।'

'ରାଜନୀତି ସହିତ ଶାନ୍ତିପୂର୍ଣ୍ଣ ସହାବସ୍ଥାନର ସମ୍ପର୍କ ନାହିଁ। ତେଣୁ ମୁସଲମାନ ଓ ଖୀରସ୍ଥାନ ମାନଙ୍କ ସହିତ ଭଲ ପଡ଼ୋଶୀ ସମ୍ବନ୍ଧ ରଖି ଚଳିବା ଉଚିତ୍ ହେବ ।'

'ଏକଥା ଅବଶ୍ୟ କରଣୀୟ କୃପାବାବୁ । ହେଲେ, ତୁମେ ଦେଖିବ ଖୁବ୍ ଶୀଘ୍ର ଓଡ଼ିଶା ଉପରେ ଏ ବିପତ୍ତି ଆସିଯିବ ।'

ପଞ୍ଜାବରେ ସାମ୍ପ୍ରଦାୟିକ ଦଂଗା ଘଟିବାର ପ୍ରାୟ ବର୍ଷେକ ବାଦେ ଏ

ଭବିଷ୍ୟବାଣୀ ଠିକ୍ ହେଲା । କୃପାସିନ୍ଧୁ କଚେରୀରୁ ଘରକୁ ଫେରିବାବେଳେ ଗୋଟାଏ ବରଯାତ୍ରୀଦଳ କଦମ ରସୁଲ ପାଖରେ ବ୍ୟାଣ୍ଡ ବାଜା ବଜେଇ ଯାଉଥିଲେ । କେତେଜଣ ମୁସଲମାନ ମସଜିଦ ଭିତରୁ ବାହାରି ଆସି ସେମାନଙ୍କ ଗାନାବାଜଣା ବନ୍ଦ କରିବାକୁ କହିଲେ । କାରଣ ସେତେବେଳେ ସେମାନେ ପ୍ରାର୍ଥନା କରୁଥିଲେ ଓ ଗୀତ ବାଦ୍ୟ ଦ୍ୱାରା ସେମାନେ ପ୍ରାର୍ଥନାରେ ଏକାଗ୍ରତା ରଖି ପାରୁ ନଥିଲେ । ହିନ୍ଦୁମାନେ ଗାନାବାଜଣା ବଂଦ ନ କରିବାରୁ ଆହୁରି ବେଶୀ ସଂଖ୍ୟାରେ ମୁସଲମାନମାନେ ମସ୍‌ଜିଦରୁ ବାହାରି ଆସି ବରଯାତ୍ରୀ ଦଳଙ୍କୁ ଅଟକାଇଲେ ଓ ବାଜେ ଭାଷାରେ ବକାବକି କଲେ । ଦି'ପଟର କଳିଗୋଳ ହେଲା । କୃପାସିନ୍ଧୁ ଆଗେଇ ଆସି କନ୍ଦଳ ମଝିରେ ଠିଆ ହୋଇ ଦିପଟକୁ ପାଟିଗୋଳ ବଂଦ ରଖିବାକୁ ଅନୁରୋଧ କଲା । ମାତ୍ର ଜଣେ ମୁସଲମାନ କୃପାସିନ୍ଧୁ ସହ ଉଦ୍ଧତଭାବେ କଥାବାର୍ତ୍ତା କଲା । କୃପା ତାକୁ ଚିହ୍ନିଥିଲା । ସେ ଥିଲା ଖୁରସିଦ୍ ଅଲ୍ଲୀ ।

'ରେ ବେଂଗର ପୁଅ, ଭଦ୍ରଲୋକଙ୍କ ସାମନାକୁ ଆସି ତୋତେ କଥାବାର୍ତ୍ତା କରିବାକୁ କିଏ କହିଲା ?'

କୃପା ଉତ୍ତରରେ କହିଲା, 'ଘୁଷୁରିଖିଆ, ମୁଁ ତୋ ଆଗରେ କଥା ହେଲି, ତୋ ବୋପାର କଣ ଗଲା ବେ ?'

- 'ଶଳା, ବେଶ୍ୟାର ପୁଅ ।'
- 'ତୁଟା ତ ବଜାରୁଣୀର ପୁଅ ଓ ଭାଇ ।'
- 'କେଉଁ ବେଶ୍ୟା ଘରେ ତୋର ଜନ୍ମ ବେ ?'
- 'ତୁ କେଉଁ ବାଡ଼ିର ମୂଳା ବେ ?'

'ତୁ ଗୋଟାଏ ଚୋର, ତୋ ଭଉଣୀ ବଜାରୁଣୀ ।'

ଏସବୁ ହେବା ପରେ କୃପା ବୁଝିଲା ଯେ ଏମିତି ଭାବେ ତାର ବୁଦ୍ଧି ହାରି ଯାଉଛି । ତାର ଖିଆଲ ହେଲା ଯେ ସେ ଜଣେ ଭଦ୍ରଲୋକ ଓ ସମାଜରେ ତାର ଯଥେଷ୍ଟ ସମ୍ମାନ ରହିଛି । ତେଣୁ ସେ ଖୁଦସିଦ୍‌ର ମୁହଁକୁ ଆଉ ଚାହିଁଲା ନାହିଁ । ତା ନହେଲେ ସେ ପୁଣି ଉତ୍ୟକ୍ତ ହୋଇ ଉଠିଥାନ୍ତା । ସେଠାରେ ଉପସ୍ଥିତ ଲୋକଙ୍କୁ ସେ ଘୁରିପଡ଼ି ଚାହିଁଲା ଓ ଭଦ୍ରଭାବରେ କହିଲା, 'ଏ ଭଦ୍ରଲୋକ ଖୁବ୍ ଉତ୍ୟକ୍ତ ହୋଇ ପଡ଼ିଛନ୍ତି । କାରଣ, ସେ ତାଙ୍କ ବାପାଙ୍କ ନାମ ମନେ ପକେଇ ପାରୁନାହାନ୍ତି । ବାବୁଙ୍କର ସ୍ତ୍ରୀ ଏବଂ ଉଉଣୀଙ୍କୁ ବି ଭୁଲିଯାଇଛନ୍ତି ।'

"ଏ ଭଦ୍ରଲୋକ ଖରାପ ଢଙ୍ଗରେ କହୁଛନ୍ତି କାରଣ ତାଙ୍କର ଜଣେ ବୁଢ଼ୀମା

ଓ ମା' ଅଛନ୍ତି ।" ଏମିତି କଳି ତକରାଳ ଚାଲିଥିବା ବେଳେ ଗୋଟାଏ ପିଲା ମୁସଲମାନ ବସ୍ତିର ଗଳିକୁ ଚାଲିଗଲା ଏବଂ ସମସ୍ତେ ମସଜିଦ୍ ପାଖ ଫାଙ୍କା ପଡ଼ିଆକୁ ଦୌଡ଼ିଲେ। ସ୍ତ୍ରୀଲୋକମାନେ ଘରୁ ସବୁ ପନିକି, କୁରାଢ଼ୀ ଆଦି ଧରି ବାହାରି ଆସି ତାଙ୍କ ସ୍ୱାମୀମାନଙ୍କ ଉପରେ ଚଢ଼ାଉ କଲାରୁ, ହିନ୍ଦୁମାନେ ପଛଘୁଞ୍ଚା ଦେଇ ପଳେଇ ଗଲେ। ଦଳାଚକଟା ଭିତରେ କୃପାସିନ୍ଧୁ ତଳେ ପଡ଼ିଗଲା । ଲୋକେ ତା ଉପରେ ଚଢ଼ି ଦୌଡ଼ିବାକୁ ଲାଗିଲେ ।

ତାପରେ, ହାତହତିଆର ସହିତ ବହୁ ସଂଖ୍ୟାରେ ହିନ୍ଦୁମାନେ ଆସି ମୁସଲମାନମାନଙ୍କ ଉପରେ ଯୁଦ୍ଧ ଚଳେଇଲେ ଏବଂ ସେମାନଙ୍କୁ ମସଜିଦ୍ ଭିତରକୁ ଠେଲିଠେଲି ନେଇଗଲେ। ଲୋକେ ଭିଡ଼ ଭାଙ୍ଗି ଫେରିବା ପରେ କୃପାସିନ୍ଧୁ ବହୁ କଷ୍ଟରେ ଉଠି ବସିଲା ଓ ଘରକୁ ଦୌଡ଼ିଲା । ସେ ଦୌଡ଼ିବା ଭିତରେ ପୋଲିସ ଆସି ଦଂଗାକାରୀମାନଙ୍କୁ ଉଗେଇ ଦେଲା ଏବଂ କେତେଜଣଙ୍କୁ ମଧ୍ୟ ଆରେଷ୍ଟ କରିନେଲା। ଖୁରସିଦ୍ ଅଲ୍ଲୀ ଗିରଫହେବା ଭୟରେ ଦୌଡ଼ି ପଳେଇଗଲା ।

କିଛି ସମୟ ପରେ ସେ କୃପାସିନ୍ଧୁର ବସା ଘରକୁ ଆସିଲା । ତା'ର ମୁଣ୍ଡରେ ଗୋଟାଏ ବିରାଟ କ୍ଷତ ସୃଷ୍ଟି ହୋଇଥିଲା ଏବଂ ସେଥିରୁ ତାର ମୁହଁ ଉପର ଦେଇ ରକ୍ତ ବୋହୁଥିଲା । ତାର ବାଁହାତଟି ଜଖମ ହୋଇ ରହିଥିଲା । ସେ ବାରଣ୍ଡାକୁ ଉଠିଆସି କାହାକୁ କିଛି ନ କହି ଚୁପଚାପ ବସି ରହିଲା । କୃପାସିନ୍ଧୁ ଘର ଭିତରୁ ପାଣି ଆଣି ତାକୁ ପିଇବାକୁ ଦେଲା । ସେ ପାଣି ପିଇ ସାରିବା ପରେ, ସେ କେଉଁଠି ରହୁଚି ବୋଲି କୃପା ତାକୁ ପଚାରିଲା । କଦମରସୁଲ ପାଖରେ ତାର ଜଣେ ସମ୍ପର୍କୀୟଙ୍କ ଘରେ ସେ ରହୁଚି ବୋଲି ଜାଣିପାରିଲା । ଯନ୍ତ୍ରଣାରେ କାତର ହୋଇ ରକ୍ତକ୍ଷରଣର ଦୁର୍ବଳତା ହେତୁ ଖୁରସିଦ୍ ତାର ବସିବା ସ୍ଥାନରେ ମୂର୍ଚ୍ଛା ହୋଇଗଲା ।

କୃପାର ଏବେ ହେତୁ ହେଲା ଯେ ବନ୍ଧୁର କ୍ଷତରେ ସେ ପଟି ଲଗାଇ ଦେବା ଜରୁରୀ । ସେ ଡାକ୍ତର ଡାକିବ, ଖୁରସିଦ୍‌କୁ ତା ଘରକୁ ନେବ କି ହସପିଟାଲକୁ ନେବ ସେ କଥା ଚିନ୍ତା କଲା । ତାର ଘରକୁ ନେବା ବାଟରେ ଦଙ୍ଗା ଜାଗାବାଟରେ ଯିବାକୁ ପଡ଼ିବ । ସେଠି ପୋଲିସ ମଧ୍ୟ ଥିବେ। ଆରେଷ୍ଟ ହେବାର ଭୟ ବି ରହିଛି । ତେଣୁ ତାକୁ ହସପିଟାଲ ନେଲେ ଦଂଗାଜାଗାଠାରୁ ଦୂରରେ ରହିବେ। ଏକଥା ଭାବି ସେ ପଡ଼ିଶା ଘରୁ ଲୋକଙ୍କୁ ଡାକି ଗୋଟାଏ ଖଟିଆରେ ଖୁରସିଦ୍‌କୁ ପକେଇ ହସ୍‌ପିଟାଲ ନେଲା । ତାପରେ କୃପା ଖୁରସିଦ୍‌ର ସମ୍ପର୍କୀୟମାନଙ୍କୁ ଖବର ଦେଲା । ଜଣେ ସମ୍ପର୍କୀୟ ଆସି ଖୁରସିଦ୍‌ର ସେବା କଲେ ।

ସେଇ ଲୋକଟିଠାରୁ କୃପା ଖବର ପାଇଲା ଯେ ଖୁରସିଦ୍ ଅଳ୍ପଦିନ ଛୁଟି ଆଣି

ତାର ନିଜ ବ୍ୟକ୍ତିଗତ କାମ ପାଇଁ କଟକ ଆସିଥିଲା । ଏବେ ତାକୁ ଛୁଟି ବଢ଼େଇବାକୁ ହେବ । ପରଦିନ କୃପା କଲେକ୍ଟରଙ୍କ ଘରକୁ ଯାଇ ଛୁଟି ମିଆଦ ବଢ଼ାଇବାକୁ ଏକ ଦରଖାସ୍ତ ଲେଖି, ଟାଇପ କରି ହସପିଟାଲରୁ ଖୁରସିଦ୍‌ର ଦସ୍ତଖତ ନେଇ ରେଜେଷ୍ଟ୍ରି ପୋଷ୍ଟରେ ପଠେଇ ଦେଲା । ଯେତେଦିନଯାଏ ଖୁରସିଦ୍ ହସପିଟାଲରେ ରହିଲା- ନିତି ନିତି ସେ ତାକୁ ଭେଟିବାକୁ ହସପିଟାଲ ଯାଉଥିଲା ।

ମଝିରେ ମଝିରେ, ହିନ୍ଦୁ ଓ ମୁସଲମାନଙ୍କ ମଧ୍ୟରେ ଏମିତି କିଛି ଦଂଗା ଲାଗିଲା । ସେମାନଙ୍କ ଭିତରେ ବିଶ୍ୱାସ ଭାଙ୍ଗିଲା । କିନ୍ତୁ ଖୁରସିଦ୍ ଓ କୃପା ଭିତରର ବଂଧୁତ୍ୱ ଏ ଦଂଗା ଦ୍ୱାରା କମିଗଲା ନାହିଁ ।

ଅଗଷ୍ଟମାସରେ ଖବର ଆସିଲା ଯେ ଗାଂଧୀ ମହାରାଜ ସମସ୍ତଙ୍କୁ ଅସହଯୋଗ ଆନ୍ଦୋଳନ ପାଇଁ ଡ଼କରା ଦେଇଛନ୍ତି । ବିଦ୍ରୋହୀମାନେ ଗାଁଗାଁ ବୁଲି ସମସ୍ତଙ୍କୁ ଏ ବିଷୟରେ ନ ବୁଝାଇବା ଯାଏ କେହି ଏ ଡକରାକୁ ଗ୍ରାହ୍ୟକଲେ ନାହିଁ । ବିଦ୍ରୋହୀମାନେ ବୁଝେଇଲେ ଯେ ଯଦି ଲୋକମାନେ ଅଫିମ ଗଂଜା ବା ମଦ ନ ଖାନ୍ତି ତେବେ ଏ ସବୁର ବିକ୍ରିରୁ ସରକାର ଯେଉଁ ଅବକାରୀ ଶୁଳ୍କ ପାଉଥିଲେ, ସେ ସବୁ ଆଉ ପାଇବେ ନାହିଁ । ଯଦି ଦଂଗାଗୋଳର ମିମାଂସା ନିଜେ ନିଜେ ଲୋକେ କରି ଦିଅନ୍ତି ତ କୋର୍ଟ ଫି ବାବଦ ଖର୍ଚ୍ଚରୁ ରକ୍ଷା ପାଇବେ । ସରକାର ଆଉ ସେ ପାଇଁ ଟ୍ୟାକ୍ସ ପାଇବେ ନାହିଁ । ଯଦି ସରକାରୀ ଚାକିରିଆମାନେ ଚାକିରୀ ବର୍ଜନ କରିବେ ତ ସରକାର ଲୋକବଳ ଅଭାବରେ ଅପାରଗ ହୋଇଯିବ ।

କିନ୍ତୁ କୃପାସିନ୍ଧୁକୁ ଏକଥା ସବୁ ବାଜେ କଥା ପରି ଲାଗିଲା । ସେ ମନେ ପକାଇଲା ଯେ ତା ପିଲାଦିନେ ଜଣେ ବିଦ୍ରୋହୀ ତା ଗାଁକୁ ଆସିଥିଲା ଏବଂ ଲୋକଟା ଅପେକ୍ଷା କରିଥିଲା କେତେବେଳେ ଗାଁ ଲୋକେ ତାକୁ ମରହଟ୍ଟା ଶୋଷଣ ବିଷୟରେ କହିବେ ବୋଲି । ଏବେ ତ ଇଂରେଜମାନେ ମରହଟ୍ଟାଙ୍କ ଶୋଷଣରୁ ସେମାନଙ୍କୁ ରକ୍ଷା କରୁଛନ୍ତି । ସେ କାଳର ରୀତି ସବୁ ବଦଳି ଯାଇଛି । କେହି ପିଲା କିଛି ନ କହିବାରୁ ସେ ନିଜେ କହିଲା, "ବାବୁ, ଶୁଣ ଇଂରେଜମାନେ ଆସିବା ପୂର୍ବରୁ ଆମ ପୂର୍ବପୁରୁଷ ମରହଟ୍ଟାମାନଙ୍କର କବଳରେ ତୀବ୍ର ଶିକାର ହୋଇଥିଲେ । ସେତେବେଳେ ମୁଁ ଛୋଟ ପିଲାଟିଏ ଥିଲି । ଆମେ ଶିକ୍ଷା ପାଇଥିଲୁ ଯେ ଇଂରେଜମାନେ ଆମର ବଂଧୁ, ତ୍ରାଣକର୍ତ୍ତା । ଏବେ ଆମେ କାହିଁକି ଇଂରେଜ ବିରୁଦ୍ଧରେ ଯିବୁ, ସେକଥା ବୁଝି ହେଉନି ତ ।"

ବିଦ୍ରୋହୀ ଜଣକ ପଞ୍ଜାବ ଓ ଖିଲାପଂତରେ କଣ ସବୁ ଚାଲିଛି ସେକଥା ବୁଝାଉଥିଲେ ।

କୃପାସିନ୍ଧୁ କହିଲା, 'ବାବୁ, ଖିଲାପଂତ ତ ମୁସଲମାନ ମାନଙ୍କର ରାଜ୍ୟ । ଆମ ଗାଁରେ ମୁସଲମାନ କାହାନ୍ତି ? ତେଣୁ ଆମେ ବିଦ୍ରୋହ କରିବୁ କଣ ପାଇଁ ? ପାଦ୍ରୀମାନେ ଇଂରେଜଙ୍କୁ ମାରି ଗୋଡ଼େଇଲେ । ଆମେ ତ ପଞ୍ଜାବୀ ନୋହୁଁ । ଶହଶହ ମାଇଲ ଦୂରରେ ବିଦେଶରେ କଣ ସବୁ ଘଟୁଚି ସେଥିରେ ଆମର କଣ ଅଛି ?

କୃପାସିନ୍ଧୁକୁ ଗାଁ ଲୋକେ ମାନ୍ୟ କରୁଥିବାରୁ ସେ ଯାହା ମତ ଦେଲା ତାହା ଠିକ୍ ବୋଲି ଗାଁ ଲୋକେ ଧରିନେଲେ । ବିଦ୍ରୋହୀକୁ ଲୋକେ ରୋକ୍‌ଠୋକ୍ ଶୁଣାଇ ଦେଲେ ଯେ ସେମାନଙ୍କର କିଛି ଶୁଣିବା ଦରକାର ନାହିଁ । ତମେ ସେ ଅଯଥା କଥା ଗୁଡ଼ିକ ଯାଇ ଆଉ କେଉଁଠାରେ କୁହ ।

କଟକ ଫେରିବା ବାଟରେ କୃପା ବାଲେଶ୍ୱର କଲେକ୍ଟରଙ୍କ ଘରକୁ ଗଲା ଓ ଏସବୁ କଥା ବୟାନ କଲା । କଲେକ୍ଟର ଖୁସି ହୋଇ କୃପାକୁ କହିଲେ, 'ଗାଁ ଲୋକେ ବିଦ୍ରୋହୀକୁ ଠିକଣା ଜବାବ ଦେଇଛନ୍ତି । କୃପା ନିଜେ ବି ବିଦ୍ରୋହୀଙ୍କୁ ଘଉଡ଼େଇବାକୁ ଲାଗି ଉସ୍‌କେଇବା ଦରକାର ।' କୃପା ତାର ଭାଇକୁ ଏ ବିଷୟରେ ଲେଖି ଜଣାଇଲା । ହରିବନ୍ଧୁ ତାର ପଡ଼ୋଶୀମାନଙ୍କୁ କୃପାର ଚିଠିର ମର୍ମ ବୁଝେଇ କହିଲା ଯେ ଯଦି କେହି ବିଦ୍ରୋହୀ ଗାଁରେ ପ୍ରବେଶ କରନ୍ତି ତ, ତାଙ୍କୁ ମାରି ଘଉଡ଼ାଇ ଦେବାକୁ ହେବ । ନହେଲେ ତାକୁ ପିଟିପିଟି ନଈକୁ ଫିଙ୍ଗି ଦେବା ଦରକାର । ସେଇ ଲୋକଟା ପୂର୍ବ ବଂଗର ଲୋକ, ଯେଉଁଠାରେ ବହୁତ ନଈ ଅଛି । ଲୋକଟି ନଈରେ ପଡ଼ି ଓଡ଼ିଆଙ୍କ ପରି ପହଁରି ପହଁରି ଜୀବନ ଧରି ପଳାଇ ଗଲା ।

ଯେତେବେଳେ କର୍ତ୍ତୃପକ୍ଷ ବୁଝିଲେ ଯେ ବିଦ୍ରୋହୀମାନେ ଗାଁ ଗାଁ ଯାଇ ଲୋକଙ୍କୁ ବୁଝାଉ ଅଛନ୍ତି, ତ ସେ ପ୍ରଚାରର ଫଳାଫଳ କଣ ବୋଲି ବୁଝିବାକୁ ସେମାନେ ଚେଷ୍ଟାକଲେ । ଗାଁରେ ଜଣେ ମୁଖିଆ ଯିଏ ସରକାରଙ୍କ ପ୍ରତି ଅତ୍ୟନ୍ତ ଅନୁରକ୍ତ । ସେ ପଇସା ଦେଇ ଲୋକ ଲଗେଇ ବିରୋଧୀଙ୍କ ବିରୁଦ୍ଧରେ ପ୍ରଚାର କରିବାରେ ଲାଗିଲେ । କୃପାସିନ୍ଧୁ ଗାଁରେ ଏମାନେ ବି ଆସି ପହଞ୍ଚିଲେ ଏବଂ ଗାଁରେ ସଭା ହେଲା । ଲୋକେ ସବୁ ଶୁଣିଲେ ।

ଲୋକ ଜଣକ ଆଗ୍ରାର ଜଣେ ସୈନିକ । ସେ ହିନ୍ଦୀରେ କଥା କହୁଥାଏ । ଲୋକଙ୍କୁ ଆଇନାନୁମୋଦିତ କାମ କରିବାକୁ ଓ 'କସରତ ଏ ହିନ୍ଦ୍'କୁ ସମ୍ମାନ କରିବାକୁ ସେ ବୁଝାଉଥିଲେ ।

ଜଣେ ଗାଁବାଲା କହିଲା, 'କଇସର ଏ ହିନ୍ଦ୍'ଙ୍କୁ ଆମେ ଜାଣିଛୁଁ । ସେ ଜର୍ମାନୀର ଲୋକ । ଆମ ରାଜାଙ୍କର ଶତ୍ରୁ । ଆମର ତାଙ୍କ ସହ କିକାମ ଯେ ?'

ଆଉ ଜଣେ କହିଲା, 'ସେ ବଡ଼ ଖରାପ ଲୋକ । ପିଲାଙ୍କୁ ଚେବାଇ ଖାଇପାଏ ବୋଲି ଆମେ ଶୁଣିଛୁ ।'

ଆଉ ଜଣେ ମତ ଦେଲା, ତାଙ୍କର ଗ୍ଲିସେରିନ କାରଖାନା ଅଛି । ସେ ଯୁଦ୍ଧରେ ମରୁଥିବା ଲୋକକୁ ପୋଡ଼ିବାକୁ ନ ଦେଇ ତାଙ୍କ ଫେକ୍ଟରୀର ଗ୍ଲିସେରିନ୍ ତିଆରି କରନ୍ତି ?

'କିନ୍ତୁ ଭଦ୍ର ମହାଶୟ ! ମୁଁ ଜର୍ମାନ କେଶରୀଙ୍କ କଥା କହୁନାହିଁ । ଆମ ନିଜ କେଶରୀଙ୍କ କଥା କହୁଛି ।' ସୈନିକଟି ବୁଝାଇଲା ।

ଜଣେ ଗାଁବାଲା ଉତ୍ତର ଦେଲା, 'ଆମର କେଶରୀ ନାହିଁ ।' 'ମୁଁ ବାଦ୍‌ଶାହାଙ୍କ କଥା କହୁଚି ।'

'ବାଦଶାହା ତ ମୁସଲମାନ ନାଁ । ଆମେ ମୁସଲମାନ ନୋହୁଁ କି ସେ ବି ଆମ ରାଜା ନୁହନ୍ତି ।' ଗାଁ ବାଲାଏଁ କହିଲେ ।

'ତୁମ ରାଜା ତେବେ କିଏ ?' ସୈନିକଟି ପଚାରିଲା ।

'ଶ୍ରୀ ଭାରତେଶ୍ୱର ଆମ ରାଜା - ଆମେ ଆଉ କାହାକୁ ଚାହୁଁନାହୁଁ । ତୁମର ବାଜେ କଥା କହିବାର ଥିଲେ ଆଉ କେଉଁଠି ଯାଇ କୁହ । ତୁମେ କି ତୁମ କେଶରୀ, ସଭିଏଁ ଖରାପ । ଯେଉଁମାନେ ତୁମ କଥା ଶୁଣିବେ, ତୁମେ ସେମାନଙ୍କୁ ଯାଇ ଏ କଥା କୁହ ।' ଗାଁ ବାଲାଏଁ ଉତ୍ତର ଦେଲେ ।

ତେଣୁ ବିରୋଧୀ ପ୍ରଚାରକୁ ଖରାପ କାମ ବୋଲି ଭାବି ନେଇ ସୈନିକଟି ଗାଁରୁ ଚାଲିଗଲା ।

ବିଦ୍ରୋହୀମାନେ ତ ଆସୁଥିଲେ । କିନ୍ତୁ ଏ ଗାଁ କୁ ଆଉ କେହି ଆସିଲେନି । ଏକଥା କଲେକ୍ଟର ଜାଣି, କୃପାସିନ୍ଧୁ ଯୋଗୁଁ ଏହା ସମ୍ଭବ ହୋଇଛି ବୋଲି ଭାବିଲେ ଏବଂ କଟକ କଲେକ୍ଟରଙ୍କୁ ଏ କଥା ଚିଠି ଲେଖି ଜଣେଇ ଦେଲେ । କଟକ କଲେକ୍ଟର ତାହା ନୋଟ୍ କରି ରଖିଲେ ଓ କୃପାସିନ୍ଧୁକୁ ପୁରସ୍କୃତ କରିବା କଥା ଚିନ୍ତା କଲେ ।

ପ୍ରଥମ ସାଧାରଣ ନିର୍ବାଚନ ଆସିବାରୁ ଘୋଷଣା ହେଲା ଯେ ଗାନ୍ଧୀ ମହାରାଜ କେହି ନିର୍ବାଚନ ନ ଲଢ଼ିବାକୁ ନିର୍ଦ୍ଦେଶ ଦେଇ ଅଛନ୍ତି । ଭୋଟ ବି ଦେବେନି କେହି । ଗାଁଲୋକେ ଏ ଘୋଷଣା ଶୁଣି ଭାବିଲେ ସରକାର ତ ତାଙ୍କୁ ଭୋଟ ଦେବାକୁ କହିଛି ।

ନିର୍ବାଚନ ଦିନ ସକାଳେ ଗାଁର ଦଫାଦାର ତାର ୟୁନିଫର୍ମ ପିନ୍ଧି ବୁଲିବୁଲି ଗାଁ ସାରାର ଭୋଟର ମାନଙ୍କୁ ଡାକି ନେଉଥାଏ । ପୋଲିସ ଷ୍ଟେସନରେ ଗାଁ ଜଗୁଆଳୀ

ତାଙ୍କୁ ନେଇ ପୂରାଉ ଥାଏ । ସେଠାରେ ଆସି ଲୋକେ ଦେଖିଲେ ଯେ ଦୁଇଜଣରୁ ଜଣକୁ ହିଁ ବାଛିବାକୁ ପଡ଼ିବ । ଦୁଇଜଣଙ୍କ ବିଷୟରେ ସେମାନେ କିଛି ବି ଜାଣି ନଥିଲେ । ତେଣୁ ସ୍ଥିର କଲେ ଯେ ଗାଁର ଜଣେ ଲୋକ ଏକକୁ ଦେଲେ ଆଉ ଜଣେ ଆରେକକୁ ଭୋଟ ଦେବ ।

ଏଭଳି ଭାବରେ ଗାଁ ଲୋକମାନେ ଭୋଟ ଦେଇ ସାରି ନିଜନିଜ କାମ ଠିକ୍‌ରେ ତୁଲେଇଛନ୍ତି ଭାବି ମହାସନ୍ତୋଷରେ ଘରକୁ ଫେରିଲେ ।

## ଉଣେଇଶି ପରିଚ୍ଛେଦ

କୃପାସିନ୍ଧୁ କୃତନିଶ୍ଚୟ ଥିଲା ଯେ ସେ ରାଜନୀତିର ଧାର ଧାରିବ ନାହିଁ । ରାଜନୈତିକ ଆନ୍ଦୋଳନ ତାର ସ୍ଥିର ଜୀବନ ପ୍ରବାହକୁ ଯେପରି ନଷ୍ଟ ନ କରୁ । ତଥାପି, ଇଛା ବିରୁଦ୍ଧରେ ରାଜନୈତିକ ପ୍ରବାହ କେମିତି ଭାବରେ ତାର ଅନ୍ତରତମ ପ୍ରଦେଶକୁ ବ୍ୟସ୍ତ ବିପର୍ଯ୍ୟସ୍ତ କରିଦେଲା । ତାର ବଡ଼ପୁଅ ସ୍କୁଲରୁ ଲୁଚି ପଳେଇ ଯାଇ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଚି ବୋଲି ସ୍କୁଲର ପ୍ରଧାନ ଶିକ୍ଷକ ତାକୁ ପତ୍ର ଲେଖି ଜଣେଇଲେ ।

ସାହେବଙ୍କ ପାଖରୁ ସଂଗେସଂଗେ ଛୁଟୀ ମଞ୍ଜୁର କରେଇ କୃପା ବାଲେଶ୍ୱର ଧାଇଁଲା । ପ୍ରଥମେ ସେ ସେଠାର ଆଞ୍ଚଳିକ ନେତାମାନଙ୍କୁ ଚିହ୍ନିଥିବା ଜଣେ ଭଦ୍ରଲୋକଙ୍କ ପାଖକୁ ଗଲା । ଭଦ୍ରଲୋକ ଜଣକ ଅତ୍ୟନ୍ତ ସାଧୁ ପ୍ରକୃତିର ଲୋକଥିଲେ । କୃପାସିନ୍ଧୁକୁ ଭଦ୍ର ବ୍ୟବହାର କଲେ । କିନ୍ତୁ କୃପାସିନ୍ଧୁ ନିଜ ପୁଅ ବିଷୟରେ ତାଙ୍କୁ ପଚାରିବାରୁ ସେ ନୀରବ ରହିଲେ । "ମୁଁ ତୁମକୁ ଖୁସିରେ ସାହାଯ୍ୟ କରିପାରିବି, ବାବୁ, ହେଲେ ସମସ୍ତ କର୍ମୀମାନଙ୍କ ନାଁ ଜାଣିବା ମୋ ପକ୍ଷେ କଷ୍ଟକର । କାଳେ ପୋଲିସ ଆସି ଘର ଖାନ୍‌ତଲାସି ନେବ, ସେଥିପାଇଁ ସେମାନଙ୍କ ନାଁ ତାଲିକା ମୁଁ ରଖିନାହିଁ ।" କୃପାସିନ୍ଧୁ ସେଠାରୁ ଫେରି ଜଣେ ପୋଲିସ ଇନ୍ସପେକ୍ଟରଙ୍କ ଘରକୁ ଗଲା । ସେ ଥିଲେ କରଣ ଜାତିର । ଭଦ୍ରଲୋକ ତାକୁ ବହୁ ଦରକାରୀ ଉପଦେଶ ଦେଲେ ।

'ସେ ଭଦ୍ରଲୋକ ଜଣକ ନାମକୁ ମାତ୍ର ନେତା । ଲୋକେ ତାଙ୍କୁ ସମ୍ମାନ ଦେଉଛନ୍ତି ବୋଲି ସେ ନେତା ବୋଲାଉଛନ୍ତି । ମାତ୍ର ସେମାନଙ୍କର ପ୍ରକୃତ ଅଫିସ କର୍ମସ୍ଥଳୀ ସେ ଘରେ ହୁଏ ନାହିଁ ।'

ତାପରେ, ସେ ସେଠାକାର ଗୋଟାଏ ଛୋଟ ସହରର ନାଁ କହିଲେ ଯେଉଁଠି

ଜଣେ ଡାକ୍ତରଙ୍କର ବ୍ୟକ୍ତିଗତ କ୍ଲିନିକ ଅଛି । ସେଇଠି ହିଁ ଅସହଯୋଗୀ ମାନଙ୍କର ସଭା ବସେ ।

ଡାକ୍ତରଙ୍କର ଔଷଧ ଦୋକାନ ପରେ କମ୍ପାଉଣ୍ଡରର ଘର । ସେଠାରେ ବସି ସେ ଇଲାଜ ଲେଖନ୍ତି । ତା ପଛକୁ ଗୋଟାଏ ବଡ଼ରୁମ୍ ଅଛି ଯେଉଁଠାରେ ସେ ରୋଗୀ ଦେଖନ୍ତି । ସେଇଠି ହିଁ ବିଦ୍ରୋହୀଙ୍କ ସଭା ବସେ । ଅସହଯୋଗର ତତ୍ତ୍ୱ ଶିଖିବା ଓ କର୍ମକରିବା ଉପରେ ଭାଷଣ ଶୁଣିବାକୁ ସେଠାକୁ ବହୁତ ଛାତ୍ର ସଂଧ୍ୟାବେଳେ ଆସନ୍ତି ।'

'ଅସହଯୋଗୀମାନେ କିପରିଭାବେ ସେମାନଙ୍କୁ ଫୁସୁଲା ଫୁସୁଲି କରି ଆଣନ୍ତି ?'

'ଡାକ୍ତରଖାନାର ଅନତି ଦୂରରେ ଗୋଟାଏ ବେଶ୍ୟାଳୟ ଅଛି । ସେଠାକାର ପ୍ରକୃତ ମାଲିକ ଏଇ ଡାକ୍ତର ଜଣକ । କଥାଟା ଖୁବ୍ ଗୋପନରେ ଚାଲେ । ଯେଉଁ ଯୁବକମାନେ ବେଶ୍ୟାଳୟକୁ ଯାଆନ୍ତି, ପରେ ରୋଗରେ ପଡ଼ି ସେମାନେ ଡାକ୍ତରଙ୍କ ପାଖକୁ ଆସନ୍ତି । କେବେ କେବେ କେତେକ ଝିଅଙ୍କୁ ଡକାଇ ସେ ତାଙ୍କ ପାଖକୁ ଆସୁଥିବା ଲୋକଙ୍କର ମନୋରଂଜନ ପାଇଁ ସେମାନଙ୍କୁ ନଚାନ୍ତି । ଏମିତି ଭାବେ ଟୋକାମାନଙ୍କୁ ସେ ନିଜ ପଛଘର ଆଡ଼କୁ ଟାଣନ୍ତି ଏବଂ ଅସହଯୋଗୀମାନେ ସେମାନଙ୍କୁ ତଥ୍ୟ ଶିଖାଇବାର ସୁଯୋଗ ପାଆନ୍ତି ।'

କୃପାସିନ୍ଧୁ ସେ ଭଦ୍ରଲୋକଙ୍କୁ ଧନ୍ୟବାଦ ଜଣେଇ ପୁଅକୁ ଖୋଜିବାକୁ ସେ ଡାକ୍ତରଖାନାକୁ ଯିବ ବୋଲି ସ୍ଥିର କଲା । ପ୍ରଥମେ ଖଦଡ଼ ଧୋତି ଓ ଗାନ୍ଧୀଟୋପୀ ପିନ୍ଧି ନିଜକୁ ସଜେଇ ଦେଲା । ତାପରେ ଡାକ୍ତରଙ୍କ କ୍ଲିନିକ ଆଡ଼କୁ ଧାଇଁଲା । ସେଠାରେ ସେ ନିଜର ପରିଚୟ ଦେଇ ନିଜପୁଅ ବିଷୟରେ ପଚାରିଲା । ଡାକ୍ତରବାବୁ କହିଲେ ଯେ, ତାଙ୍କ ପୁଅ କିଛିଦିନ ସେଠି ଥିଲା, ତେବେ ଆପଣ ଆଜି ରାତିରେ ଆସିଲେ, ସେ ହୁଏତ ଏଠାରେ ଥିବ ।

'ମାତ୍ର, ଆପଣଙ୍କର ସାଙ୍ଗମାନେ ଯେତେବେଳେ ଜାଣିବେ ଯେ ମୁଁ ସରକାରୀ ଚାକିରିଆ, ତେବେ ମୋତେ ଠିକ୍‌ରେ ବ୍ୟବହାର କରିବେ ନାହିଁ ।'

'ବହୁତ ଚାକିରୀଆ ଏମିତି ଅଛନ୍ତି, ଯେଉଁମାନେ ଖୋଲାଖୋଲି ଭାବେ ଆମ ସହ ଯୋଗ ନଦେଲେ ବି ଆମ ପ୍ରତି ସମର୍ଥନ ଓ ଅନୁକମ୍ପା ସେମାନେ ରଖିଛନ୍ତି ।'

'ସେମାନେ କଣ ଏଠାକୁ ଆସୁଛନ୍ତି କି ?'

'ଆପଣ ଯେମିତି ପୋଷାକ ପିନ୍ଧି ଆସିଛନ୍ତି, ସେ ପୋଷାକରେ ସେମାନେ ଅବଶ୍ୟ ଆସନ୍ତି ନାହିଁ ।'

'ତେବେ ମୁଁ ବି ଖଦଡ଼ ପିନ୍ଧି ଆସିବି ?'

ସେଇଟା ଭଲ ହେବ ।

'ମୁଁ କିଏ ବୋଲି ସେମାନେ ତ ପଚାରିବେ ?'

'ଆମେ କାହାରିକୁ ତାଙ୍କ ନାମଧାମ ପଚାରୁ ନା । ଏମିତି ଦିନ ଆସିବ ଯେବେ ନା ଜାଣିବାଟା ସୁବିଧା ଜନକ ହୋଇ ନ ପାରେ ।'

କୃପାସିନ୍ଧୁ ଏବେ ଆୟୋଜନ କରି ରଖିଥିବା ଖଦଡ଼ ପିନ୍ଧି ପକାଇ ରୁମ୍ ସାରା ତନଖି କରି ଉପସ୍ଥିତ ଲୋକମାନଙ୍କୁ ନିରୀକ୍ଷଣ କରି ଦେଖିଲା । ସେଠାରେ ଜଣେ ସୁନାଫ୍ରେମ ଚଷମା ପିନ୍ଧା ପତଳା ଲୋକ ଥିଲେ । ସେ ସେଠାକାର ସ୍ଥାନୀୟ ନେତା । ଗେଡ଼ା ଓ ମୋଟା । ଅଧାଡଜନେ ଖଣ୍ଡେ ଟୋକା ସେଠାରେ ବସି ଆପଣା ଭିତରେ ଗପି ଚାଲିଥିଲେ । ଇଂରାଜୀରେ କଥା କହିବା ଅଭ୍ୟାସ କରି ଚାଲିଥିଲେ ସେମାନେ । କୃପା ଭାବିଲା, ସେମାନେ ସବୁ ଛାତ୍ର ହୋଇଥିବେ ନିଶ୍ଚୟ । ସେମାନେ ସମସ୍ତେ ଧଳା ଖଦଡ଼, ଧୋତି, ଜାମା ଓ ଗାନ୍ଧୀଟୋପି ପରିଧାନ କରିଥିଲେ ।

ସେଠାରେ ଦୁଇଜଣ ଯୁବତୀ ଝିଅ ମଧ୍ୟ ଥିଲେ । ସେହି ଝିଅମାନଙ୍କ ନାଚରେ ସହଯୋଗ କରିବାକୁ ଗାୟକ ଓ ବାଦକ ମଧ୍ୟ ଥିଲେ ।

ସମସ୍ତଙ୍କୁ ଅଭିବାଦନ ଜଣେଇ ସାରି କୃପା ଯାଇ ସେମାନଙ୍କ ମେଳରେ ବସିଲା । ନାଚବାଲୀ ଝିଅମାନେ ସମସ୍ତଙ୍କ ସାମନାରେ ନିଜ ନିଜର ପୋଷାକ ବଦଳାଇଲେ । ପରମ୍ପରା ଅନୁଯାୟୀ ଡାକ୍ତରବାବୁ ଗୋଟାଏ ପିତ୍ତଳ ଟ୍ରେରେ ପାନ ସିଗାରେଟ ବଢ଼େଇ ଦେଲେ । ଝିଅମାନେ ନିତିପିନ୍ଧା ସାଧାରଣ ପୋଷାକ ବଦଳେଇ ଝିଲିମିଲି ରଂଗୀନ ନାଚ୍ ପୋଷାକ ପିନ୍ଧିଲେ, ଗହଣା ନାଇଲେ । ଗାୟକ ବାଦକ ମାନେ ବଜେଇଲେ ଓ ଝିଅମାନେ ନାଚିବା ଆରମ୍ଭ କଲେ ।

କିଛି ସମୟ ନାଚ୍ ଚାଲିଲା ଭିତରେ ସମସ୍ତେ ନାଚ୍‌ଗୀତରେ ମଜଗୁଲ ହୋଇ ଉଠିବା ବେଳେ, ସେଇ ଗେଡ଼ା ଲୋକଟା କୃପାସିନ୍ଧୁକୁ ଚାହିଁ ତାର ଗୁପ୍ତ ସଂକେତ ଦେଲାରୁ କୃପା ବୁଝିଲା ଯେ ସେ ଜଣେ ସିଆଇଡ଼ିର ଲୋକ । କୃପା ବିସ୍ମିତ ହୋଇ ଭାବିଲା, ତାକୁ କଣ ସେ ଚିହ୍ନି ପାରିଲେ କି ? ମାତ୍ର ସେ ତାଙ୍କ ଚାହାଣୀର କିଛି ଉତ୍ତର ଦେଲା ନାହିଁ, କାରଣ ତାଙ୍କ ଗୋପନ ସଂକେତର ଅର୍ଥ ବୁଝିବା କୃପାର ଜ୍ଞାନ ବାହାରେ ଥିଲା ।

ଗୀତନାଚ୍ କରି ଝିଅ ଦି'ଟା ଥକି ପଡ଼ିବା ପରେ ସେମାନେ ଆସି ଛାତ୍ରମାନଙ୍କ ଗହଣରେ ବସିଗଲେ । ଡାକ୍ତରବାବୁ ଆଉ ଗୋଟାଏ ଟିଣ ସିଗାରେଟ ଖୋଲିଲେ । ଗୋଟାଏ ବୋତଲ ହୁଇସ୍କି ମଧ୍ୟ । ସେଠାରେ ସମସ୍ତେ ମଦ ପିଇ ସିଗାରେଟ ଧରେଇ

କଥାବାର୍ତ୍ତା କଲେ । ପତଳା ଜଣେ ଧେଡ଼ିଆ ବୁଢ଼ା କୃପା ସହିତ ଗପ ଯୋଡ଼ିଲେ ।

– 'ଆପଣ ଆମ ସହିତ ଯୋଗ ଦେଇ ଏଇ ଜିଲ୍ଲାରେ କାମ କରିବାକୁ ଚାହୁଁଛନ୍ତି ତ ?'

କୃପା ଉତ୍ତର ଦେଲା, 'ମୁଁ ମେଦିନୀପୁର ଯିବା ବାଟରେ କୃପାସିନ୍ଧୁ ମହାନ୍ତିଙ୍କ ପୁଅ ଗୁରୁଚରଣ ମହାନ୍ତିକୁ ଭେଟିବାକୁ ଆସିଥିଲି । ତାର ବାପା କଟକ କଲେକ୍ଟର ଅଫିସରେ କାମ କରୁଛନ୍ତି । ତାଙ୍କର ଅସହଯୋଗ ଆନ୍ଦୋଳନ ପ୍ରତି ସମର୍ଥନ ରହିଛି । ସେ ତାଙ୍କ ପୁଅ ପାଖକୁ କିଛି ଟଙ୍କା ଓ ଚିଠି ମୋ ହାତରେ ପଠେଇଛନ୍ତି ।' ନିଜ ନାମ ନିଜ ମୁହଁରେ ଉଚ୍ଚାରଣ କଲାବେଳେ, କୃପା ସିଆଳଡ଼ିର ମୁହଁକୁ ଚାହିଁଲା । ସେ ଲୋକଟି ଅନ୍ୟ ଆଡ଼କୁ ଚାହିଁଥିବାରୁ କୃପା କଥା ଶୁଣି ନଥିବା ଭଳି ମନେ ହେଲା ।

ପତଳା ଲୋକଟି ଉତ୍ତର ଦେଲାଯେ ଗୁରୁଚରଣ ଏବେ ସେଠାରେ ନାହିଁ । କଟକ ଜିଲ୍ଲା ପାଇଁ କାମ କରିବାକୁ ଯାଇଛି । ଗାଁ ଗାଁ ବୁଲି ପ୍ରଚାର କରିବା ଓ ଟଙ୍କା ସଂଗ୍ରହ କରିବା ତାର କାମ । ତେଣୁ ପ୍ରକୃତରେ ସେ ଯେ କେଉଁଠି ଥିବ ସେକଥା କହିବା ଏବେ ମୁସ୍କିଲ ।

ଡାକ୍ତର ଏବେ କହିଲେ, 'ଆଉ ଟିକେ ହୁଇସ୍କି ପିଅନ୍ତୁ ?' ଆପଣ ତ ମାଛିବୁଡ଼ିବା ପରି ଏତେ ଟିକେ ହୁଇସ୍କି ମଧ୍ୟ ପିଇ ନାହାନ୍ତି ।'

କୃପା କହିଲା, 'ଏଇ ସିଗାରେଟ୍ ସ୍କଟଲାଣ୍ଡ କି ଇଂଲଣ୍ଡରେ ତିଆରି । ଯେଉଁମାନେ ଏସବୁ ରପ୍ତାନୀ କରିଛନ୍ତି ସେମାନେ ସରକାରଙ୍କୁ ବିଦେଶୀ ଜିନିଷ କିଣିବା ବାବଦ ଶୁଳ୍କ ଦେଇଛନ୍ତି । ଯେଉଁ ଦୋକାନୀ ହୁଇସ୍କି ବିକୁଛି, ସେ ବି ଶୁଳ୍କ ଦେଇଥିବ । ଆପଣ ତ ସରକାରୀ ମାଲ କିଣି ସରକାରଙ୍କ ଆୟ ବଢ଼ାଉଛନ୍ତି । ତାହେଲେ, ମହାତ୍ମାଙ୍କ ଶିକ୍ଷା ସହ ତାଳ ଦେଇ ଆପଣ କି ପ୍ରକାର କାମ କରୁଛନ୍ତି, ସେକଥା ତ ମୁଁ ବୁଝିପାରୁନି ।'

ଡାକ୍ତର କହିଲେ, 'ଏଥିରେ କ୍ଷତି ରହିଲା କଣ ? ଆମେ ତ ଏହା ଦେଶାତ୍ମବୋଧକତା ପାଇଁ ହିଁ ଖର୍ଚ୍ଚ କରୁଛୁଁ । ଆମେ ଚାହୁଁ ଯେ ଏ ଯୁବକମାନେ ଏଠାକୁ ଆସି ଆନନ୍ଦରେ ସମୟକୁ ଉପଭୋଗ କରନ୍ତୁ ।'

ସେ ପତଳା ଲୋକଟି କହିଲା, 'ଆଗନ୍ତୁକ ଯାହା କହୁଛନ୍ତି ସେକଥା ଠିକ୍ । ପିଲାମାନେ, ଆମେ ଆଜିଠାରୁ ଶପଥ ନେବା ଏସବୁର ବ୍ୟବହାର ବର୍ଜନ କରିବାକୁ ।'

ତାପରେ ଛାତ୍ରମାନେ ଭାଷଣ ଦେଲେ । ଏହି ସାକ୍ଷାତ ପରେ କୃପା ବାଲେଶ୍ୱର ଫେରିଗଲା ଏବଂ ରେଳଷ୍ଟେସନରେ କଟକ ଗାଡ଼ିକୁ ଅପେକ୍ଷା କଲା । ସେତିକି

ବେଳେ ଜଣେ ସାଦା ପୋଷାକ ଧାରୀ ପୋଲିସ ଆସି ତାକୁ ଘେରିଗଲେ ଏବଂ ପଚ୍ଚରିଲେ , 'ଆପଣ କୃପାସିନ୍ଧୁ ମହାନ୍ତି ତ ? କଟକ କଲେକ୍ଟରଙ୍କ କିରାଣୀ ?'

'ହଁ'

ଆମେ ତମକୁ ଖୋଜୁଛୁ ମାଜିଷ୍ଟ୍ରେଟ ପାଖକୁ ସିଧା ଚ୍ଚଲନ୍ତୁ ।

'ଚ୍ଚଲ' ।

ମାଜିଷ୍ଟ୍ରେଟ ତାକୁ କହିଲେ, 'ମୁଁ ଶୁଣିଲି କାଲି ଆପଣ ଖଦଡ଼ ପିନ୍ଧି ଗାନ୍ଧୀଟୋପି ଲଗେଇ ଅସହଯୋଗୀଙ୍କ ସହିତ ତାଙ୍କ ମିଟିଙ୍ଗରେ ଥିଲେ । ମୋତେ ବାଧ ହୋଇ ଏହା କଲେକ୍ଟରଙ୍କୁ ଜଣେଇବାକୁ ପଡ଼ିବ । ଆପଣ ନିଜ ବିଷୟରେ ଅବଶ୍ୟ ସଫେଇ ଦେଇ ପାରିବେ ।'

କୃପା ଉତ୍ତର ଦେଲା, 'ମହାଶୟ, ଆପଣ ଜାଣିଥିବେ ଯେ ମୁଁ ଜଣେ ଅତ୍ୟନ୍ତ ପ୍ରଭୁଭକ୍ତ ଲୋକ । କିନ୍ତୁ ମୋ ଉପରେ ଦୁର୍ଭାଗ୍ୟ ସବାର ହୋଇ ପଡ଼ିଛି । ମୋର ପୁଅ ଗୁରୁଚରଣ ଜଣେ ଉଦୀୟମାନ ଯୁବକ । କେତେଜଣ ମୁର୍ଖଙ୍କ ପ୍ରରୋଚ଼ନାରେ ସେ ନଷ୍ଟ ହୋଇଯାଇଛି ଏବଂ ସରକାରଙ୍କ ବିରୁଦ୍ଧ ଲୋକଙ୍କୁ ସହଯୋଗ କରୁଛି । ଏହି ଜିଲ୍ଲାକୁ ମୁଁ ତାକୁ ଖୋଜିବାକୁ ଆସିଥିଲି, କିନ୍ତୁ ଦୁଃଖର କଥା ତାକୁ ମୁଁ ଖୋଜି ପାଇ ନାହିଁ ।'

କଲେକ୍ଟର କହିଲେ, 'ସତରେ ନା କଣ ? ମୁଁ ଭାବୁଛି ଏଇଟା ଠିକ ବୟାନ । ତମେ ତ ପ୍ରଭୁଭକ୍ତ ଓ ବିଶ୍ୱସ୍ତ । ମୁଁ ତୁମ ପୁଅର ନାଁ ନୋଟ କରି ରଖୁଚ଼ି ଏବଂ ତାକୁ ଖୋଜି ଆଣିବାକୁ ଆଦେଶ କରୁଛି ।'

'ସାର୍, ମୁଁ ବୁଝି ଆସିଲି ଯେ, ସେ ଏଇ ଜିଲ୍ଲାରେ ନାହିଁ । ତେଣୁ ଆପଣଙ୍କ ଅନୁମତି ନେଇ ପରବର୍ତ୍ତୀ ଗାଡ଼ିରେ ମୁଁ କଟକ ଫେରିଯିବାକୁ ଚ୍ଚହେଁ ।'

'ଠିକ୍ ଅଛି ତମ ରିପୋର୍ଟ ତମେ ନିଜେ ଦିଅ ।'

ତରବର ହୋଇ କୃପା ଷ୍ଟେସନ ଯାଇ କଟକ ଗାଡ଼ି ଧରିଲା । ପ୍ରଥମେ ସେ ତାର ସାହେବଙ୍କ ପାଖରେ ଯାଇ ନିଜ କଥା ବୟାନ କଲା ଓ ତା ପରେ ରାୟସାହେବଙ୍କ ପାଖକୁ ଗଲା ।

ରାୟସାହେବ କହିଲେ, ଯାହା କରିବା କଥା, ତୁମ ପାଇଁ ମୁଁ ସବୁକିଛି କରିବି । ମାତ୍ର ଆଗରୁ ଯେମିତି ମୁଁ ତୁମକୁ ସାହାଯ୍ୟ କରିଥିଲି ସେମିତି ହୁଏତ ସମ୍ଭବ ହେବ ନାହିଁ । କାରଣ ମୋର ଏ ଚ୍ଚକିରୀ ଖସି ଯିବାର ଅଛି । ଦେଖ, ଯେତେ ପୋଲିସ ବାବୁ ସବୁ ଯୁଦ୍ଧକୁ ଯାଇଥିଲେ ସମସ୍ତଙ୍କୁ ଛୁଟି ଦିଆ ଯାଇଛି । ସେମାନଙ୍କୁ ଅପେକ୍ଷା

କରିବା ବ୍ୟତୀତ ଅନ୍ୟବାଟ ନାହିଁ । ମାତ୍ର, ଏବେ ସେମାନେ ଛୁଟୀରୁ ଫେରି ଆସିଲେଣି ତେଣୁ ମୋ ଜାଗାରେ ତାଙ୍କ ମଧ୍ୟରୁ କେହି ଯୋଗ ଦେବେ ।'

'କିଏ ସେ, ତାଙ୍କ କଥା କୁହନ୍ତୁ ।'

'ତାଙ୍କ ନାଁ କ୍ୟାପଟେନ୍ ଉଇନଷ୍ଟନ୍ ବୋଲି ମୁଁ ଯାହା ଜାଣିଛି ।'

'ପ୍ରକୃତରେ ସେ ଫ୍ରାନ୍ସରେ ଯୁଦ୍ଧ କରୁଥିଲେ କି ?'

'ନା, ତେବେ ସେ ନାଥ ନଗରରେ ପୋଲିସ ବାଟାଲିଅନ୍‌ରେ କାମ କରୁଥିଲେ ।'

'ସେ କେବେଠୁଁ ଦାୟିତ୍ୱ ନେବେ ?'

'ପଅର ଦିନଠାରୁ ।'

'ତହିଁ ପରଦିନ ମୁଁ ତାଙ୍କୁ ଯାଇ ଅଭିବାଦନ କରିବି ।'

ତହିଁ ପରଦିନ କୃପା ଯାଇ ମାନସିଂ ରାଜାଙ୍କୁ ସାକ୍ଷାତ କଲା । ସେ ସେତେବେଳେ କଟକରେ ଥିଲେ । କୃପାସିନ୍ଧୁର ଉପଦେଶ ମାନି ରାଜା ଉପରିସ୍ଥଙ୍କ ଶ୍ରଦ୍ଧା ଭାଜନ ହୋଇ ପାରିଥିଲେ । ଏପରିକି କଟକ କଲେକ୍ଟରଙ୍କର ସେ ଜଣେ ଜିଗିରିଦୋସ୍ତ ବୋଲି ଲୋକେ ବିଚାରୁଥିଲେ । ଏହେତୁ, ତାଙ୍କର ସମ୍ମାନ ଓ ମହତ୍ୱ ବେଶୀ ବଢ଼ିଯାଇ ଥିଲା । ବେଶ୍ କିଛି ସମୟ କୃପାକୁ ତାଙ୍କର ସାକ୍ଷାତ ପାଇଁ ଅପେକ୍ଷା କରିବାକୁ ପଡ଼ିଲା । ପରେ ସେ ଲକ୍ଷ୍ୟକଲା ରାଜା ବେଶ୍ ଗମ୍ଭୀରତା ସହ ଦୂରତ୍ୱ ରକ୍ଷା କରି ଚାଲୁଛନ୍ତି ।

ରାଜା ତାକୁ କହିଲେ, 'ତୁମେ ତ ତମ କାମ ପାଇଁ ଉପଯୁକ୍ତ ମୂଲ୍ୟ ପାଇ ସାରିଛ । ଏବେ ପୁଣି କଣ ଦରକାର ?'

କୃପା ଉତ୍ତର ଦେଲା, 'ସାର୍ ମୁଁ ଆପଣଙ୍କ କାମ କରି ପାରିବି କି ନପାରିବି ତା ଜାଣି ନଥିଲେ ଆପଣ ମୋତେ ପାରିତୋଷିକ ଦେଇ ନ ଥାନ୍ତେ ।'

ରାଜା ଏକଥାର ସଂକେତ ବୁଝିଗଲେ ଓ ନିଜର ବ୍ୟବହାର ବଦଳେଇଲେ ।

'ଆଛା, ଆଛା ..ଭଦ୍ରଲୋକଙ୍କୁ ଅକୃତଜ୍ଞତା ଦେଖାଇବା ଅନୁଚିତ । ତମ ପାଇଁ କଣ କରିବି କୁହ ?'

'ମୋର ପୁଅ ଗୁରୁଚରଣ ସ୍କୁଲ ଛାଡ଼ି କେଉଁଠାକୁ ପଳାଇ ଯାଇଛି । ମୁଁ ଶୁଣିଲି ସେ ଅସହଯୋଗୀଙ୍କ ସହ ଏଇ ଜିଲ୍ଲାରେ କାମ କରୁଛି । ଆପଣଙ୍କ ରୟତମାନଙ୍କ ସହ ସେ କାମ କରିବାକୁ ଯାଇପାରେ । ବାପା ହିସାବରେ, ତାକୁ ଖୋଜିବାର ଦାୟିତ୍ୱ ମୋର ।'

'ଠିକ୍ କଥା,ମୋର ପାଖ କର୍ମଚାରୀମାନଙ୍କୁ ମୁଁ ଆଦେଶ କରୁଚି ସେମାନେ ଏ ବୋକା ପିଲାଟିକୁ ରୟତମାନଙ୍କ ସହ ମିଶିବାକୁ ନ ଦେବେ ଯେମିତି । ଆମେ ତାକୁ ପାଇଲେ ବେଶ୍ ସୋଡ଼େ ଦେଇ ଲକଅପରେ ରଖିବୁ । ତୁମେ ତାପରେ ଆସିବା ନା ଆମେ ତାକୁ ସିଧା ପୋଲିସରେ ଦେଇ ଦେବୁ ?'

'ତାକୁ ବେଶୀ ପିଟିବେ ନାହିଁ । ପୋଲିସକୁ ମଧ୍ୟ ଦେବେ ନାହିଁ ଯେମିତି ।'

'ଆଚ୍ଛା ଠିକ୍ ଅଛି । ଆଉ କଣ କହିବାର ଅଛି ?'

ସେଠାରୁ ଫେରି ଆସି କୃପା ହରିଚନ୍ଦନଙ୍କୁ ଦେଖାକଲା । ତାକୁ ସେ ସେଠାରେ ପାଇଲା ନାହିଁ କାରଣ ସେ ସବୁବେଳେ ଜମିଦାରଙ୍କ ପାଖରେ ଥାଆନ୍ତି । କୃପା ଯାଇ ତାଙ୍କ ମେନେଜରଙ୍କୁ ଦେଖାକରି ଜାଣିଲାଯେ ରାଜା ତଥାପି ତାଙ୍କ 'ଉପାଧୀ' ସରକାରଙ୍କ ପାଖରୁ ପାଇବାର ଆଶା ରଖିଛନ୍ତି । ମ୍ୟାନେଜର ଅତି ବନ୍ଧୁତ୍ୱ ପୂର୍ଣ୍ଣ ଭାବରେ ରାଜାଙ୍କୁ ଲେଖିଲେ ଓ କୃପାକୁ ଆଶ୍ୱାସନା ଦେଲେ ଯେ ରାଜା ତାକୁ ସାହାଯ୍ୟ କରିବେ ।

ତହିଁ ପରଦିନ କୃପା ତାର ନିଜ କାର୍ଯ୍ୟରେ ଯୋଗ ଦେବାକୁ ଗଲା । ବଡ଼ି ସକାଳୁ ଉଠି ସେ ପରିଜା ରଜାଙ୍କୁ ଦେଖାକଲା । ସେ ବି ତାଙ୍କୁ ସାହାଯ୍ୟ କରିବାକୁ ପ୍ରବୋଧନା ଦେଲେ । ସେ ଅସହଯୋଗୀଙ୍କ ପ୍ରତି ଅନାସ୍ଥା ପୋଷଣ କରିଥିଲେ କାରଣ କୃଷକ ମାନଙ୍କୁ ଜମିଦାରଙ୍କ ବିରୁଦ୍ଧରେ ସେଇମାନେ ମତାଉଥିଲେ ଉଚିତ୍ କର ନ ଦେବା ଲାଗି ।

ସାରାଦିନର କାମପରେ ଆଗପରି କୃପା ମାଛ ଧରିବାକୁ ଗଲାନି । ସହରକୁ ଯାଇ ଆଉ କେଉଁ ପ୍ରଭାବଶାଳୀ ଲୋକଙ୍କୁ ଧରି ପୁଅକୁ ଖୋଜିବା କାମ କରିବା କଥା ଭାବିଲା । ତହିଁପରଦିନ ସେ ନୂଆ ପୋଲିସ ସାହେବଙ୍କୁ ଯାଇ ଦେଖା କଲା । ତା ପ୍ରତି ସମ୍ବେଦନା ପ୍ରକାଶ କରି ସେ ପୁଅର ନାମ ଧାମ ଲେଖିନେଲେ ଓ ପୁଅକୁ ଖୋଜିବାକୁ ଚେଷ୍ଟାକରିବେ ବୋଲି ତାଙ୍କୁ ଆଶ୍ୱାସନା ଦେଲେ । କୃପାର ବିଶ୍ୱାସ ହେଲା ଯେ, ୟାଙ୍କ ସହ ଭଲ ଭାବ ଓ ବିଶ୍ୱାସ ସୃଷ୍ଟି କରି ପାରିଛି ।

କୃପାସିନ୍ଧୁ ନିଶ୍ଚିନ୍ତ ଥିଲା ଯେ ଜିଲ୍ଲାର ବଡ଼ ଜମିଦାର ଏବଂ ପୋଲିସ ସମସ୍ତେ ମିଶି ତାକୁ ତାର ପୁଅକୁ ଉଦ୍ଧାର କରିବାରେ ସହାୟତା କରିବେ । ମାତ୍ର ପନ୍ଦରଦିନ ପରେ ସେ ଯେବେ ପୁଅ ବିଷୟରେ କିଛି ଖବର ପାଇଲାନି, ତାର ମନ ଖୁବ୍ ଦୁଃଖ ହେଲା ।

ଦିନେ ସକାଳେ ସାହେବ ତାକୁ ଏକ ଚିଠିର ନୋଟ କରିବାକୁ ଡାକିଲେ ଓ

ଦେଖିଲେ ଯେ କୃପା କାନ୍ଦୁଛି ।

"ବାବୁ, ତୁମେ ତୁମ ପୁଅ ପାଇଁ ମ୍ରିୟମାଣ ଅଛ, ନୁହଁକି ?"

'ସାର୍, ଆମ ପରିବାରଟା ଯାକ ପ୍ରଭୁଭକ୍ତ, ଏଇ ପୁଅଟା ସେଥିରେ ଅପନିନ୍ଦା ଆଣିଲା ଯାହା ।'

'ଏତେ ନିରାଶାବାଦୀ ହୁଅ ନାହିଁ । ସେଇଟା ତ ମେଞ୍ଚଡ଼ ଟୋକାଟିଏ । ଦିନେ ନିଶ୍ଚୟ ସେ ଫେରିଆସିବ । ତାପରେ ନିଜକୁ ସେ ସୁଧାରିବାକୁ ଢ଼େର ସମୟ ଅଛି ।'

'ସାର୍, ଆମେ ଇଂରେଜ ଅଫିସରଙ୍କର କରୁଣା ପାଇ ଆସୁଛୁ । ଆପଣ ନିଜେ ମୋ ପ୍ରତି ଦୟାଶୀଳ । ଆପଣଙ୍କ ପୂର୍ବରୁ ଥିବା ସାହେବ ମଧ୍ୟ ଦୟାଳୁ ଥିଲେ । କିନ୍ତୁ ମୋ ପୁଅ...' କୃପା କାନ୍ଦି ଉଠିଲା ।

'ଏତେ ଚିନ୍ତା କର ନାହିଁ । ତୁମ ପୁଅର ବୟସ କେତେ ?'

'ମାତ୍ର ଷୋହଳ ସାର୍ ।'

"ତେବେ, ଆଦୌ ବ୍ୟସ୍ତ ହେବାର କିଛି ନାହିଁ । ମ୍ୟାଟ୍ରିକ ପାସ୍ କରିବାକୁ ତା ହାତରେ ସମୟ ଅଛି । ସରକାରୀ ଚାକିରୀ ବି ପାଇବ । ଆମେ ତାକୁ ତାର ଏ ପ୍ରକାର ବୋକାମୀ ଲାଗି ସହଜରେ କ୍ଷମା କରିଦେବୁ ।"

'ଏବର୍ଷ ସେ ମାଟ୍ରିକ ପରୀକ୍ଷା ଦେଇଥାନ୍ତା । ସବୁ ମାଟିକରି ଦେଲା ।'

'ଆର ବର୍ଷକୁ ଦେବ । କ୍ଷତି କଣ ?'

'ଆପଣ ବଡ଼ ଦୟାବାନ ସାର୍ । ମୋର ଲଜ୍ୟା ଯେ ପୁଅଟା ମୋର ନଷ୍ଟ ହୋଇଗଲା । ସେଥିପାଇଁ ତ ମୁଁ ଲଜ୍ଜିତ ସାର୍ । କେତେକେତେ ଗାଁ ଟୋକାଏ ଏଇ ବାଜେ ଆନ୍ଦୋଳନରେ ଯୋଗ ଦେଇଛନ୍ତି । ଓଡ଼ିଆମାନେ ବଂଗାଳୀଙ୍କ ପରି ବ୍ୟବହାର ଦେଖାଉଛନ୍ତି ।'

'ଆମେ ସେଥିପାଇଁ ଆଦୌ ବ୍ୟସ୍ତ ନୋହୁଁ । ତମ ପୁଅ ଫେରିବା ପରେ ତାକୁ ସ୍କୁଲକୁ ପଠେଇବା ଉଚିତ ପନ୍ଥା ହେବ ।'

'ମାତ୍ର ସାର୍, ସେ'ତ କେଉଁଠି ଅଛି, କିଛି ଜଣା ପଡୁନି ।'

'ସେ ନିଶ୍ଚୟ ଦିନେ ଫେରିବ ।'

'କେବେଠୁଁ ହଜିଲାଣି ସାର୍ , ତାର କିଛି ଆଉ ହୋଇଯାଇ ନାହିଁ ତ ?'

'ଏତେ ନିରାଶ ହୁଅନି । ସେ ଠିକ୍‌ଠାକ୍ ଅବସ୍ଥାରେ ପହଞ୍ଚିବ ।'

'ସେ ପିଲାଟା ଖୁବ୍ ବୁଦ୍ଧିମାନ ସାର୍ । ଏ ବର୍ଷ ନିଶ୍ଚୟ ମ୍ୟାଟ୍ରିକ୍ ପାସ୍ କରିଥାନ୍ତା । ଏବେ ସେ କଉଁଠି ଅଛି, କଣ କରୁଛି, ଭଗବାନ ଜାଣନ୍ତି ।'

'ମୁଁ ତାକୁ ଖୋଜିବାକୁ ପୋଲିସକୁ ମନେପକେଇ ଦେଉଛି । ଏତେ ବ୍ୟସ୍ତ ନ ହୋଇ ତୁମ କାମ କର ।'

'କିଛି ସମୟ ପାଇଁ ମାଲିକଙ୍କର ଆଶ୍ୱାସନା ପାଇ ସେ ଆଶ୍ୱସ୍ତ ହେଲା । ସଂଜହେଲାରୁ କାମ ସାରି ସାହେବ କ୍ଲବକୁ ଖେଳିବାକୁ ଗଲେ । କୃପା ତାର ମାଛଧରା ବନସୀ ଧରି ମହାନଦୀ କୂଳକୁ ଗଲା । ମାତ୍ର ମାଛ ଧରି ପାରିଲା ନାହିଁ, ବନସୀଟିକୁ ତଳେ ଥୋଇଦେଇ ବସି ରହିଲା । ପୁଅକୁ ଝୁରି ହୋଇ କହିଲା, 'କୁଆଡ଼େ ଗଲୁରେ ମୋ ପୁଅ । ଫେରିବୁ ନାହିଁ କି ?'

ଅନ୍ଧାର ମାଡ଼ି ଆସିଲା । ସେ ଘରକୁ ଫେରି ଆସିଲା ସିନା ହେଲେ କିଛି ଖାଇ ପାରିଲାନି । ଘରୁବାଳା ବୁଝିଲା ଯେ ଗୁରୁଚରଣ ତାର ନିଜ ପୁଅ ନୁହେଁ । ତେଣୁ ସେ କୃପାକୁ କିଛି ପ୍ରବୋଧନା ଦେବାଟା ଠିକ୍ ହେବନି । ସେ ମଧ୍ୟ କାନ୍ଦି ବୋବେଇ ହୋଇ ଘରେ ଚୁପ୍ ହୋଇ ବସିଲା । ବାରଣ୍ଡାରେ ବସି, ହାୟ ମୋ ପୁଅ, କହି କୃପା ମୁଣ୍ଡରେ ହାତ ବାଡ଼େଇ ହୋଇ କାନ୍ଦୁଥାଏ ।

## ବିଂଶ ପରିଚ୍ଛେଦ

ଶୀତଋତୁ ଆସିଯିବାରୁ ଜିଲ୍ଲାର ଦ୍ୱୀପାଞ୍ଚଳ ଗୁଡ଼ିକୁ ଟୁର ଯିବା ପାଇଁ କଲେକ୍ଟର ସାହେବ ସ୍ଥିର କଲେ । ଏ ସବୁ ଦ୍ୱୀପରେ ଥିବା ସରକାରୀ ଅଞ୍ଚଳଗୁଡ଼ିକ ଆଞ୍ଚଳିକ ମୁଖ୍ୟ ଜମିଦାରୀ ସିରସ୍ତା ସହ ସଂଯୁକ୍ତ । ପ୍ରଥମେ ସେମାନେ ରେଳ ଯୋଗେ ଯାତ୍ରା କରି, ଶୃଙ୍ଖଳା କଂକରିତ ରାସ୍ତାଗୁଡ଼ିକ ମୋଟର କାରରେ ଓ ଗାଉଁଲି କାଦୁଅ ରାସ୍ତା ଅଞ୍ଚଳକୁ ଶଗଡ଼ ଗାଡ଼ିରେ ଗଲେ ।

ରେଳ ରାସ୍ତା ଓ ପାହାଡ଼ ପର୍ବତ ମଝିରେ ଯେଉଁ ଅଞ୍ଚଳ ଦେଇ ସେମାନେ ଯାଉଥିଲେ, ସେଗୁଡ଼ିକ ରେଳରାସ୍ତା ଓ ସାମୁଦ୍ରିକ ଅଞ୍ଚଳଠାରୁ ଭିନ୍ନ ଧରଣର ଥିଲା । ଏହି ଅଞ୍ଚଳରେ ସମୁଦ୍ର ପତନଠାରୁ ଉଚ୍ଚ ଏବଂ ଶୁଷ୍କ ଭୂମିମାନ ଥିଲା । ଠାଏଁ ଠାଏଁ ଆର୍ଦ୍ର ଧାନ ଜମିମାନ ଥିଲା । ଅନ୍ୟ କେଉଁଠି ମାଟି ନଥିବା କଙ୍କରିତ ପଥର ଭୂମି ଉପରେ ଘାସ ସିକଡ଼ାଟାଏ ବି କଅଁଳୁ ନଥିଲା । ଖଣ୍ଡଖଣ୍ଡ ମାଙ୍କଡ଼ା ପଥର ଗେଟିରେ ଜାଗାଗୁଡ଼ିକ ପରିପୂର୍ଣ୍ଣ ଥିଲା । -ତା ପରଠାରୁ ପାହାଡ଼ ଆରମ୍ଭ ହୋଇଯାଇଥିଲା । ସେଇ ଏକାନ୍ତ ପଥୁରିଆ ସ୍ଥାନରେ ଠାଏ ଠାଏ ଗୋଲଗୋଲ ପଥର ଗୁଡ଼ିକ ମାଟି

ଉପରେ ମୁଣ୍ଡ ଟେକିଥାଏ ଯେପରି କି ଅଣ୍ଡାଟିଏ ଖୋଳ ଭିତରୁ ଟେକି ରହିଛି । ସେସବୁ ସ୍ଥାନରେ ପାହାଡ଼ ଗୁଡ଼ିକ ଏତେ ବେଶୀ ବିପଦପୂର୍ଣ୍ଣ ନୁହେଁ । ପାହାଡ଼ର ପାଦ ଦେଶ ଗଛବୃଛରେ ଭର୍ତ୍ତି । ଅନ୍ୟ ସ୍ଥାନ ମାନଙ୍କରେ କଂଙ୍କରିତ ପର୍ବତର ଢ଼ଳାଣ ଗୁଡ଼ିକ ସିଧା ତୀଖ ହୋଇ ତଳକୁ ଯାଇଛି । ସେଠାରେ ଗଛବୃଛ ନାମକୁ ମାତ୍ର ଦେଖାଯାଏ । କେବଳ ପଥର ଓ ପଥର ଖୋଲରେ ପାହାଡ଼ର ପାଦ ଦେଶ ଭର୍ତ୍ତି ହୋଇଯାଇଥାଏ ।

ଏହି ସ୍ଥାନରେ ସେମାନେ କିଛିଦିନ ଅବସ୍ଥାନ କଲେ । ତା ପରେ ପୁଣି ଆଉ ଗୋଟାଏ ଜାଗାରେ ଡ଼େରା ପକାଇବାକୁ ଗଲେ । କିଛି ମାଇଲ ଦୂରରେ ଗୋଟାଏ ଢ଼ାଲୁଆ ପାହାଡ଼ କନ୍ଦର ଦେଇ ରାସ୍ତାଟି ଗତି କରିଥିଲା ଓ କିଛି ଦୂର ତାହା ମେଲି ଯାଇ ପ୍ରଶସ୍ତ ସମତଳ ଅଞ୍ଚଳକୁ ବ୍ୟାପି ଯାଇଥିଲା । ମଝିରେ ମଝିରେ ରାସ୍ତାଟି ଧାନଜମି ଭିତର ଦେଇ ଲମ୍ୱି ଯାଇଥିଲା । ସ୍ଥାନେ ସ୍ଥାନେ ବୁଦୁବୁଦୁକିଆ ଜଂଗଲ ଭିତରେ ରାସ୍ତାଟି ହଜି ଯାଇଥିଲା । ସେ ସ୍ଥାନମାନଙ୍କରେ ଲୋକେ ତାଙ୍କ ଗାଈଗୋରୁ ସବୁଙ୍କୁ ଚରିବାକୁ ଛାଡ଼ିଦେଇ ଥିଲେ । ସେସବୁ ସ୍ଥାନମାନଙ୍କରେ ଗଛଟିଏ ଫୁଟେ ବଢ଼ିଲା ବେଳକୁ ଗାଈଗୋରୁ ମାନେ ତାର ପତ୍ର ଖାଇଦେଇ ଗଛଟିକୁ ମୃତ ଅବସ୍ଥା ଆଣି ଦିଅନ୍ତି । କେବଳ ଗଛଟିର ମୂଳଟି ମାଟି ଭିତରେ ବଂଚିଥାଏ । ପରବର୍ଷ ଗଛଟି ପୁଣି ବଢ଼େ ଓ ପୁଣି ଗାଈଗୋରୁଙ୍କ ଆହାର ହୁଏ । ଏହି ପ୍ରକାର ସମଗ୍ର ଜଙ୍ଗଲଟି ବଢ଼ି ଉଠୁ ଉଠୁ ମରିଯାଉଥାଏ ।

ଏହି ପ୍ରକାର ଏକ ଅଞ୍ଚଳ ଦେଇ ସେମାନେ ନଦୀକୂଳକୁ ଆସିଲେ । ନଈଟି ଜଳରେ ଭରି ରହିଥିଲା । ଏକଥା କୃପାସିନ୍ଧୁ ଆଗରୁ ଜାଣିଥିଲା । ସେମାନେ ଗୋଟାଏ ନୌକାରେ ବସି ନଦୀ ପାର ହେଲେ । କାରଟିକୁ ନଈ ସେପାରିକୁ ନେବାକୁ ଅସୁବିଧାଥିବାରୁ, ସେଠାକାର ଜମିଦାର ଦୁଇଟି ହାତୀ ଧରି ନଈ ସେପାରିରେ ଅପେକ୍ଷା କରିଥିଲେ । ତେଣୁ ସେମାନେ ସୀମାନ୍ତଯାଏ ଯାତ୍ରା କରି ପାହାଡ଼ର ପାଦଦେଶସ୍ଥ ଜଙ୍ଗଲ ଜାଗାରେ ଡ଼େରା ପକାଇଲେ ।

ସେହି ସ୍ଥାନରେ ତିନିଦିନ ପାଇଁ ସେମାନଙ୍କୁ ରହିବାକୁ ହେଲା । ଦିନେ ସାହେବ ତାଙ୍କର ବଂଧୁକ ଧରି ଜଙ୍ଗଲକୁ ଶୀକାର ପାଇଁ ଗଲେ ଓ ବ୍ୟାଗ ଭର୍ତ୍ତି ଚଢ଼େଇ ଶୀକାର କରି ନେଇ ଆସିଲେ । ନିଜର ମଧ୍ୟାହ୍ନ ଭୋଜନ ନିମନ୍ତେ ଗୋଟାଏ ସେଥିରୁ ରଖି ବାକିତକ କର୍ମଚାରୀ ମାନଙ୍କୁ ଦେଲେ । ତେଣୁ କ୍ୟାମ୍ପର ସବୁ ମୁସଲମାନ ଓ ତଳଜାତିର ଲୋକମାନେ ସେଦିନ ଚିକେନ ରୋଷ୍ଟରେ ଫିଷ୍ଟ କଲେ । କୃପାସିନ୍ଧୁ ଏସବୁ କିଛି

ଖାଇପାରିଲା ନାହିଁ । ତା ଜାତିରେ ମାଂସାହାର ମନା । ଦିନେ ସାହେବ ଗୋଟାଏ କଲରା ପତରିଆ ବାଘ ଶୀକାର କରିବାକୁ ଗଛ ଉପରେ ଚଢ଼ି ଛକି ବସିଲେ । କିନ୍ତୁ ତାକୁ ଶୀକାର କରି ପାରିଲେ ନାହିଁ ।

ତୃତୀୟ ଦିନ ସାହେବ ନିର୍ଦ୍ଦେଶ ଦେଲେ ସେଠାରୁ କ୍ୟାମ୍ପ ଉଠାଇବାକୁ ପୁଣି ପ୍ରଥମ କ୍ୟାମ୍ପ ସ୍ଥଳକୁ ଯିବା ପାଇଁ । ସେଠାରେ ଆଉ ଦୁଇଦିନ ରହିବା ପରେ ହେଡ୍‌କ୍ୱାର୍ଟରକୁ ଫେରିବାକୁ ପଡ଼ିବ । ସେଦିନ ଚାକର ଓ କର୍ମଚାରୀମାନେ ରାତି ବହୁତ ନେବା ଯାଏ କ୍ୟାମ୍ପ ଭାଙ୍ଗି ସକାଳୁ ସକାଳୁ ସେଠୁ ବାହାରି ଯିବାର ପ୍ରସ୍ତୁତିରେ ଲାଗିପଡ଼ିଲେ । ସାହେବ ରାତିରେ ଶୀଘ୍ର ଶୋଇ ପଡ଼ିଲେ । ସେ ଶୋଇଯିବା ପରେ, ନୌକାଘାଟ ଅସହଯୋଗୀଙ୍କ ଦ୍ୱାରା ଜବତ ହୋଇଛି ବୋଲି ନୌକାର ମାଝି ଆସି କ୍ୟାମ୍ପରେ ଖବର କଲା ।

ଜଣେ ଅର୍ଦ୍ଦଳୀ ଯାଇ ସାହେବଙ୍କୁ ଉଠେଇ ଖବର ଦେଲାରୁ ସାହେବ ସେଇ ପାଇଜାମା ପିନ୍ଧା ଅବସ୍ଥାରେ ବାହାରକୁ ଆସି ମାଝିଠାରୁ ସବୁ ଖବର ବୁଝିଲେ ।

'ସାର୍, ଆଜି ସକାଳେ ଜଣେ ଗାନ୍ଧୀଟୋପି ବାଲା ମୋତେ ତାଗିଦ୍ କଲେ ଯେ ମୁଁ ଆଉ ସରକାରଙ୍କୁ ଘାଟ ଶୁଳ୍କ ନ ଦିଏ ଯେମିତି । ତାଙ୍କୁ ହିଁ ଶୁଳ୍କ ଦେବାକୁ ସେ କହିଲେ, ନହେଲେ ସେମାନେ ଫେରିଘାଟ ବନ୍ଦ କରିଦେବେ । ମୋ ନୌକାର ସହାୟକମାନେ ସେମାନଙ୍କୁ ପିଟିବାକୁ ଧମକେଇବାରୁ ସେମାନେ ଦୌଡ଼ି ପଳେଇ ଗଲେ । ଆଜି ସଂଧ୍ୟାରେ ପୁଣି ସେମାନଙ୍କ ଦଳର କେତେଜଣକୁ ଧରି ସେମାନେ ଆସିଲେ । ସେମାନେ ବେଶୀ ସଂଖ୍ୟାରେ ଥିବାରୁ ଆମେ ଡରିମରି ଦୌଡ଼ି ପଳେଇ ଆସିଲୁ । ଏବେ ନାଆଘାଟ ଜବତ କରି ଆଉ କାହାକୁ ପାରି କରେଇବା ପାଇଁ ସେମାନେ ଛାଡୁ ନାହାନ୍ତି । ଯେଉଁମାନେ ମହାତ୍ମାଗାନ୍ଧୀଙ୍କର ଜୟ କହି ସେମାନଙ୍କୁ ପଇସା ଦେଉ ନାହାନ୍ତି ସେମାନଙ୍କୁ ସେମାନେ ଛାଡୁ ନାହାନ୍ତି ।

ସାହେବ ପଚାରିଲେ, 'ତମେ ପୁଲିସକୁ ଖବର କରିଛ କି ?'

'ହଁ ଆଜ୍ଞା, ସେମାନଙ୍କୁ ଆସୁଥିବା ଦେଖି ଗୋଟାଏ ଛୋଟ ନାଆରେ ମୁଁ ଜଣକୁ ପୋଲିସ ଷ୍ଟେସନ ପଠେଇ ଦେଇଛି ଖବର କରିବାକୁ ।'

ସକାଳ ହେବାର ଘଣ୍ଟାଏ ଆଗରୁ ତାଙ୍କୁ ଉଠେଇ ଦେଇ ଥିବାରୁ ହାତୀମାନଙ୍କୁ ସଜିଲ କରିବାକୁ କହି ସାହେବ ଶୋଇବାକୁ ଗଲେ । ରାତିପାହିବା ଆଗରୁ କୃପାସିନ୍ଧୁ ଚପ୍ରାସୀମାନଙ୍କୁ ଧରି ଦୁଇଟା ହାତୀରେ ବସି ବାହାରି ପଡ଼ିଲେ । ଚାକରମାନଙ୍କୁ ଜିନିଷ ପତ୍ର ବନ୍ଧାବନ୍ଧି କରିବାକୁ ଛାଡ଼ିଗଲେ । ଖଲାସୀମାନଙ୍କ ଟେଣ୍ଟ ଭାଙ୍ଗି ନଈକୂଳକୁ

ନେଇଯିବାକୁ ନିର୍ଦ୍ଦେଶ ଦେଇ ସେ ଚାଲିଗଲା ।

ନଈଘାଟରେ କୋଡ଼ିଏ ସରିକି ହେବ ଗାନ୍ଧୀଟୋପି ପିନ୍ଧା ଲୋକଙ୍କୁ ଦେଖିଲେ। ନଈ ସେପାରିରେ ପୋଲିସ ଅପେକ୍ଷା କରି ରହିଥିଲେ । ମାତ୍ର ନଈପାରି ହୋଇପାରୁ ନଥିଲେ କାରଣ ଗାନ୍ଧୀଟୋପି ବାଲାଏଁ ନୌକା ସବୁ ଜବତ କରି ରଖିଥିଲେ ।

ସାହେବଙ୍କୁ ଜବରଦସ୍ତ କରିବା ଅସହଯୋଗ ନିୟମର ବାହାରେ ଥିଲା । ତେଣୁ ସାହେବ ଚାହିଁଲେ ଗୋଟାଏ ନୌକା ନେଇ ସେପାରି କି ଯାଇପାରନ୍ତି । ତାଙ୍କ ସାଂଗରେ ଆଉ କାହାରିକି ନାଆବାହି ଯିବାକୁ ଛାଡ଼ିବେ ନାହିଁ ବୋଲି ସେମାନେ କହିଲେ ।

ସେତେବେଳେ କୃପାସିନ୍ଧୁ ସାହେବଙ୍କୁ ସହାୟତା କରିବାକୁ ଯାଇ କହିଲା, 'ଆପଣ ଆଦେଶ କଲେ ମୁଁ ଡଙ୍ଗା ନେଇ ସେପାରିକି ଯାଇ ପାରିବି ।'

'ତୁମେ ଏତେ ବୟସ୍କ ଓ ମୋଟା । ବାବୁ, ତମେ କଣ ଡଙ୍ଗା ବାହିବା ଜାଣ ?'

'ସାର୍, ମୁଁ ମୋଟା ହୋଇଯାଇଚି ସିନା, ନିଶ୍ୱାସ ନେବାରେ ମଧ୍ୟ ମୋତେ କଷ୍ଟ ହେଉଚି, ମାତ୍ର ଡଙ୍ଗା ବାହିନେବାରେ ମୋର ଅଭ୍ୟାସ ଅଛି ।'

ବୁଢ଼ାବଳଙ୍ଗ ନଦୀକୂଳରେ କୃପାସିନ୍ଧୁର ଜନ୍ମ । ନଦୀ ପହଁରିବା ଓ ଡଙ୍ଗା ବାହିବା, ଆପେ ଚାଲି ଶିଖିବା ପରି ସେ ଶିଖି ଯାଇଥିଲା। ନଈକୂଳିଆ ଲୋକେ ହଂସ ଭଳି ନଈରେ ପହଁରି ଶିଖିଥିଲେ । ସେ ଦୁଇଜଣ ଅର୍ଦ୍ଦଳୀଙ୍କୁ ସାଙ୍ଗରେ ନେଲା ଯେଉଁମାନଙ୍କ ଘର ଥିଲା ନଦୀକୂଳରେ ଏବଂ ସେମାନେ ନଦୀ ସହ ସଂଶ୍ଳିଷ୍ଟ ଥିଲେ । ଗାନ୍ଧୀଟୋପୀ ବାଲାଏ ଲାଠିଧରି ଏମାନଙ୍କୁ ଗୋଡ଼ାଇଲେ । ସାହେବ ନିଜ ବଂଧୁକ ଧରି ସେମାନଙ୍କ ମଝିରେ ଆସି ଠିଆ ହୋଇଗଲେ ।

ତାପରେ ସେମାନେ ସମସ୍ତେ ନାଆରେ ଚଢ଼ିଲେ । ଦୁଇ ଅର୍ଦ୍ଦଳୀ ନାଆରେ କାତ ଧରିଲେ । କୃପା ନାଆ ମଙ୍ଗ ଧରି ବସିଲା । ସେ ଯଦିଓ ଘନଘନ ନିଶ୍ୱାସ ନେଉଥିଲା, ସଁ ସଁ ହେଲା । ତା ଦେହରୁ ଝରଝର ଝାଳ ବୋହିଗଲା। ତଥାପି କୌଣସି ମତେ ସେମାନେ ଭଲରେ ଭଲରେ ଯାଇ ଆରକୂଳରେ ପହଞ୍ଚିଗଲେ । ସେପଟେ ପୁଲିସ ବାଲାଏ କେତେଜଣ ଗାଁ ବାଲାଙ୍କୁ ଫୁସୁଲେଇ ନୌକାବାହିବାକୁ ଠିକ୍ କରିଥିଲେ। ସେଥିରୁ ଦି'ଜଣ କାତ ସମ୍ଭାଳିଲେ । ମାତ୍ର କୃପା ପୂର୍ବପରି ମଂଗ ଧରି ବସିଲା । ସବଇନ୍ସପେକ୍ଟର ଓ ପିତଳବେଣ୍ଟିଆ ଲାଠି ଧରି ଅଧଡ଼ଜନେ ଖଣ୍ଡେ କନେଷ୍ଟବଳ ଡଙ୍ଗାରେ ଉଠିଲେ । କୃପା ପୁଣି ଡଙ୍ଗାକୁ ଫେରାଇ ନେଲା ।

ନୌକାରେ ପୋଲିସ ଆସୁଛନ୍ତି ଦେଖି ଅସହଯୋଗୀମାନେ ଛତ୍ରଭଂଗ ଦେଲେ।

ଏଥର ନାଉରୀ ଓ ତାର ମାଝିମାନେ ଫେରିଆସି ନୌକାକୁ ଆର ପାରିକୁ ନେଇଗଲେ ଓ ସେଠାରେ ଥିବା ପୋଲିସ ଗାଁ ଜଗୁଆଳୀମାନଙ୍କୁ ଧରି ଫେରିଆସିଲେ। କେତେକ ଗାଁ ଲୋକେ ବର୍ଛା ଓ ଧନୁତୀର ଧରି ସେମାନଙ୍କ ସାଂଗରେ ଆସିଲେ । ପୋଲିସ ଓ ଗାଁ ଲୋକ ଅସ୍ତ୍ର ଶସ୍ତ୍ର ସଜ୍ଜିତ ହୋଇ ଅସହଯୋଗୀମାନଙ୍କୁ ଠାବ କରିବାକୁ ଗାଁ ଭିତରକୁ ଧାଇଁଲେ । ନାଉରୀ ତାର ନାଆ ଫେରିପାଇଲା । ସାହେବ ବି ତାଙ୍କ କର୍ମଚାରୀମାନଙ୍କ ସହ ନଈ ପାରି ହେଇଗଲେ ।

ପୂର୍ବସ୍ଥାନରେ ଡେ଼ରାପକାଇବା ବେଳେ ସାହେବ କୃପାସିନ୍ଧୁର ବୁଦ୍ଧିକୁ ତାରିଫ କଲେ ଓ କହିଲେ, 'ବାବୁ, ଖୁବ୍ ଜରୁରୀ କାମଟିଏ ତୁମେ କରି ଦେଲ । ମୁଁ ତ ଜାଣି ନଥିଲି ତମେ ଏଡ଼େ ସାହସୀ ପହଁରାଳୀ ବୋଲି । ତୁମ ପରି ଜଣେ ଦୁଃସାହସୀ ଲୋକ ମୁଁ ଏଯାଏଁ ଦେଖି ନଥିଲି ।'

ତହିଁ ପରଦିନ ଇନ୍ସପେକ୍ଟରଙ୍କ ଠାରୁ ଗୋଟାଏ ରିପୋର୍ଟ ମିଳିଲା । ଉତ୍ତର ପୂର୍ବ ଦିଗ ବାଟେ ଅସହଯୋଗୀମାନେ ଜଂଗଲ ଭିତରକୁ ପଳାଇ ଯାଇଛନ୍ତି । ଜଙ୍ଗଲ ଭିତରେ କାଳେ ଗୋଟାଏ ଗୁପ୍ତଘର ଅଛି । ସେଠାରେ ରହି ଅସହଯୋଗୀମାନେ କାମ କରୁଛନ୍ତି । ସେମାନେ ସେହିଘରଟିକୁ ଘେରାଉ କରିବା ପାଇଁ ଆୟୋଜନ କରିସାରିଛନ୍ତି ଏବଂ ଆଶା କରାଯାଏ ଯେ ରାତି ସୁଦ୍ଧା ସମସ୍ତ ଅସହଯୋଗୀଙ୍କୁ କବଳିତ କରାଯାଇପାରିବ ।

ସେଠାରେ ଧରାପଡ଼ିଥିବା ସମସ୍ତ ଲୋକଙ୍କୁ ତାଙ୍କ କ୍ୟାମ୍ପକୁ ପଠାଇବା ଲାଗି ସାହେବ ନିର୍ଦ୍ଦେଶ ଦେଲେ । ତେଣୁ କଟକ ଫେରିବା କାର୍ଯ୍ୟକ୍ରମ ବାତିଲ କରି ଅସହଯୋଗୀମାନଙ୍କୁ ଧରା ହେବା ଯାଏ, ସେଠାରେ ସେମାନେ ଜଗି ରହିଲେ ।

ତୃତୀୟଦିନ କୃପା ନାଆକୁ ନେଇ ନଈରେ ଗଲା ଏବଂ ୬ଜଣ ନେତୃସ୍ଥାନୀୟ ଅସହଯୋଗୀଙ୍କୁ ଧରି ପୋଲିସବାଲା ଫେରିଲେ ।

ରିପୋର୍ଟ ପ୍ରସ୍ତୁତ କରୁଥିବା ପୋଲିସ କହିଲା, 'ସାର୍, ଆମେ ପଳାତକମାନଙ୍କର ପାଦଚିହ୍ନ ଅନୁସରଣ କରି କରି ଗଲୁ । ସେଠାକାର ଲୋକମାନଙ୍କୁ ସେମାନେ କୁଆଡ଼େ ଯାଉଛନ୍ତି ବୋଲି ପଚାରି ପଚାରି ଗଲୁ । ଶେଷରେ ଘନ ଜଙ୍ଗଲ ଭିତରେ ପଶିଲୁ । ସେଠାରେ ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ କରି ଚଳୁଥିବା କିଛି ଲୋକଙ୍କୁ ଭେଟିଲୁ । ଖରାଦିନେ ସେମାନେ ମେହେଗାନୀ ଫଳ ସଂଗ୍ରହ କରନ୍ତି ଓ ଶୀତଦିନେ ଡାଳକାଟି ଜାଳେଣୀ ବିଡ଼ା କରନ୍ତି ।'

ସାହେବ ଅତିଷ୍ଟ ହୋଇ କହିଲେ, 'ସେମାନେ କଣ କରନ୍ତି ନକରନ୍ତି ମୋର ଜାଣିବାକୁ ଇଛା ନାହିଁ। କଣ ଖବର ସେମାନଙ୍କଠୁ ପାଇଲ ତାହା ସଂକ୍ଷେପରେ କୁହ।' ଗୋଟାଏ ଗୋଲାକାର ଘଞ୍ଜଙ୍ଗଲ ଘେରା ପାହାଡ଼କୁ ନିର୍ଦ୍ଦେଶ କରି ସେମାନେ କହିଲେ ଏହାର ଶୀର୍ଷ ଦେଶରେ ଜଙ୍ଗଲ ସଫା ହୋଇ ସମତଳ କରାଯାଇଛି। ସେଇଠି ହିଁ ଅସହଯୋଗୀମାନେ କୁଡ଼ିଆ ବନେଇ ରହିଛନ୍ତି । ସେଇଟା ତାଙ୍କର ଆଶ୍ରମ, ବିଶ୍ରାମସ୍ଥଳୀ ଓ ଆତ୍ମଗୋପନ କରିବାର ସ୍ଥାନ । ସେଠାରେ ଯୁବକମାନଙ୍କୁ ଆନ୍ଦୋଳନ କରିବାର ତାଲିମ ଦିଆଯାଏ । ସେଇ ସ୍ଥାନଟିକୁ ଘେରାଉ କରି ନେବାର ବ୍ୟବସ୍ଥା ମୁଁ କରିଥିଲି । ଗାଁ ଲୋକଙ୍କର ମୁର୍ଖାମୀ ଯୋଗୁ ମାତ୍ର ୬ଜଣଙ୍କୁ ଧରିପାରିବା ସମ୍ଭବ ହେଲା । ଅନ୍ୟମାନେ ଆମ ଘେର ଭାଙ୍ଗି ଆତ୍ମରକ୍ଷା କରିବାରେ ସକ୍ଷମ ହେଲେ।

ସାହେବ ଦେଖିବେ ବୋଲି ସେ ଛଅଜଣ ବିଦ୍ରୋହୀଙ୍କୁ ଧାଡ଼ିରେ ଠିଆ କରେଇ ରଖା ହୋଇଥିଲା । ତା ଭିତରୁ ଦି'ଜଣ ଖୁବ୍ କମ୍ ବୟସର ଥିଲେ -ସ୍କୁଲ ପିଲା ପରି। ଅନ୍ୟମାନେ ଭଡ଼ାଟିଆ ଗୁଣ୍ଡା ଭଳି ଦିଶୁଥିଲେ । ତା ଭିତରୁ ଜଣେ ସ୍କୁଲପିଲା ହିଁ କୃପାସିନ୍ଧୁର ପୁଅ ଥିଲା ।

ନିଜ ବାପାଙ୍କୁ ସାମ୍ନାରେ ଦେଖି ସେ ଦୌଡ଼ିଯାଇ ତାର ଗଳାରେ ଲାଗି ଗଲା। କୃପା ସବୁ ରାଗ ଭୁଲିଗଲା । ପୁଅକୁ ବଂଚିଥିବାର ଏବଂ ଭଲଥିବାର ଦେଖି ଖୁବ୍ ଖୁସିହୋଏ ହୋଇଗଲା ସିଏ । ଜଣେ କନ୍ଷ୍ଟେବଲ ପିଲାଟିକୁ ଭିଡ଼ି ଧରି ଧାଡ଼ିରେ ଠିଆ କରେଇ ଦେଲା ।

ସାହେବ କୃପାକୁ ପଚାରିଲେ, 'ଏ ପିଲାଟି ତମର ହଜିଯାଇଥିବା ପୁଅ ?'

'ହଁ ସାର୍, ଆପଣଙ୍କ ମହାନୁଗ୍ରହରୁ ସେ ମୋତେ ଫେରିମିଳିଲା ।'

'ମୋତେ କଣ ଧନ୍ୟବାଦ ଦେଉଛ, ଇନ୍ସପେକ୍ଟରଙ୍କୁ ଧନ୍ୟବାଦ ଦିଅ । ମୁଁ ଏବେ ବି ଠିକ୍ କରି କହିପାରୁନି ସେ ତମ ପାଖକୁ ଫେରି ଆସିବ କି ନାହିଁ । ଇନ୍ସପେକ୍ଟର, ଏ ବନ୍ଦୀମାନଙ୍କ ବିରୁଦ୍ଧରେ କଣ ସବୁ ପ୍ରମାଣ ଅଛି ?' କୃପାସିନ୍ଧୁକୁ ଚେତେଇ ଦେଇ ସାହେବ ଇନ୍ସପେକ୍ଟରଙ୍କୁ ପଚାରିଲେ ।

'ଏମାନେ ବେଆଇନ ଫେରିଘାଟ ଜବତ କରି ଥିଲେ ବୋଲି ନାଉରୀ ଓ ତାର ସାଥୀମାନେ ଏମାନଙ୍କୁ ଚିହ୍ନଟ କରିଛନ୍ତି ।'

'ମୁଁ ଯେତେବେଳେ ସେଠାକୁ ଯାଇଥିଲି, ଏ ପିଲାଟି ତ ସେଠି ନ ଥିଲା ।'

'ନା। ହେଲେ ଠୋସ୍ ପ୍ରମାଣ ଅଛି ଯେ ତା ଆଗଦିନ ନାଉରୀକୁ ତଡ଼ି ଦିଆହେଲା ବେଳେ ଏମାନେ ସେଠାରେ ଥିଲେ। ଏମାନେ ସେକଥା ସ୍ୱୀକାର ବି କରିଛନ୍ତି।'

'କୃପା ଅନୁନୟ କରି କହିଲା, 'ସାର୍ ଏମାନେ ସବୁ କଅଁଳ ବୟସର ପିଲା । ଏମାନଙ୍କୁ ଛାଡ଼ି ଦେଲେ କିଛି କ୍ଷତି ହେବନାହିଁ ।'

'ସେ ବିଷୟରେ ମୁଁ ନିଶ୍ଚିନ୍ତ ନୁହେଁ । ଏହି ଯୁବକମାନେ ଗାଁ ଗାଁ ବୁଲି ପ୍ରଚାର କରି କ୍ଷତି ଘଟାନ୍ତି । ବିଶେଷତଃ, ବଡ଼ଘର, ଉଚ୍ଚ ଜାତିର ପିଲାମାନେ ଯଦି ହୋଇଥାନ୍ତି କ୍ଷତି ଅଧିକ ହୁଏ । ଗାଁ ଲୋକେ ଏମାନଙ୍କ କଥାରେ ଭଳି ଯାଆନ୍ତି । ଏମାନେ କଣ କହୁଛନ୍ତି ଦେଖାଯାଉ ।'

ବନ୍ଦୀମାନଙ୍କୁ ନେଇ ବାହାରେ କ୍ୟାମ୍ପରେ ଗୋଟାଏ ଧାଡ଼ିରେ ବସାଇ ଦିଆଗଲା । ତାପରେ ଜଣକ ପରେ ଜଣକୁ ଡାକି ଇନ୍ସପେକ୍ଟର ସାହେବଙ୍କ ଆଗରେ ସେମାନଙ୍କୁ ବିଭିନ୍ନ ପ୍ରଶ୍ନ ପଚାରି ଜେରା କଲେ । ଗୁରୁଚରଣର ପାଳି ପଡ଼ିବାରୁ ସେ ତାର ଦୋଷ ମାନିଗଲା ଏବଂ କହିଲା ଯେ ଗାନ୍ଧୀଟୋପି ବାଲାଙ୍କୁ ସେ ଖୁବ୍ ଭୟ କରେ । ସେ ଯଦି କିଛି ଖୋଲି କହି ଦେବ ତ ସେମାନେ ତାକୁ ଜୀବନରୁ ମାରିଦେବେ ।

ହୁଏତ ତାର ବାପା ପାଖରେ ସେ ସବୁ କଥା ଖୋଲି କହି ଦେବ । ତେଣୁ ତାକୁ ତା ବାପା ପାଖକୁ ପଠେଇବା ଲାଗି ସାହେବ ଆଦେଶ କଲେ ।

କୃପାସିନ୍ଧୁର ଟେଣ୍ଟରେ ଗୁରୁଚ଼ରଣକୁ ନେଇ କନେଷ୍ଟବଳ ଛାଡ଼ିଦେଲା । ଫାଇଲ ଓ ଟାଇପରାଇଟର ଧରି ବସିଥିବା କୃପାସିନ୍ଧୁ ଆଗରେ ଗୁରୁଚ଼ରଣ ଯାଇ ଠିଆ ହେଲା ।

'ହାଏରେ ପୁଅ ! ତୁ ଏକାଣ୍ଡ କାହିଁକି କଲୁ ? ମ୍ୟାଟ୍ରିକ ପରୀକ୍ଷା ଦେଇଥାନ୍ତୁ -ପାସ କରିଥିଲେ ସରକାରୀ ଚାକିରୀରେ ମୁକରିର ହୋଇଥାନ୍ତୁ । ଏବେ ନିଜକୁ ଓ ପରିବାରକୁ ବଦନାମ କଲୁ । ଏମିତି କାହିଁକି କଲୁ କହ ?' କୃପା ତାକୁ ପଚାରିଲା ।

ମୁଁ ଜଣେ ଦେଶପ୍ରେମୀ ହୋଇ ମାତୃଭୂମିର ସେବା କରିବାକୁ ଚାହୁଁଥିଲି ।

'ବାପା, ମାଟ୍ରିକ ପାସ୍ କରିଥିଲେ ତୋତେ ମୁଁ କଲେକ୍ଟରଙ୍କ ଅଫିସରେ କିରାଣୀଟିଏ କରେଇ ଦେଇଥାନ୍ତି । ତୁ ମୋ ପରି ଦେଶର ସେବା କରିଥାନ୍ତୁ । ଅଥବା ପୁଲିସ ଚାକିରୀରେ ପଶେଇଥାନ୍ତି । ପୁଲିସ ହୋଇ ବି ଦେଶ ସେବା କରିଥାନ୍ତୁ ।'

'ବାପା, ସେମାନେ ସରକାରଙ୍କର। ଦେଶର କେଉଁ ସେବା କରୁଛନ୍ତି ?'

'କି ବାଜେ କଥା କହୁଛୁ ତୁ ? ତୁ ଜଣେ ହିନ୍ଦୁ ଓ କରଣ ବୋଲି ଭୁଲି ଯାଉଛୁ କି ? ଆମ ଜାତିର କାମ କରିବା ଆମର ଧର୍ମ । ଆମର ଜଣେ ହିନ୍ଦୁରାଜା ଥିଲେ । ଆମେ କଖଗଘ ପଢ଼ିଥିଲେ ଭଲ ହୋଇଥାନ୍ତା । ମୁସଲମାନ ସରକାର ଥିଲେ ଆମ ପୂର୍ବପୁରୁଷ ଆଲିଫ, ବି, ମ ପଢ଼ିଥିଲେ । ଆଉ ଏବେ ଏବିସିଡି ପଢ଼ିବା । ପୁଅରେ,

ତୋ ମା ପ୍ରାର୍ଥନା କରି ପୁଅଟିଏ ଜନ୍ମ କରିଥିଲା – ତୁ ବିଦ୍ୟାବୁଦ୍ଧିରେ ଧୂରୀଣ ହେବୁ । ହାତଯୋଡ଼ି ସେ ଜଗନ୍ନାଥଙ୍କୁ ପ୍ରାର୍ଥନା କରିଥିଲା । ଭଗବାନ କଣ ତାର ପ୍ରାର୍ଥନା ଶୁଣିଲେ ନି ?'

'ବାପା, ଏ ସବୁ ଇଛା ତ ଭଗବାନ ପୂରଣ କରି ସାରିଛନ୍ତି । ହେଲେ, ଭାରତର ଦୁଃଖ, ଶୋଷଣ ଓ ଅତ୍ୟାଚାରର କଥା ମୁଁ ଶୁଣୁଛି । ସେ ସବୁ ଯୋଗୁଁ ମୁଁ ଦୁଃଖିତ ହୋଇ ପଡୁଛି ।'

'ତୋତେ କିଏ ସେସବୁ ବାଜେ କଥା ଗୁଡ଼ା କହିଛି ରେ ପୁଅ ? ମୋତେ କହିଲୁ, ତୁ ସ୍କୁଲରୁ କାହିଁକି ପଳେଇ ଆସିଲୁ ? ଏ ଯାଏଁ କେଉଁଠି କଣ ସବୁ କରୁଥିଲୁ ?'

'ଦେଶଭକ୍ତ ହେବା ଲାଗି ମୁଁ ସ୍କୁଲ ଛାଡ଼ିଲି । ପ୍ରଥମେ ମୁଁ ବାଲେଶ୍ୱର ଗଲି । ସେଠାରେ ସେମାନେ ମୋତେ ପ୍ରାଇଭେଟ ଡାକ୍ତରଖାନା ଚଳାଉଥିବା ଡାକ୍ତରଙ୍କ ପାଖକୁ ପଠେଇଲେ । ସେଠାରୁ କିଛି ନିର୍ଦ୍ଦେଶ ସହ ସପ୍ତାହେ ଯାଏ ଟଙ୍କା ସଂଗ୍ରହ ଓ ପ୍ରଚାର ପାଇଁ ସେମାନେ ପଠାଇଲେ । ତାପରେ ଏଠାକୁ ଟ୍ରେନିଂ ପାଇଁ ପଠାଇ ଥିଲେ । ଯାଠୁଁ ବେଶୀ କିଛି ମୁଁ କହିପାରିବି ନାହିଁ । କହିଲେ, ସେମାନେ ମୋତେ ମାରି ପକେଇବେ ।'

'ସେମାନେ କେମିତି ମାରିବେ ? ସେମାନଙ୍କ ଆଦର୍ଶ ପରା ଅହିଂସା ?'

'ସେମାନଙ୍କ ଅନୁସାରେ, ଗାନ୍ଧୀ ମହାରାଜ ଅହିଂସାର ଡାକ ଦେଇଛନ୍ତି । ମାତ୍ର ସମସ୍ତେ ସେଥିରେ ବିଶ୍ୱାସ କରନ୍ତି ନାହିଁ । ସରକାରଙ୍କ ଆଖିରେ ଧୂଳି ପକେଇବା ଲାଗି ଏଇଟା ଗୋଟାଏ ଚାଲ । ସେମାନେ କହନ୍ତି ମଣିଷ ନ ମାରି ଇଂରେଜମାନଙ୍କୁ ଆମେ ଏଠୁଁ ତଡ଼ି ପାରିବୁ ନାହିଁ । ସେମାନଙ୍କ ପାଖରେ ରିଭଲଭର ବି ଅଛି ।'

'ବାପରେ ! ସେମାନଙ୍କ ସହ ମିଶିବାଟା ଖରାପ ବୋଲି ତୁ ବୁଝିପାରୁ ନାହୁଁ କି ?'

ଏକଥାରେ, ଗୁରୁଚରଣ ତାର ମଥାକୁ ଝୁଙ୍କେଇ ବସିଲା ସିନା କିଛି ଉତ୍ତର ଦେଲା ନାହିଁ ।

କୃପା କହିଲା, 'ବାପାରେ, ତୋ ବାପାଙ୍କୁ କେତେ କଷ୍ଟ ହେଉଛି ତୁ ବୁଝିପାରୁ ନାହୁଁ । ତୁ ନଷ୍ଟର ରାସ୍ତାରେ ଯିବାରୁ ଆମେ ସମସ୍ତେ ଦୁଃଖରେ ଭାଂଗି ପଡ଼ିଛୁଁ । କାନ୍ଦି ବୋବେଇ ରହିଛୁଁ । ତୁ ବଂଚିଛୁ କି ମରିଛୁ, ଆମକୁ କିଛି ଜଣା ନଥିଲା । ଏବେ, ତୁ ପୁଣି ସ୍କୁଲକୁ ଯିବୁ । ମାଟ୍ରିକ ପରେ ତୋତେ ମୁଁ ଏବେ ସମ୍ମାନନୀୟ ସରକାରୀ ଚାକିରୀରେ ଢୁକେଇ ଦେବି ।'

ସ୍କୁଲକୁ ଫେରି ଜଣେ ଭଲ ମଣିଷ ହେବ ବୋଲି ଗୁରୁଚରଣ ପ୍ରତିଜ୍ଞା କଲା । କନେଷ୍ଟବଳ ତାକୁ ପୁଣି ନେଇ ଅନ୍ୟ ଦୋଷୀ ମାନଙ୍କ ସହ ବସେଇ ଦେଲା । ସାହେବଙ୍କ ପାଖକୁ ଯାଇ କୃପା ନିଜ ପୁଅର ବୟାନଟି ଜଣେଇ ଦେଲା ।

ସାହେବ କହିଲେ, 'ବାବୁ, ଅନ୍ୟମାନଙ୍କ ସହ ତୁମ ପୁଅକୁ କୋର୍ଟରେ ହାଜର ହେବାକୁ ହେବ । ତାକୁ ତୁମେ ଜାମିନରେ ନେଇଯାଇ ପାଖରେ ରଖିପାରିବ । ମୁଁ ଆଶା କରୁଛି ସେ ସହଜରେ ଜାମିନ ପାଇଯିବ ।'

## ଏକବିଂଶତମ ପରିଚ୍ଛେଦ

କଟକସ୍ଥ ମୁଖ୍ୟ କାର୍ଯ୍ୟାଳୟକୁ ଯଥାଶୀଘ୍ର ଫେରି ଆସିଲା ପରେ କୃପାସିନ୍ଧୁ ତା'ର ପୁଅକୁ ଧରି ଡେପୁଟୀ ମାଜିଷ୍ଟ୍ରେଟ ଶ୍ୱଶୂରଙ୍କ ଘରକୁ ଗଲା । ଏଇ ଶ୍ୱଶୂର ହେଉଛନ୍ତି ଗୁରୁଚରଣର ନିଜ ଅଜା ।

କୃପାସିନ୍ଧୁଠାରୁ ସବୁ କିଛି ଘଟଣା ଶୁଣିସାରିବା ପରେ ସେ ଗୁରୁଚରଣର ପଳାୟନକୁ ବିଭିନ୍ନ ଦୃଷ୍ଟିକୋଣରୁ ବିଚାର କଲେ । କୃପାସିନ୍ଧୁର ଘର ଓ ପରିବାର ଏକ ସଭ୍ୟ, ଭଦ୍ର ଓ ବିନୟୀ ପରିବାର । ସେମାନେ  ନିଜ ପୈତୃକ ସମ୍ପତ୍ତି ଚାଷବାସ କରି ଭଲରେ ଚଳିବାକୁ ଚାହୁଁଥିଲେ । ତା'ଠାରୁ ଅଧିକ ବେଶୀ କିଛି ନୁହେଁ ବରଂ ଅନ୍ୟାନ୍ୟ ଆବଶ୍ୟକତା ଭରଣା କରିବାକୁ କଲମ ମୁନରେ କିଛି ଅଧିକ ଆୟ କରୁଥିଲେ । ସେମାନେ ଏକାଧାରାରେ ଥିଲେ ଚାଷୀ ଓ ଲେଖକ । ମୁଖ୍ୟତଃ ଚାଷୀ । ଲେଖକ ହିସାବରେ ନଥିପତ୍ର ଉତ୍ତରୁ ଥିଲେ ନହେଲେ କିରାଣୀଗିରି କରୁଥିଲେ । କୃପାସିନ୍ଧୁର ବାପା ତାକୁ ସବୁବେଳେ ସଙ୍କୋଚ ପଣିଆ ବଜାୟ ରଖି ଚଳିବାକୁ ପରାମର୍ଶ ଦେଉଥିଲେ ।

ଡେପୁଟୀ ମାଜିଷ୍ଟ୍ରେଟ ଥିଲେ ଅତି ଅହଂକାରୀ ଲୋକ । ସେମାନଙ୍କର ପୁରୁଷ ପୁରୁଷ ଧରି ପ୍ରଭୁତ ଜମିର ମାଲିକାନା ଥିବାରୁ ସେମାନଙ୍କ ପରିବାର ଖୁବ ଗର୍ବୀ ଓ ଅଂହକାରୀ ଥିଲେ । ଚାଷର ଆୟ ଉପରୁ ଯେତେ ନୁହେଁ, ରୟତଙ୍କ ପାଉଣା ପଇସା ଉପରେ ସେମାନେ ଅୟସ କରୁଥିଲେ । ପାଠପଢ଼ି ଧନ ଅର୍ଜନ କରିବରକୁ ହେଲେ, ସେମାନେ କଲେକ୍ଟର ନତୁବା ଡେପୁଟୀ ହେବାକୁ ଚାହୁଁଥିଲେ। ତାଙ୍କ ଜମିଦାରୀ ମଧ ରୟତମାନଙ୍କ ଉପରେ ଫଳ ଓ ପ୍ରଭାବ ପକାଇବାର ପ୍ରମୁଖ ଭୂମିକା ନେଉଥିଲା ।

ତେଣୁ ଜିଲ୍ଲା ଅଧିକାରୀମାନେ ଏମାନଙ୍କର ସଦିଚ୍ଛା ପାଇଁ ଖୁବ୍ ଆଗ୍ରହୀ ଥିଲେ ଏବଂ ସେମାନଙ୍କ ଦରବାରରେ ଆସୀନ କରି ଏମାନଙ୍କ ସଦିଚ୍ଛା ଆହରଣ ପାଇଁ ବ୍ୟବସ୍ଥା କରୁଥିଲେ । ତାଙ୍କ ପରିବାରରେ ମଧ୍ୟ ଏ ସବୁ ସୁଯୋଗକୁ ଅହମିୟତ ଦିଆଯାଉ ଥିଲା। କାରଣ ସମସ୍ତେ ଜାଣନ୍ତୁ ଯେ ଏମାନେ ବଡ଼ବଡ଼ିଆ ହୋଇଥିବାରୁ ସରକାରୀ ଦରବାରକୁ ନିମନ୍ତ୍ରିତ ହେଉଛନ୍ତି । ଲେଫଟନାଣ୍ଟ ଗଭର୍ଣ୍ଣରଙ୍କ ସହ ସାକ୍ଷାତ ପାଇଁ ମଧ୍ୟ ତାଙ୍କୁ ସୁଯୋଗ ମିଳୁଥିଲା ।

ଗୁରୁଚରଣର ଅଜା ନିଜ ବଂଶର ଏଇ ସମ୍ମାନରକ୍ଷା ପାଇଁ ଖୁବ ଯତ୍ନଶୀଳ ଥିଲେ। ଏପରିକି ବିପରୀତ ପରିସ୍ଥିତିରେ ମଧ୍ୟ । ନିଜ ନାତିର ଏଇ ପଳାୟନ ଘଟଣା ଅଫିସରମାନେ ଜାଣିଲେ, ତାଙ୍କୁ କାଳେ ବାସନ୍ଦ କରିବେ, ସେ ଭୟ ମଧ୍ୟ ତାଙ୍କର ଥିଲା । କୃପାସିନ୍ଧୁକୁ ସେ କହିଲେ ଯେ ଗୁରୁଚ଼ରଣଙ୍କୁ ଘଣ୍ଟାଏ ଖଣ୍ଡେ ସମୟ ତାଙ୍କଠାରେ ଛାଡ଼ି ସେ ଚାଲିଯାଉ ।

ବାପା ଗଲାପରେ, ଗୁରୁଚରଣଙ୍କୁ ସେ ଭାଷଣ ଶୁଣାଇବାରେ ଲାଗିଗଲେ ।

'ପୁଅରେ ଶୁଣ, ବାହାହେଲା ପରେ ଝିଅଟିଏ ନିଜ ଜନ୍ମିତ ପିତାର ଘରୁ ବାହାରି ଯାଇ ଅନ୍ୟ ଏକ ପରିବାରର ସଦସ୍ୟ ହୋଇଯାଏ । ସେ ବିଚ୍ଛେଦଟା ସମ୍ପୂର୍ଣ୍ଣ ବିଚ୍ଛେଦ ନୁହେଁ । ଏ ପୃଥିବୀରେ କୌଣସି ବିଚ୍ଛେଦ ପୂରାପୂରି ବିଚ୍ଛେଦ ହୋଇ ପାରେନା। କେବଳ ପ୍ରାକୃତିକ ଭାବେ ଯେଉଁ ବିଚ୍ଛେଦ ଆସେ ତାହା ଶ୍ରଦ୍ଧାମୟ ହୃଦୟଟିଏ ସହିପାରେ ନାହିଁ ।

ଯଦି ଜଣେ ଶ୍ରଦ୍ଧା ସହିତ ନିଜ ଜାମାତାର ଭଲ ମନ୍ଦରେ ଆଗ୍ରହ ଦେଖାଏ ନାହିଁ ତେବେ ତାହାକୁ ଆମ ସମାଜରେ ଜଣେ ଖୁବ୍ ହୃଦୟହୀନ ଓ ଦାୟିତ୍ୱହୀନ ମଣିଷ ହିସାବରେ ଗଣ୍ୟ କରାଯାଏ । ଶ୍ୱଶୂରଟିଏ ନିଜ ଜୋଇଁକୁ ସାହାଯ୍ୟ ସହଯୋଗ କରିବା ଆବଶ୍ୟକ ହୋଇଥାଏ । ଜଣେ ମଣିଷ ତା'ର ପ୍ରିୟ ପରିଜନ ଓ ସ୍ୱାମୀପୁତ୍ରଙ୍କଠାରୁ ଶ୍ରଦ୍ଧାର ପ୍ରତିଦାନ ଆଶାକରେ । ଭଲ ମଣିଷଟିଏ ବାପା ପରି ନିଜ ଶ୍ୱଶୂରଙ୍କୁ ମଧ୍ୟ ସମ୍ମାନ ଦେଖାଏ । ତାର ପରବର୍ତ୍ତୀ ପୀଢ଼ିରେ ମଧ୍ୟ ସେ ସମ୍ପର୍କ ଆହୁରି ଗାଢ଼ ହୋଇ ଯାଇଥାଏ । ବିବାହ ଓ ରକ୍ତ ସମ୍ପର୍କ ଦ୍ୱାରା ବନ୍ଧନ ଦୃଢ଼ ହୋଇଥାଏ । ତେଣୁ ତୁମର ମା ଚାଲିଯାଇଛି ବୋଲି ଘରର ସମ୍ମାନ କିମ୍ବା ସମ୍ପର୍କ ପ୍ରତି କିଛି ହେଲେ ଦାୟିତ୍ୱ ନାହିଁ ଭାବିବା ଉଚିତ୍ ନୁହେଁ ।

ତୁମେ ଭାବିବା ଉଚିତ୍ ଯେ ତୁମେ ପୁଅ ହିସାବରେ ଓ ମୋର ନାତି ହିସାବରେ ତୁମ ବାପାଙ୍କ ପରିବାର ଓ ଆମ ପରିବାର ପ୍ରତି ବ୍ୟବହାର ଓ କଥାବାର୍ତ୍ତାରେ ତୁମର

ସମ୍ମାନ ରହିବା ଦରକାର । ଆମ ପରିବାରଟି ଏକ ସମ୍ମାନସ୍ପଦ ମହତ୍ ପରିବାର । ଖାଲି ଆମର ଜମିଦାରୀ ଅଛି ତା ନୁହେଁ, ଆମେ ସରକାରଙ୍କର ଅନୁଗତ ଓ ସମର୍ଥକ । ତେଣୁ ସବୁ ଅଫିସରମାନେ ଆମକୁ ସମ୍ମାନ ଦେଖାନ୍ତି । କିନ୍ତୁ ଏବେ ତୁମ୍ଭ ଯୋଗୁ ଆମ ପରିବାର ପ୍ରତି ସରକାରଙ୍କର ସନ୍ଦେହ ଓ ଅବିଶ୍ୱାସ ସୃଷ୍ଟି ହେଉଛି । ଆମ ପରିବାରର ପରମ୍ପରା ହେଉଚି ଶାସନାନୁଗତ ରହିବା । କୌଣସି ଓଡ଼ିଆ ଭଦ୍ରଲୋକ ମଧ୍ୟ ତାର ପରିବାର ବିରୋଧୀ କାମ କରିବା ଏ ଯାବତ ଶୁଣା ଯାଇନାହିଁ । କିନ୍ତୁ ତୁମେ ଏସବୁ କଲ ଏବଂ... । ବାପରେ, ତୁମେ ଦେଖି ପାରୁଚ ତ ତୁମେ କେଉଁପ୍ରକାର ପାପ ଅର୍ଜନ କଲ ।"

ଏମିତି ବହୁତ କିଛି ସେ ବୃଦ୍ଧ ମାଜିଷ୍ଟ୍ରେଟ୍ ଜଣକ ନିଜ ନାତିକୁ ବୁଝେଇ କହିଲେ । ଘଣ୍ଟାଏ ପରେ ବିବ୍ରତ ହୋଇ ଗୁରୁଚରଣ ବାହାରି ଆସିଲା । କିଛି ସମୟ ଧରି ନୀରବ ରହି ଲଜ୍ଜିତ ଅନୁଭବ କଲା ପରେ ସେ ପୁଣି ନିଜର ପୂର୍ବ ଉଗ୍ର ସ୍ୱଭାବ ଧରିଲା ଓ ସଂଗ୍ରାମ ମନସ୍କ ରହିଲା ।

ଗୁରୁଚରଣର କେଶ୍‌ଟି ଲଢ଼ିବାକୁ ତା'ର ବାପା ଜଣେ ଦକ୍ଷ ଓକିଲ ନିଯୁକ୍ତ କଲେ । ଓକିଲଟି ତାକୁ ଦୋଷୀ ସାବସ୍ତ୍ୟ କରିବା ଉଚିତ ବୋଲି ଉପଦେଶ ଦେଲେ । ସେ ଠିକଣା ସମୟରେ କୋର୍ଟକୁ ଜଣେଇଲେ ଯେ ଅତି ଅଳ୍ପ ବୟସର ହୋଇଥିବାରୁ ପିଲାଟା କେତେଜଣଙ୍କ କୁପ୍ରରୋଚନାରେ ପଡ଼ି ଭୁଲ କରି ପକେଇଥିଲେ । ସେ ଆଉ କେବେ ସେପରି କାର୍ଯ୍ୟ କରିବ ନାହିଁ । ତାପରେ ସେ ରାଜନୈତିକ ନେତାଙ୍କ କଥା ବୟାନ କରି କହିଲେ ଯେ ନେତାମାନେ ଦୟାଳୁ କିନ୍ତୁ ଏଇ ଚପଳମତି ଯୁବକଙ୍କ ଦ୍ୱାରା ନିଜର ଫାଇଦା ଉଠାଇଛନ୍ତି । ଯାହାଦ୍ୱାରା ଏଇ ପିଲାମାନଙ୍କ ପିତା ପ୍ରପିତାମହମାନେ ଦୁଃଖ ପାଉଛନ୍ତି । ଏସବୁ କଥା ଅଳ୍ପକେ କୁହାଯାଇ ପାରିଥାନ୍ତା । ମାତ୍ର ଓକିଲ ଜଣକ ନିଜ ବାଗ୍ମୀତା ପ୍ରଦର୍ଶନ କରି ଅଧଘଣ୍ଟାଏ ଧରି ନିଜ ବୟାନ ଜାରି ରଖିଲେ । କୃପାସିନ୍ଧୁ ଭାବିଲା ଯେ ଓକିଲ ପିଛାରେ ତା'ର ଖର୍ଚ୍ଚ ଉଠିଗଲା । ଶେଷରେ ଏଇ ବନ୍ଦୀମାନେ ଗୋଟାଏ ବେଆଇନ ସଂସ୍ଥାର କର୍ମୀ ବୋଲି ଦୋଷୀ ସାବସ୍ତ୍ୟ ହେଲେ ଓ ଜେଲ ଗଲେ । ମାତ୍ର ଗୁରୁଚରଣ ଓ ଅନ୍ୟ ଜଣେ ଫାଇନ୍ ଦେଇ ମୁକ୍ତ ହୋଇଗଲେ ।

ସେଠୁ ଯାଇ କୃପାସିନ୍ଧୁ ତାର ସାହେବଙ୍କୁ ମୋକଦ୍ଦମାର ଫଳାଫଳ ବିଷୟରେ ଜଣେଇଲା । ତାର ଓକିଲର ବାଗ୍ମୀତା ସମ୍ପର୍କରେ ସୁପାରିଶ କରି ପ୍ରଶଂସା କଲା । ସାହେବ କହିଲେ ଓକିଲଙ୍କ ଦକ୍ଷତା ଥାଉ କି ନ ଥାଉ, ଫଳାଫଳ ଏୟା ହିଁ ହୋଇଥାନ୍ତା । ଓକିଲ ପିଛାରେ ସେ ଖାଲି ବେକାର ପଇସା ପାଣିରେ ପକେଇ ଦେଲା ।

କେଶ୍ ଚାଲୁଥିବା ବେଳେ କୃପାସିନ୍ଧୁ ସବୁବେଳେ ଗୁରୁଚରଣଙ୍କୁ ନିଜ ପାଠପଢ଼ା ଜାରି ରଖିବାକୁ କହିଲା । ଲର୍ଡଚେଷ୍ଟାରଫିଲ୍ଡଙ୍କ ପୁତ୍ରଙ୍କୁ ଚିଠିଟି ସେ ତା ପୁଅକୁ ପଢ଼ିବାକୁ କହୁଥିଲା । ତା ପାଇଁ ଗୋଟାଏ ବନସୀ ଖଡ଼ା କିଣି ଦେଲା ଯାହାକୁ ନେଇ ସେ ଖେଳ ସମୟଟିକୁ ବି ଉପଯୋଗୀ କରିପାରିବ । ମାତ୍ର ସେ ଲକ୍ଷ୍ୟ କଲା ଯେ ପୁଅର ସେ ସବୁ କଥାକୁ ସ୍ପୃହା ନାହିଁ ଓ ସେ କ୍ରମେ ଉଦ୍ଧତ ମନେ ହେଉଚି । ଭିତରେ ଭିତରେ ଅଶାନ୍ତି ହେଲେ ବି ସେ ପୁଅ ଉପରେ କଡ଼ା ନଜର ରଖିଲା ।

ମୋକଦ୍ଦମା ସରିବା ବେଳକୁ ବଡ଼ଦିନ ଛୁଟି ଆସିଲା । ବଡ଼ଦିନ ଛୁଟିଟି କୃପା କଟକରେ କଟାଇବାକୁ ପସନ୍ଦ କରିଥାନ୍ତା । କାରଣ ମାତ୍ର ଦଶଦିନ ପାଇଁ ସ୍ତ୍ରୀ ଓ ଦି'ଟା ଝିଅକୁ ନେଇ ଯିବା ତ ସହଜେ ଅଡୁଆ,-ଖର୍ଚ୍ଚ ବି ଅଛି । ତେଣୁ ସେ ସେମାନଙ୍କୁ ଘରେ ଛାଡ଼ିବା ଦିଗରେ ଆଗ୍ରହ କଲା ନାହିଁ । କିନ୍ତୁ ନିଜେ ଗାଁକୁ ଏକଲା ଯିବ ବୋଲି ସ୍ଥିର କଲା । ପୁଅ, ସ୍ତ୍ରୀ ଓ ଦୁଇ ଝିଅଙ୍କୁ କଟକରେ ଛାଡ଼ି ସେ ନିଜ ଗାଁକୁ ଗଲା । ଗଲାବେଳେ ପୁଅକୁ କହିଗଲା ଯେ ତା'ର ଚିଠିପାଇବା ମାତ୍ରେ ସେ ଯେମିତି ସେ ଅନୁସାରେ କାମ କରିବ ।

ଘରେ ପହଞ୍ଚି ଦୂରଯାତ୍ରାର ପରାଶ ମେଣ୍ଟାଇବାକୁ ସେ ବିଶ୍ରାମ ନେଲା । ଛୁଟିରେ ଗାଁକୁ ଆସିଥିବା ଅନ୍ୟ ପୁଅଟିକୁ ଡାକି ତା'ର ସ୍କୁଲ ବିଷୟରେ ବୁଝିଲା- ତା' ଭାଇ କ'ଣ ପାଇଁ ସ୍କୁଲ ଛାଡ଼ି ଥିଲା ସେ ବିଷୟ ମଧ୍ୟ କହିଲା ।

ପୁଅ ଉତ୍ତର ଦେଲା, 'ବାପା, ସେ ସ୍କୁଲଟା ଭଲ ନୁହେଁ । ସେଠୀ ମାଷ୍ଟରମାନେ ପିଲାଙ୍କୁ ଖରାପ କଥା ଶିଖାଉଛନ୍ତି ପରା ।'

'କଣ କହୁଚୁ ତୁ ? ଖରାପ କଥା ? କେଉଁ ବିଷୟରେ ?'

ସେମାନେ ପିଲାଙ୍କୁ ଖେଳପଡ଼ିଆରେ ନେଇ ବା ନିଜ ଘରକୁ ନେଇଯାଇ ଶିକ୍ଷା ଦେଉଛନ୍ତି ।'

"କେଉଁ ବିଷୟରେ ? କ'ଣ ଶିଖାଉଛନ୍ତି ?"

'ଇଂରେଜମାନଙ୍କ ଲୋଭ ବିଷୟ । ଏ ସରକାର କି ପ୍ରକାର କଳୁଷିତ ସେକଥା ସବୁ ବୁଝାଉଛନ୍ତି ।'

"ତୁମ୍ଭମାନଙ୍କୁ ସେ ବିଷୟରେ କ'ଣ କ'ଣ କହିଛନ୍ତି ?"

"ଇଂରେଜମାନେ ସବୁ ତନ୍ତୀମାନଙ୍କର ବୁଢ଼ା ଆଙ୍ଗୁଳି କାଳେ କାଟି ନେଇଛନ୍ତି ବୋଲି କହିଛନ୍ତି ?"

"ଇଏ ତ ବଡ଼ ଖରାପ କଥା । ହେଲେ, ଏମିତି କାହିଁକି ସେମାନେ କରୁଛନ୍ତି ?"

"ତାହାଲେ ତନ୍ତୀମାନେ ଆଉ ଲୁଗାବୁଣି ପାରିବେନି । ଇଂଲଣ୍ଡରେ ବୁଣା ଧୋତି ଏଠି ବିକ୍ରି ହେବ ।"

"ବଢ଼ିଆ କଥା ତ ! ଆଉ ସବୁ କି କଥା ଶିଖାଉଛନ୍ତି ?"

"ସେମାନେ କହୁଛନ୍ତି ଯେ ଇଂରେଜମାନେ ଆସିବା ଆଗରୁ ଏଠି ଦୁର୍ଭିକ୍ଷ କେବେ ପଡ଼ି ନ ଥିଲା ।"

"ବୁଝିଗଲି । ଦୁର୍ଭିକ୍ଷ ପଡ଼ିବା ବେଳେ ଇଂରେଜମାନେ ତାଙ୍କ ଧୋତି ଏଠି ଆଣି ବିକିବେ ନୁହଁ ?"

"ମୁଁ କିଛି ଜାଣେନି ବାବା । ସେମାନେ ତ ସେମିତି କହୁଛନ୍ତି ।"

"ତୁ ଏସବୁ ବାଜେକଥା ବିଶ୍ୱାସ କରୁ ନ ଥିବୁ ନିଶ୍ଚୟ, ନୁହେଁ ପୁଅ ?"

"ହଁ ବାପା, ମୁଁ ଜାଣେ ତୁମେ ଖୁବ୍ ପ୍ରଭୁଭକ୍ତ । ସାହେବ ମାନଙ୍କୁ ଖୁବ୍ ଭଲ ପାଅ । ସେମାନେ କିପରି ତୁମେ ଭଲ କରି ଜାଣ। କାରଣ ସେମାନଙ୍କ ସହ ତୁମର ସଂଗତି ଅଛି । ଗୁରୁଚରଣ କିନ୍ତୁ ତାର ଶିକ୍ଷକମାନଙ୍କ କଥାକୁ ବିଶ୍ୱାସ କରୁଛି ।"

"ମୁଁ ତ ଏପ୍ରକାର ଖରାପ କଥା ଶୁଣି ନଥିଲି। ଏଠା ସ୍କୁଲମାଷ୍ଟରମାନଙ୍କୁ ମୁଁ ଦେଖିନି । ପରେ ସେମାନଙ୍କ ସହ କଥାବାର୍ତ୍ତା କରିବି ।"

କଥା କ'ଣ ବୁଝିବାକୁ କୃପାସିନ୍ଧୁ ସ୍କୁଲକୁ ଧାଇଁଲା । ସବୁ ମାଷ୍ଟର ଛୁଟିରେ ଘରକୁ ଯାଇଥିଲେ କେବଳ ହେଡ୍‌ମାଷ୍ଟର ଥିଲେ । ତାଙ୍କ ଘରେ ସେ କୃପାକୁ ଭଦ୍ରତାର ସହିତ ପାଛୋଟି ନେଲେ । କାରଣ କୃପା ଜିଲ୍ଲା ମାଜିଷ୍ଟ୍ରେଟଙ୍କର ବ୍ୟକ୍ତିଗତ କିରାଣୀ । ହେଡମାଷ୍ଟରଙ୍କଠାରୁ ସେ ବଡ଼ ଜଣେ ଚାକିରିଆ ।

ସେ କହିଲେ, 'ମହାଶୟ, ମୁଁ ଦୁଃଖିତ ଯେ ତୁମ ପୁଅର ଏମିତି ଅବସ୍ଥା ସବୁ ଘଟିଲା ! ଗୁରୁଚରଣ ଜଣେ ଭଦ୍ର ଓ ଉଦୀୟମାନ ଯୁବକ । ଆମେ ସମସ୍ତେ ତାକୁ ଖୁବ୍ ଭଲ ପାଉଁ । ତାର ଚରିତ୍ର ମଧ୍ୟ ଉତ୍ତମ । ସେ ଏଇ ସ୍କୁଲରେ ପଢୁ ବୋଲି ଆମେ ଇଚ୍ଛାକରୁଁ ।'

'ସେ କଥା ତ ପରକଥା । ମୋର ପଚାରିବା କଥା ତମେ ସବୁ ମାଷ୍ଟରମାନେ ଗାନ୍ଧୀଟୋପି ଓ ଖଦଡ଼ ଧୋତି ପିନ୍ଧୁଚ କାହିଁକି ?' କୃପା ପଚାରିଲା ।

'ଏହା ଦ୍ୱାରା ଦେଶର ମୁଁ କିଛି ଉପକାର କରି ପାରୁଚି ବୋଲି ଭାବୁଚି ?'

'ସତରେ ନା କଣ ? ମୋତେ କହିଲ, ଇଂରେଜମାନେ ଆସିବା ଆଗରୁ କେବେ ଦୁର୍ଭିକ୍ଷ ପଡ଼ି ନଥିଲା ?'

'କେବେ ଦୁର୍ଭିକ୍ଷ ପଡ଼ିଥିଲା ତମେ ତାରିଖ କୁହ ?'

'ଥରେ କଟକରେ ଦୁର୍ଭିକ୍ଷ ପଡ଼ିଥିଲା ।'

'ହଁ । ସେତେବେଳେ ବ୍ରିଟିଶରାଜ ଥିଲା, ନୁହେଁ କି ?'

'ହଁ ।'

ଏବେ ଗୋଟାଏ ତାରିଖ କୁହ, ବ୍ରିଟିଶ ସରକାର ଆସିବା ପୂର୍ବରୁ କେବେ ଦୁର୍ଭିକ୍ଷ ପଡ଼ିଥିଲା ?

କୃପା ଉତ୍ତର ଦେଲା, ' ନା, ମୁଁ କହିପାରିବି ନାହିଁ ।'

'ସେଇଠି ରହିଗଲ ତ ?'

'ହଁ ନିଶ୍ଚୟ ରହିଗଲି ତେବେ, ଦେବତାଙ୍କ ଭଳି ଇଂରେଜମାନେ ନିଶ୍ଚୟ ବର୍ଷା ଆଣିପାରିବେ ।'

'ନା, ସେମାନେ ଦେବତା ନୁହଁନ୍ତି ।'

'ବାବୁ, ତୁମେ ଏଡ଼େ ବୋକାଭଳି କଥା କହୁଛ । ବର୍ଷା ବା ମରୁଡ଼ି ଉଭୟଙ୍କ ଦ୍ୱାରା ଦୁର୍ଭିକ୍ଷ ଆସେ ନାହିଁ ?'

'ଏଇ ସବୁ ତ ଦୁର୍ଭିକ୍ଷର କାରଣ ।'

'ଇଂରେଜମାନେ ବର୍ଷା ବା ମରୁଡ଼ି ଆଣିପାରିବେ କହିଲେ, ମୁଁ କ'ଣ ବିଶ୍ୱାସ କରିଯିବି ତୁମ କଥା ?'

'ସାରେ, ମୁଁ କେବେ କହିଲି ଯେ ଇଂରେଜମାନେ ବର୍ଷା ବା ମରୁଡ଼ି ଆଣିପାରିବେ ବୋଲି । ତୁମେ କହିଛ ଯେ ଇଂରେଜ ଆସିବା ପୂର୍ବରୁ ଏଠାରେ ଦୁର୍ଭିକ୍ଷ ନ ଥିଲା । ମୋ ପୁଅମାନଙ୍କୁ ଏକଥା କହିଛ ବୋଲି ତାଙ୍କଠୁ ଶୁଣିଲି, ଇଂରେଜମାନଙ୍କୁ ଘୃଣା କରିବାକୁ, ସେମାନଙ୍କୁ କାହିଁକି ଶିଖାଉଛ ?'

'ବାବୁ, ତୁମେ ଏତେ ଅସନ୍ତୁଷ୍ଟ ହେଉଥିବାରୁ ମୁଁ ଦୁଃଖିତ କିନ୍ତୁ ପିଲାମାନଙ୍କୁ ଦେଶପ୍ରେମୀ ହେବାକୁ ଶିକ୍ଷା ଦେବା କ'ଣ ଭୁଲ ? ଯେଉଁ ପିଲାମାନେ ସେମାନଙ୍କ ଦେଶମାତୃକାକୁ ଭଲ ପାଆନ୍ତି, ସେମାନେ ଆପେ ଆପେ ବିଦେଶୀ ପୋଷାକ କବଳରୁ ନିଜକୁ ରକ୍ଷା କରିବେ ।'

"ଇଂରେଜମାନଙ୍କ ଅତ୍ୟାଚାରର ଏକ ଉଦାହରଣ ?''

"ମୁଁ ସେ କଥା ସତ ଭାବିବି ବୋଲି ତୁମେ ବିଶ୍ୱାସ କରୁଛ କି ?"

"ଏକଥା ଐତିହାସିକ ଭାବେ ସତ୍ୟ ନ ହେଲେ ବି ସାଂକେତିକ ଭାବେ ସତ୍ୟ ।''

"କେମିତି ? ମୁଁ ବୁଝିପାରୁନି ।"

ଯେତେବେଳେ ପିଲାମାନଙ୍କୁ ଦେଶପ୍ରେମୀ କରି ବିଦେଶୀ ଶାସନରୁ ଦେଶକୁ ମୁକ୍ତ କରାଇବାକୁ ସେମାନଙ୍କୁ ଆମେ ପ୍ରରୋଚିତ କରୁଛୁଁ, ବିଦେଶୀ ଶାସକମାନେ ଅତ୍ୟାଚାରୀ ବୋଲି ସେମାନଙ୍କୁ କହିବା ଜରୁରୀ, ଏକଥାକୁ ଉଦାହରଣ ଦେଇ ନ କହିଲେ, ସେମାନେ ବିଶ୍ୱାସ କରିବେ ନାହିଁ ।

"ତେଣୁ, ଆଉ କିଛି ନ ପାଇ ମନକୁ ମନ ଗୋଟାଏ ଉଦାହରଣ ଯୋଡ଼ିଦେଲ, ନୁହେଁ ?"

"ପ୍ରକୃତ ସତ୍ୟ ନ ହୋଇ ଥିଲେ ବି ସେମିତି ଘଟିପାରେ ।"

"ତୁମେ ଜଣେ ପୁରୁଣା କୃତଘ୍ନ । ତୁମକୁ କହିଦେଉଚି ଶୁଣ, ତୁମେ ଏ ସ୍କୁଲ ପାଇଁ ସରକାରଙ୍କଠାରୁ ବାର୍ଷିକ ଗ୍ରାଣ୍ଟଇନ୍ ଏଡ୍ ପାଉଥିବ ।"

"ବାର୍ଷିକ ଗ୍ରାଣ୍ଟଇନ୍ ଏଡ୍ ପାଉଛୁଁ ।"

'ତାହେଲେ ତମ ପିଲାମାନେ ଯାହାଠାରୁ ଖାଉଛନ୍ତି, ତାଙ୍କ ବିରୁଦ୍ଧରେ ସେମାନଙ୍କୁ ମତାଇବା ଉଚିତ୍ ହେବ ନାହିଁ । ହେଡମାଷ୍ଟର ଯେତେବେଳେ ନିମକହାରାମ ହୁଅନ୍ତି - ପିଲାଏ ସେତେବେଳେ ଖରାପ ବାଟରେ ଯିବାଟା ଅସମ୍ଭବ ନୁହେଁ। ତୁମରି ଏ ଭୁଲ ପାଇଁ ମୋ ପୁଅ ଗଣ୍ଡଗୋଳରେ ଫସିଗଲା ।'

"ତୁମେ ରାଗ ନାହିଁ ବାବୁ । ମୁଁ ସେଥିଲାଗି ଦୁଃଖିତ । କିନ୍ତୁ....।"

କୃପା ଆଉ ଅଧିକ କିଛି ଶୁଣିବାର ମାନସିକତାରେ ନଥିଲା । ସେ ତରବର ହୋଇ ଘରକୁ ଫେରିଲା । ତହିଁ ପରଦିନ ସାନପୁଅକୁ ଧରି କଟକ ଫେରିଗଲା ।

ସେଠାରେ ସାହେବଙ୍କ ପାଖରେ ଯାଇ ସାଧୁଚରଣଠୁଁ ଶୁଣି ଥିବା ଓ ହେଡମାଷ୍ଟରଙ୍କ ସହ ହୋଇଥିବା ସମସ୍ତ କଥା ସୁବିସ୍ତାରେ ବର୍ଣ୍ଣନା କଲା ।

"ସାର୍, ଯେଉଁ ମାନଙ୍କ ହାତରେ ଆମ ପିଲାଙ୍କ ଶିକ୍ଷା ନ୍ୟସ୍ତ କରାଯାଇଛି, ସେଇମାନେ ହିଁ ପିଲାଙ୍କୁ ନଷ୍ଟର ଗତିକୁ ଆଗେଇ ନେଉ ଅଛନ୍ତି । ବିଶେଷତଃ ଯେଉଁମାନେ ସରକାରଙ୍କଠାରୁ ଗ୍ରାଣ୍ଟ ଇନ୍ ଏଡ୍ ପାଇଛନ୍ତି, ସେମାନଙ୍କ ପକ୍ଷେ ଏକାର୍ଯ୍ୟ ଅତ୍ୟନ୍ତ ଅଶାଳୀନ ।"

"ମୁଁ ସେ ଗ୍ରାଣ୍ଟଇନ୍ ଏଡ୍ କଥାଟା ବୁଝୁଛି ଗୁହ । ଏହା ବନ୍ଦ ନ କରିବା ଯାଏ ମୁଁ ଶାନ୍ତିରେ ରହିପାରିବି ନାହିଁ ।"

ବହୁ ଲେଖାଲେଖି ପରେ, ଗ୍ରାଣ୍ଟ ଇନ୍ ଏଡ୍‌ଟି ବନ୍ଦ ହେଲା ଓ ସେ ସ୍କୁଲର ସର୍ବନାଶ ହେଲା । ହେଡମାଷ୍ଟ୍ର ଜଣକ ପେଷାଦାର ବିଦ୍ରୋହୀ ସାଜିଗଲେ । ଦ୍ୱିତୀୟ ଶିକ୍ଷକ ଜଣକ ଚୋରୀ କେଶରେ ଜେଲ୍ ଗଲେ । ମାଷ୍ଟରମାନେ ଦେଶସାରା ଭିକମାଗି,

ଋକିରୀ ଖୋଜି ବୁଲିଲେ । ସମସ୍ତେ ବୁଝିଲେ ଯେ କୃପାସିନ୍ଧୁ ଲାଗି ହିଁ ଏ ସମସ୍ତ ଘଟିଗଲା । ଜିଲ୍ଲା ମାଜିଷ୍ଟ୍ରେଟଙ୍କର କିରାଣୀଟିଏର ଭାଉ କେତେ ବୋଲି ସେମାନେ ବୁଝିଗଲେ ।

ଯେଉଁ ସ୍କୁଲମାଷ୍ଟରମାନେ ତା' ପୁଅର ଚରିତ୍ର ଖରାପ କରିବା ମୂଳରେ ଥିଲେ, ସେମାନଙ୍କୁ ଠିକଣା ଜବାବ ଦେଇ କୃପା ତାର ପୁଅମାନଙ୍କୁ କଟକ ସ୍କୁଲରେ ପାଠ ପଢ଼ାଇଲା । ତା ପୁଅମାନେ ତାର ନିଜ ନଜରରେ ରହି ସ୍କୁଲ ଯିବା ଆସିବା କଲେ ଭଲହେବ ବୋଲି ସେ ଭାବିଥିଲା । ସେଥିପାଇଁ ଗୋଟାଏ ବଡ଼ଘରର ଆବଶ୍ୟକତା ପଡ଼ିବ । ଏସବୁ କାରଣରୁ ସେ ପୁଅ ଦିଓଟିକୁ ହଷ୍ଟେଲରେ ରଖାଇଲା । ରବିବାର ଓ ଛୁଟିଦିନ ମାନଙ୍କରେ ସେ ସେମାନଙ୍କୁ ଦେଖିବାକୁ ଯାଉଥିଲା ଓ ଏମିତି ନଜର ରଖୁଥିଲା ।

ଘରେ ପିଲା ଦିଓଟିକୁ ନ ରଖିବାର ମଧ୍ୟ ଏକ ଗୂଢ଼ କାରଣ ଥିଲା । ଦ୍ୱିତୀୟ ସ୍ତ୍ରୀର ଅନୁରୋଧରେ ଦୁଇଟି ଝିଅ ପିଲା ସେ ଘରକାମ ଓ ମର୍ଯ୍ୟାଦା ପାଇଁ କିଣିଥିଲା । ତା'ମଧ୍ୟରେ ଜଣେ ମରିଯାଇଥିଲା । ଅନ୍ୟ ଜଣକ ବଢ଼ିଲା ଝିଅ । କଟକ ଆସିବା ବେଳେ ସେ ଋକରାଣୀ ଝିଅଟିକୁ ମଧ୍ୟ ସାଙ୍ଗରେ ଆଣିଥିଲା । ଗୁରୁଚରଣ ଘରେ ଥିଲାବେଳେ ଋକରାଣୀ ଝିଅଟିର ଚେରା ନଜର ଗୁରୁଚରଣ ଉପରେ ପଡ଼ିବି ବୋଲି ଋରୁବାଲା କୃପାର କାନରେ ପକେଇଥିଲା ।

ଦିନେ ଖରାବେଳେ ସମସ୍ତେ ଶୋଇଥିବା ସମୟରେ ପାଣି ଛଳଛଳ ହେବାର ଶବ୍ଦ କୃପାସିନ୍ଧୁକୁ ଶୁଭିଲା । ସେ ଚଉତରା ଆଡ଼େ ଋହିଁ ଦେଖିଲା ଋକରାଣୀ ଝିଅଟି ବାଲତି ପାଣିରେ ମୁହଁ ଛାଟି ଧୋଉଛି । ଖଟ ଉପରେ ଗୁରୁଚରଣ ବସି ଚଉତରା ଆଡ଼କୁ ଋହିଁ ରହିଛି । ମୁହଁ ଧୋଇବା ଆଳରେ ଝିଅଟି ତାର ସ୍ତନ ଦିଓଟି ଉପରୁ ଲୁଗା ଖୋଲିଦେଲା । ଗୁରୁଚରଣ ଠାରିକରି ତାକୁ ତା ପାଖକୁ ଆସିବାକୁ କହିଲା । ଝିଅଟି ଆସି ଖଟ ଉପରେ ତା ପାଖରେ ବସିଲା । ଠିକ୍ ଏତିକି ବେଳେ କୃପାସିନ୍ଧୁ କାଶି ଦେବାରୁ ଝିଅଟି ତରତର ହୋଇ ଋକରାଣୀ ରହୁଥିବା କୋଠରୀ ଭିତରକୁ ପଶିଗଲା । ଗୁରୁଚରଣ ଶୋଇ ପଡ଼ିବାର ଛଳନା କଲା ।

ସେଦିନ ସଂଧ୍ୟାରେ ଗୁରୁଚରଣ ମାଛ ଧରିବାକୁ ଗଲାବେଳେ କୃପାସିନ୍ଧୁ ଝିଅଟିକୁ ଡାକି ଗାଳିଗୁଲଜ କଲା ।

"କନିଯାକ, ତୁ ଲଜ୍ଜାକୁ ପୋଡ଼ି ଖାଇଦେଲୁଣି ନା କ'ଣ ଯେ ମୋ ପୁଅ ଉପରେ ନଜର ପକେଇ ତା ଆଗରେ ଛାତି ମୁକୁଳା କରି ବୁଲୁଛୁ ।" ଋକରାଣୀ

ଉତ୍ତର ଦେଲା, "ମୁଁ ତୁମ ସ୍ତ୍ରୀଙ୍କର ସେବା ଦାସୀ ହୋଇ ଏଠାକୁ କିଣା ହୋଇ ଆସିଛି । ତେଣୁ ମୁଁ ତୁମର । ତୁମ ପୁଅର ନୁହେଁ । ଏଯାବତ୍ ମୁଁ ମୋର ସତୀତ୍ୱ ତୁମ ପାଇଁ ସମ୍ଭାଳି ରଖିଛି । ମାତ୍ର ତୁମେ ତ ମୋତେ ଲୋଡ଼ିଲ ନାହିଁ । ଏବେ ତ ମୋର ଭରପୂର ଯୁବା ବୟସ । ଏପରି ନିଷ୍ଠୁର କଥା ତୁମ ମୁହଁରେ ଶୋଭା ପାଉନାହିଁ । ତୁମେ କଣ ଜୀବନସାରା ମୋତେ କୁମାରୀ କରି ରଖିବାକୁ ଚାହଁ ?"

"କୃପା ଉତ୍ତର ଦେଲା, କନିୟାକ, ମୁଁ ଜାଣେ ତୁ ଜଣେ ଖୁବ୍ ବିଶ୍ୱାସୀ ଝିଅ । ମୋର ରକ୍ଷିତା ଲୋଡ଼ା ନାହିଁ କି ମୋ ପୁଅର ରକ୍ଷିତା ହେବା ତୋର ଲୋଡ଼ା ନାହିଁ । ଏହା ତ ଲଜ୍ୟାକର କଥା ।"

କନିଯାକ କାନ୍ଦିକାନ୍ଦି କହିଲା, 'ମୋତେ ଦୂରକୁ ପଠେଇ ଦିଅ ବା ମୋ ନିଜ ଘରକୁ ପଠେଇ ଦିଅ । ମୁଁ ମୋ ନିଜ ଲୋକଙ୍କ ପାଖରେ ରହିବି ନତୁବା ଆଉ କେଉଁଠାକୁ ପଳାଇଯିବି ।'

'ମୁଁ ତୋ ପାଇଁ ଜଣେ ବର ଖୋଜି ଦେବି । ଝିଅଟିଏ ଆଜୀବନ କୁମାରୀ ରହୁ ବୋଲି ମୁଁ ଚାହେଁ ନାହିଁ ।'

ଯାପରେ, କୃପାସିନ୍ଧୁ ସେ ଚାକରାଣୀ ଝିଅଟିକୁ ତାର ଗାଁକୁ ପଠେଇ ଦେଲା ଏବଂ ହରିବନ୍ଧୁକୁ ତା' ପାଇଁ ବର ଖୋଜିବାକୁ ନିର୍ଦ୍ଦେଶ ଦେଲା । ଦରକାର ପଡ଼ିଲେ, ବରଂ ଯୌତୁକ ଦେବାକୁ ସେ ରାଜି ଅଛି ବୋଲି ଲେଖିଲା ।

ସ୍ୱାମୀ ଯାହା କଲେ, ସେ ପାଇଁ ଚାରୁବାଳା ତାକୁ ପ୍ରଶଂସା କଲା । "ସେ ଯାଇଚି ଭଲ ହୋଇଚି । ଏବେ ଆମର ଚାକରାଣୀ ନାହିଁ, ଆମ ପରିବାରଟି ଏକ ସୁସ୍ଥ ପରିବାର । ଅଯଥା ବଡ଼ଲୋକୀ ଗାରିମା ଦେଖାଇବା ଭଲ ନୁହେଁ । ତମେ ଖୁବ୍ ଧନୀ ହେଲା ପରେ ଯାଇ ଆମେ ଚାକରାଣୀ ରଖିବା । ଆମ ଝିଅମାନେ ବାହାଯୋଗ୍ୟ ହେବା ବେଳେ ସେମାନଙ୍କ ସାଥୀ ହେବାପାଇଁ ଏବଂ ସେମାନଙ୍କ ସଂଗେ ତାଙ୍କ ଶାଶୂ ଘରକୁ ପଠାଇବା ପାଇଁ ଆମେ ସେତେବେଳେ ଚାକରାଣୀ କିଣିବା ।"

ଏ କଥା କହି ଚାରୁବାଳା ବଡ଼ ଖୁସି ହେଲା ଏବଂ ନିଜ ସ୍ୱାମୀକୁ ଆହୁରି ବେଶୀ ଭଲ ପାଇଲା ।

ଚାକରାଣୀ ଝିଅଟି ଘରୁ ବାହାରିଗଲା ପରେ ଗୁରୁଚରଣକୁ ଆଉ କିଛି ଭଲ ଲାଗିଲା ନାହିଁ । ସେ ଖୁବ୍ ଉଦାସ ହୋଇ ଉଠିଲା । ମଝିରେ ମଝିରେ ତାକୁ ଘର ଅଶ୍ୱସ୍ତିକର ଲାଗିଲା । ସେ ହଷ୍ଟେଲରେ ରହିବା ପରେ ସପ୍ତାହାନ୍ତ ଛୁଟିରେ ଘରକୁ ଆସୁଥିଲା । ଘରକୁ ସେ ଖୁବ୍ ଡେରିରେ ଆସୁଥିଲା । କାରଣ ପଚାରିଲେ ସେ କହୁଥିଲା

ଯେ ସ୍କୁଲ ସାଙ୍ଗମାନେ ତାକୁ ଖୁବ୍ ଭଲ ପାଉଛନ୍ତି । ଶନିବାର ସଂଧ୍ୟାଟି ସେମାନଙ୍କ ସହ ଛୁଟି ଉପଭୋଗ କରିବାକୁ କହୁଛନ୍ତି । ତା ବାପା ଧରିନେଲେ ତା କଥାଟି ସତ ହୋଇଥିବ । ଥରେ ଗୋଟାଏ ଶନିବାରରେ ସେ ମଦ ପିଇ ମାତାଲ ଅବସ୍ଥାରେ ଘରକୁ ଆସିଲା । ତାର ବାପା ଲକ୍ଷ୍ୟ କଲେ ଯେ ମାନସିକ ଅସ୍ଥିରତା ଏବଂ ଉଦାସୀନତା ଯୋଗୁଁ ସେ କମ୍ରେଡ଼ ମାନଙ୍କ ସହିତ ଯାଇ ବାହାରେ ଡେରିଯାଏ ସମୟ କଟାଉ ଅଛି । ତାପରେ ତା'ର ମାନସିକ ଅବସ୍ଥା ଭଲ ହୋଇଗଲେ ପୁଣି ଥରେ ସେ ସେମିତି କରୁଛି ।

କୃପାସିନ୍ଧୁ ତାର ନିଜର ଯୌବନକାଳ କଥା ମନେ ପକାଇଲା ଏବଂ ଘଟଣାଟା କଣ ହୋଇଥିବ ଅନୁମାନ କରି ପୁଅକୁ ବିଭାକରିଦେବା ମତଲବରେ ରହିଲା ।

## ଦ୍ୱାବିଂଶତମ ପରିଚ୍ଛେଦ

ଯଥା ସମୟରେ ଗୁରୁଚରଣର ବିବାହ ସମ୍ପନ୍ନ ହେଲା । କୃପାସିନ୍ଧୁ ତା'ର ନୂଆ ବୋହୂଟିକୁ ଦେଖି ଅନ୍ତର ଭିତରେ ଉଛୁଳି ଉଠିଲା । ଘରକୁ ବୋହୂଧରି ଗୁରୁଚରଣ ଫେରିଲା ପରେ ଘରେ ଆନନ୍ଦ ଉତ୍ସବ ଲାଗିଗଲା । ଏସବୁ ଦେଖି କୃପାର ଖୁସି କହିଲେ ନସରେ । କେବଳ ନିଶିବାଳାକୁ ଦେଖିଲେ ତାକୁ ଦୁଃଖ ଲାଗୁଥିଲା । ଚୁପ୍‌ଚାପ ହୋଇ ତାକୁ ତା'ର କୋଠରୀ ଭିତରେ ରହିବାକୁ ପଡୁଥିଲା । ଏସବୁ ଆନନ୍ଦ ମଉଛବରେ ଭାଗନେବାକୁ ଦିଆଯାଉ ନଥିଲା । କାରଣ ସେ ବିଧବା । ଏପରି ଶୁଭ ଦିନରେ ବିଧବାଟିଏର ଉପସ୍ଥିତି ଦୁର୍ଭାଗ୍ୟ ଆଣେ ବୋଲି ବିଶ୍ୱାସ କରାଯାଉଥିଲା ।

ବୋହୂ ଆସିବା ପରେ ଗୁରୁଚରଣ ପୁଣି ସ୍କୁଲକୁ ଫେରିଗଲା ଓ ମ୍ୟାଟ୍ରିକ୍ ପାଶ୍ କରିବା ଯାଏ ତାକୁ ସେଠାରେ ରହିବାକୁ ପଡ଼ିଲା । ମ୍ୟାଟ୍ରିକ୍ ପାସ୍ କରି ସେ ବର୍ଷ ସେ ଗାଁକୁ ଗଲା ଓ ବାପା ତା'ର ଚାକିରୀ ଯୋଗାଡ଼ କରିବା ଯାଏଁ ତା'ର ବୋହୂ ସହ ରହିଲା । ।

ଏଣିକି କୃପାସିନ୍ଧୁକୁ ଗୁରୁଚରଣର ମାନସିକ ଅସୁସ୍ଥତା ପାଇଁ ଚିନ୍ତା କରିବାକୁ ପଡ଼ିଲା ନାହିଁ । ତାର ଅନ୍ୟ ପୁଅଟି ବେଶ୍ ସୁସ୍ଥ ଶାନ୍ତ ମସ୍ତିଷ୍କ ପିଲାଟିଏ ଥିଲା । ତା ପାଇଁ କିଛି ଜଞ୍ଜାଳ ନଥିଲା । ଖୁସିରେ ସେ ସ୍କୁଲରେ ରହିଲା । ଖେଳାଖେଳି କରିବାକୁ ସେ ଭଲ ପାଉଥିଲା । ରବିବାରଟି ବାପାଙ୍କ ସହ କଟେଇବା ପାଇଁ ସେ ଘରକୁ

ଆସୁଥିଲା । ଅନ୍ୟ ଦିନରେ ଆସୁ ନଥିଲା । କୃପାସିନ୍ଧୁର ଜୀବନ ପୁଣି ସୁଖ ଶାନ୍ତିରେ ଉଛୁଳି ଉଠିଲା ।

ସେଇବର୍ଷ ମାର୍ଚ୍ଚ ମାସରେ ତା'ର ଶାନ୍ତି ପୁଣି ବିଗିଡ଼ି ଗଲା । ତାର ଅଶାନ୍ତି ମୂଳରେ ଏକ ରାଜନୈତିକ କାରଣ ନିହିତ ଥିଲା । ଦିନେ ସଂଧ୍ୟାରେ କୃପା ପାଖକୁ ଜଣେ ଲୋକ ଆସି ତା ସହିତ ସେଠାର ଜଣେ ଅସହଯୋଗୀ ନେତା କଥା ହେବାକୁ ଚାହାନ୍ତି ବୋଲି ଖବର ଦେଲା । ପ୍ରଥମେ କୃପା ଅସମ୍ମତ ହେଲା ସିନା, ପରେ ଭାବିଲା ଯେ ଶାସନ ପ୍ରତି ତାର ଅନୁରକ୍ତି ବିଷୟରେ ଆଦୌ ସନ୍ଦେହ ନାହିଁ । ତେଣୁ ଦୀପ ବାବୁ (ସେ ନେତା) କଣ ତାକୁ କହିବାକୁ ଚାହାନ୍ତି ସେକଥା ଜାଣିବାକୁ ସେ ଉତ୍ସୁକ ହୋଇ ଉଠିଲା । ମାତ୍ର ସେଦିନ ସଂଜରେ ସେ କେତେ ମାଇଲ ବାଟ ଚାଲି ଚାଲି ତାଙ୍କ ପାଖକୁ ଯିବାକୁ ଇଛା କଲାନାହିଁ । ତେଣୁ ସେ କହିଲା ଯେ ଦୀପବାବୁ ଯଦିଗାଡ଼ି ପଠେଇବେ ତେବେ ସେ ଯିବ । ଲୋକଟି କହିଲା ଯେ ସେ ଗୋଟାଏ କାର ଧରି ହିଁ ଆସିଛି । ତେଣୁ ଅଗତ୍ୟା କୃପା ବାହାରି ପଡ଼ିଲା ।

ସେଠାରେ ପହଞ୍ଚିବା ବେଳକୁ ଦୀପବାବୁ ତାଙ୍କ ବାରଣ୍ଡାରେ ବସିଥିଲେ । କୃପାକୁ ଦେଖି ତାକୁ ଗୋଟାଏ ଚେଆର ଦେଲେ ବସିବାକୁ ଓ ଗୋଟାଏ ଟେଲିଗ୍ରାମ ତା ହାତକୁ ବଢ଼େଇ ଦେଇ ତାକୁ ପଚାରିଲେ, "ଏହା କଣ ତୁମେ ଜାଣ କି ?"

କୃପା ଟେଲିଗ୍ରାମଟି ପଢ଼ିଲା । ସେଥିରେ ମାତ୍ର ଗୋଟାଏ ଶବ୍ଦ ଲେଖା ହୋଇଥିଲା, 'ବନ୍ଧାକୋବି' ।

"ତାର ଅର୍ଥ କଣ ?"

"ଏହାର ଅର୍ଥ ମହାତ୍ମା ଗାନ୍ଧୀ ଗିରଫ ହୋଇଗଲେ ।" ଦୀପବାବୁ ଉତ୍ତର ଦେଲେ ।

"ଏ ତ ଖୁବ୍ ବଡ଼ ଖବର ! ହେଲେ ଆପଣ ମୋତେ ଡାକି ପଠେଇଲେ କଣ ପାଇଁ ?"

"କୃପାବାବୁ, ତମେ କଣ ଜାଣିଥିଲ ଗାନ୍ଧୀ ଗିରଫ ହୋଇଯିବେ ବୋଲି ?"

"ନା' ତ ।"

"ତେବେ ସାହେବମାନେ ବି ହୁଏତ ଜାଣି ନଥିବେ । "ଏଇଟା ଗୋଟାଏ ମିଛ ଟେଲିଗ୍ରାମ - ସେମାନେ ପାଇଥିବେ ।"

"ଯାପରେ ସେମାନେ କଣ କରିବେ ?"

"ସେମାନଙ୍କୁ କଣ ଆଦେଶ ମିଳିଛି, ତା ଉପରେ ସବୁକିଛି ନିର୍ଭର କରେ ।"

"ମୋ କହିବା କଥା, ସେମାନେ ଗାନ୍ଧୀଙ୍କ ଗିରଫ ବିଷୟରେ କଣ କରିବେ, ଏ ଆଦେଶ କିଛି ପାଇଛନ୍ତି କି ?"

କିଛିକ୍ଷଣ କୃପା ସନ୍ଧୀହାନ ହୋଇପଡ଼ିଲା । ସେ ବୁଝି ପାରିଲା ଯେ ଦୀପ୍ ବାବୁ ତାଠାରୁ କିଛି କଥା କାଢ଼ିବାର ପ୍ରୟାସ କରୁଛନ୍ତି । ସତ କହିବାକୁ ଗଲେ, ତାପାଖରେ ତ କିଛି ଖବର ନଥିଲା । କିନ୍ତୁ କୃପା ଭାବିଲା ଯେ ତା ପାଖରେ କିଛି ଖବର ନାହିଁ ବୋଲି କହିବା ଉଚିତ ହେବ ନାହିଁ । ତେଣୁ ସେ କହିଲା, 'ମୁଁ ଭାବୁଚି, ତୁମର କାର୍ଯ୍ୟକଳାପ ଉପରେ ସେମାନେ କଣ କରିବେ ନ କରିବେ, ତାହା ନିର୍ଭର କରେ।"

"କୃପାବାବୁ, ତୁମକୁ ସବୁ କଥା ମୁଁ ଖୋଲି କହୁଛି ଶୁଣ । ଆମେ ଭାବିଥିଲୁଁ ଯେ ଏପ୍ରକାର ମିଛ ଟେଲିଗ୍ରାମ ମାଧ୍ୟମରେ ଆମେ ସାହେବମାନଙ୍କଠାରୁ ଖବର ଜାଣି ପାରିବୁଁ ।"

"ମୁଁ ତ ଭାବୁଚି ଏଥିରେ ଆପଣ ସଫଳ ହୋଇଛନ୍ତି । ଯଦି କଲେକ୍ଟରର କିଛି ଖବର ପାଇଥାନ୍ତେ, ତେବେ ମୁଁ ତ ଜାଣିଥାନ୍ତି ।'

"ମାତ୍ର, ଏଇଟା କ'ଣ ଆରମ୍ଭ । ଏହା ମାନେ ଯାପରେ ସବୁ ନେତାଙ୍କୁ ଗିରଫ କରାଯିବ ?"

"ମୁଁ ସେକଥା ଜାଣିନି ଦୀପବାବୁ । ସତ କହିବାକୁ ଗଲେ, ଏସବୁକୁ ମୁଁ ଅହମିୟତ ଦିଏ ନାହିଁ । ଆପଣ ରାଜନୈତିକ ନେତାମାନେ ଅଯଥାଟାରେ ଗୋଟାଏ ପାଲା ଲଗେଇଛନ୍ତି । ଆପଣମାନେ ଜେଲ ଗଲେ ମୁଁ ଆଦୌ ଦୁଃଖିତ ହେବି ନାହିଁ ।"

"ବାବୁ, ମୁଁ ଜଣେ ବୁଢ଼ାଲୋକ । ବାର୍ଦ୍ଧକ୍ୟ ହେତୁ ଜେଲରେ ରହିବାକୁ ମୁଁ ଅସମର୍ଥ ।"

ଦୀପବାବୁ, ଏ ଖବର କେଉଁଠୁ ଆସିଲା ବୋଲି ସରକାର ଜାଣିବାକୁ ଚେଷ୍ଟା କରିବେ । ଆପଣଙ୍କ ଲୋକେ ଗଣ୍ଡଗୋଳ କଲେ, ସରକାର ତ ତାର ଦୃଢ଼ ପଦକ୍ଷେପ ନେବେ । ଲୋକେ ଯଦି ଚୁପ୍‌ଚାପ୍ ରହି କଣ ଘଟୁଚି ବୋଲି ଦେଖିବାକୁ ଅପେକ୍ଷା କରିବେ ତ ଭଲ । ବାଧ୍ୟ ନ ହେଲେ ସରକାର କୌଣସି ବିଷୟରେ ଦୃଢ଼ ପଦକ୍ଷେପ ନିଅନ୍ତି ନାହିଁ ।"

ଦୀପବାବୁ ଦୀର୍ଘଶ୍ୱାସଟିଏ ଛାଡ଼ିଲେ । ସେ ଦୀର୍ଘଶ୍ୱାସଟି ଯେ ଆଶ୍ୱସ୍ତିର କି ଅଶ୍ୱସ୍ତିର, ସେକଥା କୃପା ଠିକ୍‌ରେ ଧରିପାରିଲା ନାହିଁ ।

'ବାବୁ, ବର୍ଷେ ଆଠମାସ ଧରି ଏହି ଆନ୍ଦୋଳନ ଆରମ୍ଭ ହୋଇଛି । ତୁମେ ଭାବୁଥିବ ଯେ ଆମେ ଲୋକଙ୍କୁ ଉସ୍‌କାଉଛୁଁ । ସେମାନେ ଆସି ବିପଦ ସମୟରେ

ଆମ ପାଖରେ ଠିଆ ହେବେ । ଏ ଗିରଫ ଘଟଣା ପରେ ଆମେ ସେମାନଙ୍କୁ ଆନ୍ଦୋଳନର ପନ୍ଥା ଆପଣେଇବା ପାଇଁ ପ୍ରରୋଚିତ କରି ପାରିବୁଁ କି ? କେବେ ନୁହେଁ । ସେମିତି ଗୋଟାଏ ବି ବିଶ୍ୱାସୀ ଲୋକ ମୁଁ ଏବେ ଯାଏଁ ଦେଖିନାହିଁ ।'

ଦୀପବାବୁ ପୁଣିଥରେ ଏକ ଦୀର୍ଘଶ୍ୱାସ ଛାଡ଼ିଲେ । କୃପାସିନ୍ଧୁ ବୁଝିଲା ତାଙ୍କର ଏ ଦୀର୍ଘଶ୍ୱାସ ଆଶ୍ୱସ୍ତିର ନୁହେଁ, ଅବସୋସର ଦୀର୍ଘଶ୍ୱାସ ।

'ବର୍ତ୍ତମାନ ମୁଁ ଯାଇ କଲେକ୍ଟର ସାହେବଙ୍କୁ ଏ ଖବରଟି ଦେବା ଠିକ୍ ହେବ ବୋଲି ମୁଁ ଭାବୁଛି । ଖବରଟା ଆଗୁଆ ପାଇଗଲେ ସେ ଖୁସି ହେବେ । ଆପଣଙ୍କର ଯଦି ଆପତ୍ତି ନ ଥାଏ, ତେବେ ଏ ଟେଲିଗ୍ରାମଟି ମୁଁ ନେଇଯାଉଛି ।'

'ହେଉ, ନେଇ ଯାଅ ।'

'ଧନ୍ୟବାଦ । ସାହେବ କଣ କଣ ସବୁ କରିବେ ସେ କଥା ମୁଁ ଜାଣିବାକୁ ଚେଷ୍ଟା କରିବି ଏବଂ ସମ୍ଭବ ହେଲେ ତମକୁ ଖବର ଦେବି ।'

କୃପାସିନ୍ଧୁ ଦୀପବାବୁଙ୍କ କାର ନେଇ କଲେକ୍ଟର ସାହେବଙ୍କ ଘରକୁ ଗଲା । ସାହେବ ସେତେବେଳକୁ ତାଙ୍କର ରାତ୍ରୀଭୋଜନ ସାରିଥିଲେ । ଏଇ ସମୟରେ ସାଧାରଣତଃ ସେ ଉପରତାଲାର ବାରଣ୍ଡାରେ ବସି ବହି ପଢ଼ନ୍ତି । ମାତ୍ର ତାଙ୍କ ପଢ଼ାଘରେ ଆଲୁଅ ଜଳୁଥିବା ଦେଖି, ସେ କାମରେ ଲାଗିଛନ୍ତି ବୋଲି କୃପାସିନ୍ଧୁ ଜାଣି ପାରିଲା ।

'ବାବୁ , ତୁମେ ଟିକେ ଅପେକ୍ଷା କର । ମୁଁ ଏବେ ଯେଉଁକାମରେ ଲାଗିଛି ସେଥିରେ, ତୁମେ କିଛି ସାହାଯ୍ୟରେ ଆସିବ ନାହିଁ । ଏବେ ଗୋଟାଏ ଟେଲିଗ୍ରାମ ପାଇ ତାର ଅର୍ଥ ବୁଝିବାକୁ ଚେଷ୍ଟା କରୁଛି ।'

'ସାର୍, ମୁଁ ଏକ ଜରୁରୀ ଖବର ଆଣିଛି ।'

'ଚୁପ୍, ତୁମେ ମୋତେ ଡିଷ୍ଟର୍ବ କରୁଛ ବୋଲି ମୁଁ କିଛି ନା କିଛି ଭୁଲ କରି ବସୁଛି ।'

କୃପାସିନ୍ଧୁ କିଛି ସମୟ ଅପେକ୍ଷା କଲା । ତାପରେ ସ୍ଥିର କଲା ଯେ, ନିଶ୍ଚିନ୍ତ ଭାବରେ ଅତିଶୀଘ୍ର ଏ ଖବରଟି କଲେକ୍ଟରଙ୍କୁ ଜଣେଇବା ଦରକାର ।

'ସାର୍ ଖୁବ୍ ଜରୁରୀ ଖବରଟିଏ ଅଛି ।'

'କହିଲି ପରା, ମୋତେ ଅନ୍ୟମନସ୍କ କରାଅ ନାହିଁ ବୋଲି ? ଦୟାକରି ସେପଟ ରୁମ୍‌ରେ ଯାଇ ଅପେକ୍ଷା କର ।' ରାଗିଉଠି ସାହେବ କହିଲେ ।

ସାହେବଙ୍କ କଥାନୁସାରେ କୃପା ସେପଟ ଘରେ ଅପେକ୍ଷା କରି ରହିଲା ଓ ସାହେବ ଟେଲିଫୋନରେ କଣ ସବୁ ଉତ୍ତେଜିତ ହୋଇ କହୁଥିବାର ଶୁଣିପାରିଲା ।

‘ହେଲୋ, ଏକ୍ସଚେଞ୍ଜ ! ଉଠ, ମୋତେ ନମ୍ବର ନାଇନ ଦିଅ । ହେଲୋ, ମୁଁ ପୁଲିସ ସୁପରିଟେଣ୍ଡଙ୍କ ସହ କଥା ହେବାକୁ ଚାହେଁ ।’ ହେଲୋ... ଉଇନଷ୍ଟନ୍ କହୁଚ ତ ? ମୁଁ ଗୋଟାଏ ସାଂକେତିକ ଟେଲିଗ୍ରାମ ପାଇଛି । ସେଥିରୁ କିଛି ବୁଝିପାରୁନି । ତମେ ଦୟାକରି ସଂଗେ ସଂଗେ ଆସି ଏଠାରେ ପହଞ୍ଚିଯାଅ । ହଁ... ଖୁବ୍ ଜରୁରୀ... ପାଞ୍ଚ ମିନିଟ୍ ଭିତରେ ପହଞ୍ଚ ଯେମିତି ।’

ପାଞ୍ଚ ମିନିଟ୍ ଭିତରେ ପୋଲିସ ସାହେବ ପହଞ୍ଚି ଗଲେ । କିଛି ସମୟ ନୀରବତା ଛାଇଲା । ସାହେବ କାଗଜ ଗୁଡ଼ିକ ଚଞ୍ଚଳ ଚଞ୍ଚଳ ନିରୀକ୍ଷଣ କରି ଯାଉଥିଲେ । ତାପରେ ପୋଲିସ ସାହେବ କହିଲେ, ‘ଏଇଟାରୁ କିଛି ବୁଝି ପାରିବେନି -ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଆପଣ ଭୁଲ ଭାବରେ ଆରମ୍ଭ କରିଛନ୍ତି ।’

‘ମୁଁ କିପରି ଭୁଲ୍ କଲି ?’

ଆପଣ ମୂଳ ଶବ୍ଦଟିର ବନାନ ଭୁଲ୍ ଧରିଛନ୍ତି ।

‘ସେଇଥିପାଇଁ କଣ ଏତେ ଝାମେଲା ?’

‘ମୋତେ ଟେଲିଗ୍ରାମ୍‌ଟି ଦିଅନ୍ତୁ । ପାଞ୍ଚମିନିଟ ଭିତରେ ମୁଁ ଆପଣଙ୍କୁ ସବୁ ବୁଝାଇ ଦେବି ।’

‘ଠିକ୍ ଅଛି । ଏଇ ସମୟ ଭିତରେ ମୋ ଟାଇପ୍ ବାବୁ କଣ ସନ୍ଦେଶ ନେଇ ଆସିଛନ୍ତି, ତାଙ୍କଠୁଁ ମୁଁ ବୁଝିନେଉଛି । କଣ ଖବର ଆଣିଛ ଟାଇପ୍‌ବାବୁ କହିଲ ।’

‘ସାର୍, ଦୀପବାବୁ ମୋତେ ଡକେଇ ଗୋଟାଏ ଟେଲିଗ୍ରାମ ଦେଖାଇଲେ । ସେଇଟାରେ ଖୁବ୍ ଗୁରୁତର ଖବର ଥିଲା ।’

‘ଦେଖାଇଲ ମୋତେ ?’

କୃପାସିନ୍ଧୁ ସାହେବଙ୍କୁ ଟେଲିଗ୍ରାମଟି ଦେଲା ।

‘ଏଇଟା କଣ ? ବନ୍ଧାକୋବି । ତା ମାନେ ?’

‘ତାର ମାନେ ଆଜ୍ଞା, ଗାନ୍ଧୀ ମହାଶୟ ଗିରଫ ହୋଇଯାଇଛନ୍ତି ।’

‘ଦୀପବାବୁ ଏକଥା ତୁମକୁ କହିଲେ ?’

‘ହଁ, ସାର୍ ।’

‘ମୋତେ ସାଂଗେ ସାଂଗେ ଖବର ଦେଲନି ?’

‘ଆପଣଙ୍କୁ ବ୍ୟସ୍ତ ନ କରିବାକୁ ଯେ ଆଦେଶ ଦେଲେ ।’

ପୋଲିସବାବୁ ସେପଟୁ ପାଟିକରି କହି ଉଠିଲେ- ‘ବୁଝିଗଲି ସାର୍ ବୁଝିଗଲି ।’

କଲେକ୍ଟର ଓ ତାଙ୍କ ପଛେ ପଛେ କୃପା, ପୋଲିସବାବୁଙ୍କ ପାଖକୁ ଗଲେ ।

'ଗାନ୍ଧୀ ଆରେଷ୍ଟ ହୋଇ ଗଲେ ।'

'ସେଇ କଥା ମୁଁ ଏଇମାତ୍ର ଜାଣିଲି ।'

'ସତରେ ଜାଣିଲେ ? କେମିତି ଜାଣିଲେ ?'

'ମୋର ଟାଇପ୍ ବାବୁ ସେକଥା ଦୀପ୍‌ବାବୁଙ୍କଠାରୁ ସଂଗ୍ରହ କରି ଆଣିଛନ୍ତି । ସେ ଲୋକ ସହ ଆମେ ସମ୍ପର୍କ ରଖିବା ଦରକାର ହେବ ବୋଲି ମୁଁ ଭାବୁଛି ।'

'ନିଶ୍ଚିତ ଭାବରେ ବାବୁ । ଦୀପ୍‌ବାବୁଙ୍କ ମତିଗତି ଉପରେ ତମର ଧାରଣା କଣ ?'

'ମୁଁ ଅନୁମାନ କରୁଚି ସେ ଡ଼ରିଯାଇଛନ୍ତି । ସେ ଜାଣିବାକୁ ଚାହୁଁଥିଲେ ଗାନ୍ଧୀଙ୍କ ଗିରଫଦାରୀ ପରେ, ଆଉ ନେତାମାନଙ୍କୁ ଗିରଫ କରାଯିବ କି ? ସେଥିପାଇଁ ସେ ମୋତେ ଏଠାକୁ ପଠେଇଛନ୍ତି ।'

'କଥାଟା ଅଡୁଆ ଲାଗୁଚି । ସେ ହୁଏତ ଖବରଟା ସବୁଠୁ ଆଗେ ପାଇ ଯାଇଛନ୍ତି ।' ପୋଲିସବାବୁ କହିଲେ ।

'କେତେବେଳେ ସେ ଟେଲିଗ୍ରାମଟି ପାଇଲେ ?' କଲେକ୍ଟର ପଚାରିଲେ ।

'ସାର, ହୁଏତ ଅଧଘଣ୍ଟା ତଳେ ଯେତେବେଳେ ମୁଁ ଏଠାକୁ ଆସିଲି, ଦୀପ୍‌ବାବୁଙ୍କ ଲୋକେ ମୋତେ ଡାକିଲେ । ତାର ଅଧଘଣ୍ଟା ପୂର୍ବରୁ ଏ ଟେଲିଗ୍ରାମଟି ଆସିଥିଲା ହୁଏତ ।'

'ଘଣ୍ଟେ ଆଗରୁ ମୁଁ ଏଇ ସାଂକେତିକ ଟେଲିଗ୍ରାମଟି ପାଇଥିଲି ।'

ତେବେ, ସେମାନେ ଗୋଟାଏ ପରେ ଗୋଟାଏ ସତର୍କତା ମୂଳକ ଟେଲିଗ୍ରାମ ପଠାଇ ଦେଉଛନ୍ତି ।' ପୋଲିସ ସାହେବ କହିଲେ ।

'ଏସବୁ ଟେଲିଗ୍ରାମ ସତର୍କ ରହିବା ପାଇଁ ନା କିଛି ପଦକ୍ଷେପ ନେବା ପାଇଁ ?' କଲେକ୍ଟର କହିଲେ, 'ଜନତା ଏକଥାକୁ କେମିତିଭାବେ ଗ୍ରହଣ କରୁଛନ୍ତି ସେ କଥା ଆମେ ଜାଣିବାର କଥା । ଅସହଯୋଗୀମାନେ ଗଣ୍ଡଗୋଳ କରିବାକୁ ମସୁଧା କରୁଛନ୍ତି କି ?'

କୃପା ଉତ୍ତର ଦେଲା, 'ଆଜ୍ଞା, ମୁଁ ଆପଣଙ୍କୁ ନିଶ୍ଚୟ କରି କହି ଦେଇପାରେଁ କି ସେମାନେ ସେମିତି କିଛି କରିବେ ନାହିଁ । ସେ ମୋତେ କହିଲେ ଯେ ଇଚ୍ଛାକଲେ ବି ଲୋକମାନଙ୍କୁ ସେ ପ୍ରଭାବିତ କରିପାରିବେ ନାହିଁ ।'

'ତୁମେ ନିଜେ କଣ ଭାବୁଛ ବାବୁ ? ଲୋକଙ୍କ ମତିଗତିରୁ କଣ ଜାଣୁଛ ? ଗଣ୍ଡଗୋଳର କିଛି ଲକ୍ଷଣ ଦେଖୁଛ କି ?'

'ସେମିତି କିଛି ହେବନି ସାର ।'

ସେକଥା ସବୁ ଠିକ୍ ଥିଲା । ତହିଁ ପର ତିନିଦିନ ଧରି ସାହେବମାନେ ସଜାଗ ହୋଇ ଖବର କାଗଜ ପଢ଼ିଲେ ଓ କେଉଁଠାରେ ବି କିଛି ଗଣ୍ଡଗୋଳ ଖବର ନ ଥିଲା ।

ମେ ମାସରେ ସାଧୁଚରଣର ବାହାଘର ହେଲା । ତାର ଭାଇର ବାହାଘର ପରି ସାଧୁଚରଣର ବାହାଘର ପାଇଁ କୃପା ସମସ୍ତ ଆୟୋଜନ କରି ଥିଲା । ବାହାଘରର ପରେ ପରେ ସାଧୁଚରଣ ସ୍କୁଲ ହଷ୍ଟେଲକୁ ଚାଲିଗଲା । ମାଟ୍ରିକ ପାସ୍ ପରେ ସେ ବର୍ଷ ସେ'ବି ତାର ସ୍ତ୍ରୀ ସହ ଗାଁରେ ରହିଲା ।

କୃପାର ଦ୍ୱିତୀୟ ନାତି ସେଇ ବର୍ଷ ଜନ୍ମ ହେଲା । ଠିକ୍ ପୂଜା ପରେ ପରେ ନାତି ହେଲା । କୃପା ବଡ଼ଦିନ ଛୁଟିରେ ଗାଁକୁ ଯାଇ ନାତିକୁ ଦେଖିଲା । ସାଂଗରେ ଚାରୁବାଳା ଓ ତାର ଦୁଇ ଝିଅକୁ ବି ନେଇ ଯାଇଥିଲା । ସେଇଟି ପୁଅ ଥିଲା ଓ ତା ନାଁ ଜଗନ୍ନାଥ ରଖା ହୋଇଥିଲା । କୃପା ଓ ତାର ବାପା ଦୁଇଜଣ ନିଜନିଜକୁ ଖୁବ୍ ଗର୍ବିତ ମନେ କରୁଥିଲେ ।

ନବମାତୃତ୍ୱ ଲାଭ କରିଥିବା ବୋହୂକୁ ଚାରୁବାଳା ପିଲାର ଯତ୍ନ ନେବାରେ ସାହାଯ୍ୟ କରିବା ସହ, ବୋହୂକୁ ପିଲା ପାଳିବାର ତାଲିମ ବି ଦେଉଥିଲା । ଚାରୁବାଳାର ଦୁଇଜଣ ଯାକ ବୋହୂ ଶାଶୂକୁ ଖୁବ୍ ଭକ୍ତି କରୁଥିଲେ । ସାଧାରଣତଃ ପ୍ରତ୍ୟେକ ହିନ୍ଦୁ ଘରେ ଏହା ଦେଖା ଯାଏ ନାହିଁ । ସାରାପରିବାର ତାକୁ ଭଲ ପାଉଥିଲେ । ସେ ଏତେ ସ୍ନେହୀ ଓ ଯତ୍ନଶୀଳା ଥିଲା ଯେ କୌଣସି କାମକୁ ଅନିଚ୍ଛା ପ୍ରକାଶ କରୁ ନଥିଲା । ସେଥିପାଇଁ କୃପା ତାକୁ ଖୁବ୍ ଭଲପାଉଥିଲା ନିଜ ସଉତୁଣିଆ ପୁଅ ବୋହୂ ଓ ତାର ପିଲାକୁ ବି ଚାରୁବାଳା ଭଲ ପାଉଥିଲା ଠିକ୍ ନିଜ ପିଲାପରି ।

ଏସବୁ ସହ କୃପା ତାର ନିଜ ଦୁଇଝିଅଙ୍କ ବିବାହ କଥା ମଧ୍ୟ ଚିନ୍ତା କରୁଥିଲା । ନିଜ ସ୍ତ୍ରୀ ସହ ଆଲୋଚନା କରି ପରବର୍ଷ ବଡ଼ ଝିଅଟିର ବିବାହ କରାଇବାକୁ ସ୍ଥିର କରିଦେଲା ।

ଦି'ଟା ଚାକରାଣୀଝିଅ କିଣି ସେମାନଙ୍କ ସଂଗେ ତାଙ୍କ ଶାଶୂଘର ମାନଙ୍କୁ ପଠେଇବାର ବନ୍ଦୋବସ୍ତ ମଧ୍ୟ କଲା । ଆଗରୁ ସ୍ତ୍ରୀକୁ କଥା ଦେଇଥିବା ଅନୁସାରେ ଛୁଟିସରିବା ପରେ ଫେରିଯାଇ ସେ ବର ତଲାସରେ ରହିଲା ।

ସେତେବେଳକୁ କଟକର ପ୍ରାୟ ଅଧିକାଂଶଙ୍କୁ ସେ ଚିହ୍ନିଯାଇ ଥିଲା । ସମସ୍ତେ ତାକୁ ବି ଚିହ୍ନି ଥିଲେ ଓ ସମ୍ମାନ କରୁଥିଲେ । ଟାଉନର ଇନ୍ସପେକ୍ଟରଙ୍କ ପାଖକୁ ଯାଇ ଝିଅ ଦି'ଟା କିଣିବା ବିଷୟରେ ସାହାଯ୍ୟ କରିବାକୁ ତାଙ୍କୁ ଅନୁରୋଧ କଲା ।

ପୋଲିସବାବୁ କହିଲେ, 'ଦୁର୍ଭିକ୍ଷବେଳେ ତୁମେ ସେ ସୁଯୋଗ ହରେଇ ଦେଲ। ପଇସା ନ ଦେଇ ମଧ୍ୟ ଯେତେ ଇଚ୍ଛା ସେତେ ଛୋଟ ଝିଅ ସେତେବେଳେ ତମେ ପାଇ ପାରିଥାନ୍ତ ।'

'ତାହାଲେ, ଏ ଯାଏ ସେମାନଙ୍କୁ ପାଳିବାକୁ ପଡ଼ିଥାନ୍ତା ଏବଂ ଏବକୁ ସେମାନେ ବଡ଼ ହୋଇ ଯାଇ ଆମର ଲକ୍ଷ୍ୟ ପୂରଣ କରିପାରନ୍ତେ ନାହିଁ । ଶସ୍ତାରେ ମିଳୁଚି ବୋଲି ଦରକାର ନଥିବା ବେଳେ କିଛି କିଣିବା ଉଚିତ ନୁହେଁ । ଏବେ ବି ଚାକରାଣୀ ସୁବିଧାରେ ମିଳିବେ ।'

'ଏବେ ସେମାନଙ୍କର ଭାଉ ବେଶୀ ବଢ଼ିଯାଇଛି ।'

'କାହିଁକି ? ଏବେ କଣ ଗରୀବ ବିଧବାମାନଙ୍କର ପିଲା ନାହାନ୍ତି, ଯେଉଁମାନଙ୍କୁ ସେମାନେ ପୋଷି ନ ପାରି ବିକି ଦିଅନ୍ତି ।'

'ସେମିତି ତ' ଢେର ଅଛନ୍ତି । ଥରେ ଥରେ ଗାଁରୁ ସ୍ତ୍ରୀଲୋକମାନେ ସହରକୁ ଛୁଆ ବିକିବାକୁ ଆସନ୍ତି । ନିଜ ଛୁଆ କି ଆଉ କାହାର ଛୁଆ ଉଠେଇ ଆଣି ବେଶ୍ୟାଳୟମାନଙ୍କରେ ସେମାନଙ୍କୁ ବିକି ଦିଅନ୍ତି । କିନ୍ତୁ ଏବେ ସେମାନେ ଖୀରସ୍ତାନୀ ମିଶିଓନାରୀ ମାନଙ୍କୁ ଛୁଆ ବିକି ଦେଉଛନ୍ତି ।'

କୃପାସିନ୍ଧୁ ଆଶ୍ଚର୍ଯ୍ୟ ହୋଇ ପଚାରିଲା, 'ମିଶନାରୀମାନେ ଛୁଆ କାହିଁକି କିଣି ନିଅନ୍ତି ?'

ଏ ପିଲାମାନେ ବେଶ୍ୟାଳୟ ନ ଯିବେ ବୋଲି । ଏହା ଏକ ଉଚ୍ଚ ଆଦର୍ଶ ଏବଂ ସେବାମୂଳକ କାର୍ଯ୍ୟ । ବେଶ୍ୟାଳୟର ମାଲିକମାନେ ମିଶିଓନାରୀଙ୍କଠାରୁ ଅଧିକ ପଇସା ଦେଇ ଛୁଆ କିଣନ୍ତି । ଏବେ ମିଶିନାରୀମାନେ ଅଧିକ ପଇସା ଦେଇ ପ୍ରତିଯୋଗିତାରେ ଝିଅ କିଣୁଥିବାରୁ ଝିଅମାନଙ୍କ ଦର ବଢ଼ି ଯାଇଛି ।'

'ଇଏତ ଖୁବ୍ ଲଜ୍ଜ୍ୟାକର କଥା ।' କୃପା ମୁହଁ ମୋଡ଼ିଦେଇ କହିଲା । 'ଏଇ ମିଶନାରୀମାନେ ଆମେରିକାର ଲୋକ । ମୁଁ ଭାବୁଛି ସେମାନଙ୍କ ଦେଶ ଲୋକଙ୍କୁ ଏକଥା ସେମାନେ ଲେଖୁଥିବେ । ସରକାର ଏହା ବିରୋଧରେ କିଛି ପଦକ୍ଷେପ ନେବା ଉଚିତ୍ ।'

'ଆମେରିକାନ୍‌ମାନେ କଣ ଭାବିଲେ କି ନ ଭାବିଲେ ସେଥିରେ ଆମର ଯାଏ ଆସେ କେତେ ?'

କିଛିଲୋକ ଭାବନ୍ତି ଯେ ଏକଥା ବାହାରେ ପ୍ରଚାର ହେବା ଉଚିତ ନୁହେଁ । ଅବଶ୍ୟ ମୁଁ ଏ ବିଷୟରେ ସେମିତି ଭାବେନି। ସରକାର ନିଶ୍ଚେ ଏ ବିଷୟରେ କିଛି

କରିବେ। ତୁମେ କଣ ପାଇଁ ଝିଅ କିଣିବ ଚାହୁଁଚ କହିଲେ ମୁଁ ତୁମକୁ ସେ ଦିଗରେ କିଛି ସାହାଯ୍ୟ କରିପାରନ୍ତି ।' ପୋଲିସବାବୁ କୃପାକୁ କହିଲେ।

'ଦୁଇଟି ଚାକରାଣୀ ଝିଅ ମୋ ଦୁଇଝିଅଙ୍କ ବିବାହ ପରେ, ସେମାନଙ୍କ ଶାଶୂ ଘରକୁ ପଠେଇବା ଲାଗି ମୁଁ ଚାହେଁ । ମୋ ଝିଅମାନେ ବିବାହ ଯୋଗ୍ୟ ହେଇ ଗଲେଣି। ଆସନ୍ତାବର୍ଷ ବଡ଼ଟିର ବାହାଘର କରିବାକୁ ଠିକ୍ କରିଛି । ମୁଁ ତ ରାଜା ନୁହେଁ । କେବଳ ଚାକରାଣୀ ଝିଅ ସଂଗେ ପଠେଇବି । ଏହା ପରିବାରର ସମ୍ମାନ ବଢ଼ାଇବାରେ ସାହାଯ୍ୟ କରିବ । ଶାଶୂଘରେ ଝିଅକୁ ମଧ୍ୟ କାମରେ ସେ ସାହାଯ୍ୟ କରିବ ।'

'ନିଶ୍ଚୟ, ନିଶ୍ଚୟ । ତେବେ ଚାକରାଣୀ ଝିଅର ବୟସକୁ ବିଚାରକୁ ନେଇ କିଣିବା ଉଚିତ ।'

'ସେମାନଙ୍କ ବୟସ, ମୋ ଝିଅମାନଙ୍କର ବୟସ ପାଖାପାଖି ହେଲେ ବା ଟିକେ ଛୋଟ ହେଲେ ଭଲ । ଏଇ ଧର ଅଠର ବର୍ଷ ବୟସର ।'

'ଆଚ୍ଛା, ମୁଁ ତମ ଝିଅ ପାଇଁ ଏମିତିକା ଚାକରାଣୀଟିଏ ପାଇଁ ଆଖି ପକେଇବି। ହେଲେ, ମିଶନାରୀମାନଙ୍କୁ ଏ କଥାର ସୁରାକ୍ ନ ମିଳେ ଯେମିତି ।'

'କାହିଁକି ?'

'ସେମାନେ ଏ ବିଷୟରେ ଆମେରିକାକୁ ଜଣେଇ ପାରନ୍ତି ।'

ଏ ଉକ୍ତିଟି ଯେ ଥଟ୍ଟା ସେକଥା କୃପା ବୁଝି ପାରିଲା ନାହିଁ । ଥଟ୍ଟା ହେଲେ ବି ହେଉ । ନିଜର ପ୍ରଭାବ ବଳରେ ଇନ୍ସପେକ୍ଟର ତା ପାଇଁ ତା ଇଚ୍ଛା ମୁତାବକ ଦୁଇଟା ଝିଅ ଖୋଜିଦେଲେ । କୃପାସିନ୍ଧୁ ଶସ୍ତାରେ ଦୁଇଟା ଚାକରାଣୀ ଝିଅ ପାଇଗଲା ।

## ତ୍ରିବିଂଶତମ ପରିଚ୍ଛେଦ

ବଡ଼ଦିନ ଛୁଟିର କିଛିଦିନ ପୂର୍ବରୁ କୃପାସିନ୍ଧୁ ତା'ର ନୂଆ ନାତିଟିକୁ ଦେଖିବାକୁ ଗାଁକୁ ଯାଇଥିବା ବେଳେ ତା'ର ସାହେବଙ୍କର ବଦଳି ହୋଇଗଲା । ତାଙ୍କ ସ୍ଥାନରେ ଜଣେ ଯୁବ ଅଫିସର କାର୍ଯ୍ୟରେ ଯୋଗ ଦେଲେ । ସେ ଏଥି ପୂର୍ବରୁ ଓଡ଼ିଶାରେ କେବେ ବି ଚାକିରୀ କରି ନଥିଲେ ।

ଇଂଲଣ୍ଡରେ ଥିବାବେଳେ ଅଳ୍ପଦିନ ପୂର୍ବରୁ ସେ ବିବାହ କରିଥିଲେ । କୃପା

ତା'ର ଜୀବନରେ ଦେଖିଥିବା ସବୁଠାରୁ ସୁନ୍ଦରୀ ନାରୀ ଥିଲେ ଏଇ ନୂଆ ସାହେବଙ୍କ ପତ୍ନୀ। ଅନ୍ୟ ମେମ୍ ସାହେବ ମାନଙ୍କଠାରୁ ପୂରାପୁରି ସେ ଭିନ୍ନ ଥିଲେ । କାରଣ ଏହି ପ୍ରଦେଶର ଅନ୍ୟ ଅଫିସରମାନେ ଭଲ ଝିଅ ନ ପାଇ ଦେଶୀ ଝିଅମାନଙ୍କୁ ହିଁ ବିବାହ କରୁଥିଲେ । ଏ ମେମ୍ ସାହେବ ଥିଲେ ଇଂଲଣ୍ଡର ଝିଅ । ତାଙ୍କ ଦେହର ରଙ୍ଗ ବରଫପରି ଶୁଭ୍ର ଥିଲା । ଆଖିଗୁଡ଼ିକ ଆକାଶ ପରି ନୀଳ ଏବଂ ବାଳଗୁଡ଼ିକ ସୁନାପରି ଚକ୍‌ଚକ୍ ସୁନେଲୀ ।

କୃପାସିନ୍ଧୁ ଭାବୁଥିଲା, ଏ ମେମ୍ ସାହେବ ନିଶ୍ଚୟ ଇଂଲଣ୍ଡର କୌଣସି ପ୍ରଖ୍ୟାତ ପରିବାରର ଝିଅ ହୋଇଥିବେ । ନହେଲେ, ଏତେ ଗୋରା ଓ ସୁନ୍ଦର କେମିତି ହେଲେ । ତାର ସାହେବ ମଧ ସାଧାରଣ ଇଂରେଜଙ୍କ ପରି ନୁହନ୍ତି । କୌଣସି ଉଚ୍ଚକୁଳରେ ପିଲା ହୋଇଥିବେ । ନହେଲେ ସେ ଇଂଲଣ୍ଡ ଯାଇ ଜଣେ ଉପଯୁକ୍ତ ଝିଅ ବାହାହୋଇଥାନ୍ତେ କାହିଁକି । ମିସନାରୀ ଝିଅକୁ ବାହା ହୋଇ ଥାନ୍ତେ ତ । ଏପରି ଜଣେ ସାହେବଙ୍କୁ ପାଇ ସେ ଖୁବ୍ ଖୁସିଥିଲା ଓ ନିଜର ସମ୍ମାନ ତାଙ୍କ ସହ କାମ କରି ବଢ଼ିଗଲା ବୋଲି କୃପା ଭାବୁଥିଲା ।

ବଡ଼ଦିନ ଛୁଟିରୁ ଫେରି କୃପା ନୂଆ ସାହେବଙ୍କୁ ଦେଖା କରିବାକୁ ଗଲା । ସାହେବ ତାଙ୍କ ପଢ଼ାଘରେ ଗୋଟାଏ ଇଜି ଚେଆର ଉପରେ ବସିଥିଲେ । ତାଙ୍କ ସ୍ତ୍ରୀ ତାଙ୍କଠାରେ ବସି ସିଲେଇ କରୁଥିଲେ । ସେ ଗୋଟାଏ ଫାଇଲକୁ ବିରସ ଭାବରେ ତନଖୁ ଥିଲେ।

କୃପାସିନ୍ଧୁ ଯାଇ ସାହେବ ଓ ମେମ୍‌ସାହେବଙ୍କୁ ଅଭିବାଦନ ଜଣେଇଲା । ସାହେବ ମୁଣ୍ଡ ହଲାଇଲେ । ମେମ୍‌ସାହେବ ସିଲେଇରୁ ମୁଣ୍ଡ ଟେକି ଚାହିଁଲେ ଓ ମଧୁର ସ୍ୱରରେ ସ୍ମିତ ହସି କହିଲେ, "ନମସ୍କାର, ଟାଇପ ବାବୁ ।" ସାହେବ ତାଙ୍କ ଫାଇଲ ପତ୍ର ଟିକେ ଦୂରକୁ ଠେଲିଦେଇ ଚେଆର ପଛକୁ ଝୁଙ୍କି ପଡ଼ି କହିଲେ, "ତମକୁ ମୋ କାମରେ ସାହାଯ୍ୟ କରିବାକୁ ହେବ । ଏ ଦେଶର ଲୋକଙ୍କ ଚାଲିଚଳଣି ଓ ଆଦବ କାଇଦାମାନ ତୁମକୁ ସବୁକିଛି ଜଣା ।"

କୃପା ବିନୀତ ଭାବରେ କହିଲା, " ମୁଁ ତ ସାହାଯ୍ୟ କରିବାକୁ ରହିଛି ସାର୍।"

ଠିକ୍ ଅଛି, ଏଇ ଫାଇଲଟା ଦେଖ । ଯାର ମୁଣ୍ଡଗଣ୍ଡି ମୁଁ କିଛି ବୁଝି ପାରୁନି । ବଡ଼ପାଟଦେଇ ବୋଲି କଣ କିଛି ଅଛି କି ?"

"ସେଇଟା ଜଣେ ରାଜାଙ୍କର ସବୁଠୁଁ ବଡ଼ ସ୍ତ୍ରୀଙ୍କର ସଙ୍ଗା । ବଡ଼ ପାଟମହାଦେଇ।" କୃପା ବୁଝାଇ ଦେଲା ।

"ଆଉ ଫୁଲବିବାହର ଅର୍ଥ କଣ ?"

"ତାମାନେ ଫୁଲ ବାହାଘର ସାର୍ ।"

'ସେ କଥାତ ମୁଁ ବୁଝୁଛି । ହେଲେ ଫୁଲବାହାଘରର ଅର୍ଥ କଣ ?"

"ମୁଁ ବୁଝାଇ କହୁଛି ଶୁଣନ୍ତୁ ସାର୍ । ଏହା ହେଉଚି ଗଡ଼ଜାତ ଜିଲ୍ଲାରେ ରଜାମାନଙ୍କର ପରମ୍ପରା । ଯଦି ରଜାଙ୍କର ରାଣୀମାନଙ୍କ ପାଖରୁ କୌଣସି ସନ୍ତାନ ଜାତ ନ ହୁଏ, ତେବେ ରାଜା ତାଙ୍କ ରକ୍ଷିତାକୁ ବାହା ହୁଅନ୍ତି । ସେ ଯେକୌଣସି ଜାତିର ହୋଇ ପାରନ୍ତି । ଏଇ ରକ୍ଷିତାଠାରୁ ରାଜାଙ୍କର ଯଦି ପିଲାପିଲି ହୁଅନ୍ତି, ସେ ମଧ୍ୟ ରାଜ୍ୟର ମାଲିକ ହେବ । କିନ୍ତୁ ଯେ କୌଣସି ରକ୍ଷିତାର ପିଲା ରାଜାଙ୍କର ଉତ୍ତରାଧିକାରୀ ହୋଇ ପାରିବ ନାହିଁ ।"

"ଇଏ କି ପ୍ରକାର ଅମାନୁଷିକ ପରମ୍ପରା ଯେ ?"

କଲେକ୍ଟର ଫାଇଲଟାକୁ ଆଉଥରେ ନିଜ ଆଡ଼କୁ ଟାଣି ଆଣି ବଡ଼ବଡ଼ ଆଖିରେ ପଢ଼ିବାକୁ ଲାଗିଲେ ।

'ସାର, ଆପଣ କହିଲେ ମୁଁ ସେ ଫାଇଲଟା ନେଇଯାଇ ତା ଉପରେ ଗୋଟାଏ ବିଶେଷ ନୋଟ୍ ତିଆରି କରି ଆଣିଦେବି ।'

'ହଁ ହଁ, ନିଶ୍ଚୟ । ଦୟାକରି ସେମିତି କରିଦିଅ ।'

କୃପାସିନ୍ଧୁ ଫାଇଲଟିକୁ ତାର ଛୋଟ ଅଫିସ ରୁମକୁ ନେଇ ଯାଇଥିଲା ଓ ଅବସର ବେଳେ ତାକୁ ଭଲ କରି ପଢ଼ିବାରେ ଲାଗିଲା । ବସାରେ ପହଞ୍ଚି ସେ ଦେଖିଲା ଯେ ରାୟସାହେବଙ୍କଠାରୁ ଗୋଟାଏ ଚିଠି ଆସିଛି ।

ରାୟସାହେବ ପୁରୀକୁ ବଦଳି ହେଇଯିବାର ପ୍ରାୟ ବର୍ଷେ ହୋଇଗଲାଣି । ସେ ସେଠାରେ ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ଥିଲେ । ଅଳ୍ପ କିଛି ଦିନ ଛୁଟି ନେଇ ସେ କଟକରେ ନିଜ ବେପାର ବୁଝିବାକୁ ଆସିଥିଲେ ।

ଫାଇଲଟିକୁ ଧରି କୃପାସିନ୍ଧୁ ସିଧା ତାଙ୍କ ପାଖକୁ ଦୌଡ଼ିଲା । ସାଧାରଣ ସୌଜନ୍ୟ ପରେ କୃପାସିନ୍ଧୁ ସେ ଫାଇଲଟା ଧରି ଆସିବାର କାରଣ ରାୟସାହେବ ତାକୁ ପଚାରିଲେ ।

"ଏଇଟା ପାନପଡ଼ା ରାଜାଙ୍କ ଫାଇଲ । ତାଙ୍କ କଥା ଆପଣ କିଛି ଜାଣିଛନ୍ତି କି ?"

"ହଁ, ହଁ ସେକଥାର ସମ୍ପୂର୍ଣ୍ଣ ବିବରଣୀ ମୁଁ ଦେଇପାରିବି । ତୁମେ ବି ସେ ବିଷୟରେ ସବିଶେଷ ବୁଝିବା ଉଚିତ ହେବ ବୋଲି ମୁଁ ଭାବୁଛି ।" ରାୟସାହେବ ଉତ୍ତର ଦେଲେ ।

"ଆପଣ କଥାଟି କଣ କୁହନ୍ତୁ ।"

ସେଠାରେ ବୁଢ଼ା ରାଜାଙ୍କର ଦିଜଣ ପୁଅ ଓ ଜଣେ ଝିଅ ଥିଲେ । ଜଣେ ସୁସ୍ଥସବଳ ସ୍ତ୍ରୀ ପରିବାରର ଯତ୍ନ ନେଉଥିଲେ । ପିଲାମାନେ ଆଠ ବର୍ଷର ହେବା ପରେ ସେ ବହୁତ ଛୋଟଝିଅମାନଙ୍କୁ କିଣି ନିଜ ଝିଅ ବଡ଼ ହେବାପରେ ତାଙ୍କ ସହ କୋଡ଼ିଏଟି ଝିଅ ପଠାଉଥିଲେ । ଦୁଇଜଣ ଝିଅ ନିଜ ପୁଅମାନଙ୍କ ପାଇଁ ରଖିଥିଲେ । ଏଇ ଝିଅମାନଙ୍କୁ 'ସାମ୍ନାଫୁଲଦାନୀ ଓ ପଛଫୁଲଦାନୀ' ବୋଲି କୁହାଯାଉଥିଲା । କାରଣ ଫୁଲଦାନୀରୁ ଫୁଲ ବଦଳେଇବା କାମ ସେମାନେ କରୁଥିଲେ । କେବେ ସାମ୍ନାଫୁଲଦାନୀରୁ ତ କେବେ ପଛଘର ଫୁଲଦାନୀରୁ ସେମାନେ ଫୁଲ ବଦଳେଉଥିଲେ । ରାଜାଙ୍କର ଗୋଟାଏ ପୁଅ ମରିଯିବାରୁ ଅନ୍ୟ ପୁଅଟି 'ପଛଫୁଲଦାନୀ'କୁ ନେବ ବୋଲି ଇଚ୍ଛାକଲା । ବୁଢ଼ା ରଜା ମଲାପରେ ପୁଅ ରାଜା ହେଲା ଓ ତାର ବୟସ ମଧ୍ୟ ହୋଇଯାଇଥିଲା । ତାର ଦୁଇଟି ସ୍ତ୍ରୀ ଥିଲେ ଓ ଅନେକଗୁଡ଼ାଏ ରକ୍ଷିତା ବି ଥିଲେ । ପ୍ରତ୍ୟେକ ସ୍ତ୍ରୀ ବେଶ୍ ସଂଖ୍ୟାରେ ଚାକରାଣୀ ସାଥିରେ ଆଣି ଆସି ଥିଲେ । ମାତ୍ର ସେ ନୂଆରଜା କେବଳ ଫୁଲଦାନୀକୁ ଭଲ ପାଉଥିଲେ ।

ନୂଆରାଜାଙ୍କର କେତେଗୁଡାଏ ପିଲା ଥିଲେ । ହେଲେ ସେମାନେ ସମସ୍ତେ ଝିଅ ପିଲା ଥିଲେ । ପୁଅମାନେ ପିଲାବେଳୁ ମରିଯାଉଥିଲେ । ସେ ରଜା ମଲାବେଳକୁ ତାଙ୍କର ଆଦୌ ପୁଅ ନଥିଲେ । ଏବେ ନରସିଂହ ଦେଓ ନାମକ ବୁଢ଼ା ରାଜାଙ୍କର ଜଣେ ସମ୍ପର୍କୀୟ ପଣନାତି ନିଜ ପୁଅ ପାଇଁ ରାଜ୍ୟ ଦାବୀ କରୁଛନ୍ତି । ସେ ଏଇ 'ପଛଫୁଲଦାନୀ' ସହ ଫୁଲ ବିବାହ ବିରୋଧରେ ପ୍ରଚାର କରିଚାଲିଛନ୍ତି ।"

"କଥାଟା କେମିତି ଦଫାରଫା ହେବ, କିଛି ବୁଝାପଡୁନି ।"

"ମୁଁ ବି କିଛି ବୁଝିପାରୁନି । ରୀତିମତ ଗୋଟାଏ ମୋକଦ୍ଦମା ଚାଲିବ ଏବଂ ସବ୍‌ଜଜ୍ ଏ ମକଦ୍ଦମାର ରାୟ ଦେବେ । ଆମେ ଯାଇ ତାଙ୍କୁ ଲାଞ୍ଚ ଦେଲେ ଠିକ୍ ହେବ ।"

"ସେମାନେ କଣ ଆମର ସାହାଯ୍ୟ ଦରକାର କରୁଛନ୍ତି କି ?"

ଆମେ କେବଳ କଲେକ୍ଟରଙ୍କ ମାଧ୍ୟମରେ ଗୋଟାଏ ପାର୍ଟିକୁ ସାହାଯ୍ୟ କରି ପାରିବା । ମାତ୍ର ପ୍ରଥମରୁ ଆମକୁ ଭାବିବାକୁ ପଡ଼ିବ, କେଉଁ ପାର୍ଟିକୁ ଆମେ ସାହାଯ୍ୟ କରିବା ।

କୃପାସିନ୍ଧୁ, ତମେ ଏଯାଏଁ ଗୋଟାଏ କଥା ଶିଖି ପାରିଲନି । ତମ ସାହେବଙ୍କ ପାଖରେ ତମର ଅକୃତଜ୍ଞ ହେବା ଲୋଡ଼ା ନାହିଁ । ଗୋପନରେ ତୁମେ ତାଙ୍କ ବିରୋଧରେ

କାମ କରୁଚ଼ ବୋଲି ଟିକେ ବି ସୁରାକ୍ ତାଙ୍କୁ ଯେମିତି ନ ମିଳେ ।"

"ହଁ, ଅବଶ୍ୟ ସେ କଥା ଠିକ୍ ।"

ଆମେ କାହିଁକି କେଉଁ ପାର୍ଟିକୁ ସାହାଯ୍ୟ କରିବା ବୋଲି ଭାବିବୁ । ସାହେବ ଆଗେ କେଉଁପାର୍ଟିକୁ ସାହାଯ୍ୟ କରିବେ ସେଇ କଥା ଜାଣିବା ଦରକାର । ତାହେଲେ, ଆମେ ବି ସେଇ ପାର୍ଟି ଆଡ଼କୁ ଢ଼ଳିବୁ ।

"ହୁଏତ ବି, ସେ କୌଣସି ପାର୍ଟିକୁ ସାହାଯ୍ୟ କରି ନପାରନ୍ତି ।"

"ଖୋଲା ଖୋଲି ଭାବେ ତ ସେ କେହି ପାର୍ଟିକୁ ସହାୟତା କରିବେ ନି । ମାତ୍ର ସେ ନିଶ୍ଚୟ ଚାହିଁବେ କୌଣସି ଗୋଟାଏ ପାର୍ଟି ଜିତୁ ବୋଲି ।"

"ସେକଥା ତ ଠିକ୍ । ଏବେ ମୋର ଅନୁମାନ କରିବା ଦରକାର ସାହେବ କେଉଁ ପାର୍ଟି ଆଡ଼କୁ ଢ଼ଳୁଛନ୍ତି ।"

"କେଉଁ ଆଡ଼କୁ ସେ ଢ଼ଳିବେ ବୋଲି ତମେ ଭାବୁଚ଼ ?"

ଟିକେ ଚିନ୍ତା କରି କୃପାସିନ୍ଧୁ କହିଲା, "ମୁଁ ଲକ୍ଷ୍ୟ କରିଚ଼ି ସାହେବ ବିବାହ ବିଷୟରେ ଯଥେଷ୍ଟ ନିଷ୍ଠାପର । ଜଣକ ପାଇଁ ଗୋଟାଏ ଓ ଅନ୍ୟ ଜଣକ ପାଇଁ ଭିନ୍ନ ପରମ୍ପରାକୁ  ସେ ବରଦାସ୍ତ କରିବେ ନାହିଁ । ସେମାନେ ଭାବନ୍ତି ଯେ, ସେମାନଙ୍କର ନିଜ ପରମ୍ପରାଟି ଭଲ, ଅନ୍ୟମାନଙ୍କ ପରମ୍ପରା ଭୁଲ ।"

ମୁଁ ଯଦି ସାହେବଙ୍କୁ ବୁଝାଇ ଦେବି ଯେ ଏ ହେଉଚ଼ି ଓଡ଼ିଶାର ପରମ୍ପରା । ସେ କହିବେନି ଯେ ଏଇ ପରମ୍ପରାଟି ଭଲ ବୋଲି । ତାହେଲେ ଭଲ । କିନ୍ତୁ ସେ ଯଦି କହିବେ ଏ ପରମ୍ପରାଟି ଅମାନୁଷିକ, ତେବେ ? ପଛଫୁଲଦାନୀର କାହାଣୀ ଶୁଣି ସେ ଯଦି ଭାବିବେ ଯେ ସେ' ସ୍ତ୍ରୀ ଲୋକଟି ଖରାପ ସ୍ତ୍ରୀଟିଏ ଏବଂ ତାର ସେ ପୁଅ ଜାରଜ, ତେବେ ତାଙ୍କ ମନଟା ଆର ପାର୍ଟି ପ୍ରତି ଢ଼ଳିଯିବ ।"

"ଠିକ୍ କଥା ତ । ଏଇଟା ତ ପ୍ରଥମ ପ୍ରଶ୍ନର ଉତ୍ତର । ନରସିଂହ ଦେଓଙ୍କର ଅନ୍ତୁଆ ହେଲା । ମାତ୍ର ଏବେ ପ୍ରଶ୍ନ ହେଲା ଆମେ ତାଙ୍କୁ କିପରି ସାହାଯ୍ୟ କରିପାରିବା ?"

"ଫାଇଲରେ ନୋଟ ଦେଲାବେଳେ ମୁଁ ପ୍ରସ୍ତାବ ରଖିବି ଯେ ନରସିଂହ ଦେଓ ହେଉଚନ୍ତି ଉଚ଼ିତ୍ ସତ୍ତ୍ୱାଧିକାରୀ । ଆଦୌ ମିଛ ନ କହି ମୁଁ ଏହା କରିପାରିବି । ଏମିତି ଭାବରେ ସାହେବଙ୍କ ମତାମତକୁ ଆମ ସପକ୍ଷରେ ନେବାକୁ ମୁଁ ଚେଷ୍ଟା କରିବି । ତଥାପି ବି, ସାହେବ କଣ ପ୍ରକୃତରେ କରିବେ ନ କରିବେ ସେକଥା ମୁଁ ଜାଣି ପାରୁନି ।

"ମୁଁ ବି ଜାଣିପାରୁନି । ତେବେ ନରସିଂହ ରାଓ କଣ କରିବାକୁ ଚାହାନ୍ତି ,

ଆମେ ଆଗ ତାଙ୍କୁ ସେ କଥା ପଚାରିବା ଠିକ୍ ହେବ । ତାଙ୍କ ଓକିଲ ସହିତ ମୁଁ ମଧ୍ୟ ଯୋଗାଯୋଗ କରିବି । ମୋଠାରୁ ଖବର ନ ପାଇବା ଯାଏ ତୁମେ କିଛି କରି ନ ଥିବ ଯେମିତି ।"

"ଆଉ ଗୋଟାଏ କଥା ବି ମୋର ଜାଣିବାକୁ ଅଛି । ବୁଢ଼ୀ ରାଣୀ ସାହେବା ଜୀବିତ ଅଛନ୍ତି କି ? କେଉଁ ଦାବୀଦାରଙ୍କୁ ସେ ହକ୍‌ଦାର ଭାବୁଛନ୍ତି ?"

"ହଁ ସେ ଜୀବିତ ଅଛନ୍ତି । ସେ ତ ତାଙ୍କ ନିଜ ଅଣନାତି ସପକ୍ଷ ନେବା ସ୍ୱାଭାବିକ । ଏ କଥାଟି ଖୁବ ଜରୁରୀ ନିଶ୍ଚୟ । କିନ୍ତୁ ଦୁଃଖର କଥାଯେ, ଆମକୁ ତାଙ୍କ ବିରୁଦ୍ଧରେ ଯିବାକୁ ହେବ ।"

ସେଦିନ ରାତିରେ ଫାଇଲ କାମ କରୁକରୁ କୃପାସିନ୍ଧୁ ଢେର ଡେ଼ରିଯାଏ ରାତି ଜାଗିଲା ଓ ବଡ଼ି ସକାଳୁ ଉଠି ନୋଟ୍ ଲେଖିଲା । ନୋଟ୍ ଲେଖିବା ବେଳେ କାହାରି ସପକ୍ଷରେ ଲେଖିଲା ନାହିଁ ।

ଅଫିସକୁ ଆସି ଦେଖିଲା ଯେ ସାହେବ ତାଙ୍କ ପଢ଼ାଘରେ ବସିଛନ୍ତି । ମେମ୍‌ସାହିବ ବି ଇଜିଚିଆର ଉପରେ ସେଇଠି ବସିଛନ୍ତି ।

"ନମସ୍କାର ସାର୍, ନମସ୍କାର ମ୍ୟାଡ଼ମ୍ ।"

"ନମସ୍କାର, ଟାଇପବାବୁ ।" ମ୍ୟାଡମ୍ କହିଲେ

"ନମସ୍କାର ବାବୁ । ଆଚ୍ଛା ତମେ ସେ ପାନପଡ଼ା ବିଷୟରେ ନୋଟ୍ ଲେଖି ଆଣିଛ କି ?"

"ହଁ ସାର୍ । ଆଣିଛି । ସବୁକଥା ପରିଷ୍କାର ଭାବେ ଲେଖିଛି ନୋଟ୍‌ରେ ସାର୍ ।"

"ଠିକ୍ ଅଛି । ମୁଁ ସେଇଟାକୁ ପଢ଼ି ଦେଖିବି । ଏବେ ସେ ବିଷୟରେ ଚୁମ୍ବକରେ ଟିକେ କହିଲ ।"

ରାୟସାହେବଙ୍କର କାହାଣୀ ଅନୁସାରେ, କୃପା ଗଣ୍ଡଗୋଳିଆ ରାଜସତ୍ତ୍ୱ କଥା ବର୍ଣ୍ଣନା କଲା । ତାର କଥା ସରିଲା ପରେ ସାହେବ ତାଙ୍କ ମେମ୍‌ଙ୍କୁ କହିଲେ ,

"ଲୁସି, ତମେ ଏ ଘଟଣା ବିଷୟରେ କ'ଣ ମତଦେବ କହିଲ ।"

"ଡିଅର, ଏଇଟା ଗୋଟାଏ ରୋମାଣ୍ଟିକ୍ ଗପ ଭଳି ଲାଗୁଛି ।"

ସାହେବ କହିଲେ, "ଏ ଦେଶଟା ବି ଗୋଟାଏ ଆଶ୍ଚର୍ଯ୍ୟ ଦେଶ ନୁହେଁ କି ?"

"କିନ୍ତୁ ଡାର୍ଲିଙ୍ଗ, ଏଇ ପଛଫୁଲଦାନୀ କଥାଟା ଟିକେ ଭାବିଲ । ତାର କି

କାମ କରୁଚ୍ ବୋଲି ଟିକେ ବି ସୁରାକ୍ ତାଙ୍କୁ ଯେମିତି ନ ମିଳେ ।"

"ହଁ, ଅବଶ୍ୟ ସେ କଥା ଠିକ୍ ।"

ଆମେ କାହିଁକି କେଉଁ ପାର୍ଟିକୁ ସାହାଯ୍ୟ କରିବା ବୋଲି ଭାବିବୁ । ସାହେବ ଆଗେ କେଉଁପାର୍ଟିକୁ ସାହାଯ୍ୟ କରିବେ ସେଇ କଥା ଜାଣିବା ଦରକାର । ତାହେଲେ, ଆମେ ବି ସେଇ ପାର୍ଟି ଆଡ଼କୁ ଢ଼ଳିବୁ ।

"ହୁଏତ ବି, ସେ କୌଣସି ପାର୍ଟିକୁ ସାହାଯ୍ୟ କରି ନପାରନ୍ତି ।"

"ଖୋଲା ଖୋଲି ଭାବେ ତ ସେ କେହି ପାର୍ଟିକୁ ସହାୟତା କରିବେ ନି । ମାତ୍ର ସେ ନିଶ୍ଚୟ ଚହିଁବେ କୌଣସି ଗୋଟାଏ ପାର୍ଟି ଜିତୁ ବୋଲି ।"

"ସେକଥା ତ ଠିକ୍ । ଏବେ ମୋର ଅନୁମାନ କରିବା ଦରକାର ସାହେବ କେଉଁ ପାର୍ଟି ଆଡ଼କୁ ଢ଼ଳୁଛନ୍ତି ।"

"କେଉଁ ଆଡ଼କୁ ସେ ଢ଼ଳିବେ ବୋଲି ତମେ ଭାବୁଚ୍ ?"

ଟିକେ ଚିନ୍ତା କରି କୃପାସିନ୍ଧୁ କହିଲା, "ମୁଁ ଲକ୍ଷ୍ୟ କରିଚି ସାହେବ ବିବାହ ବିଷୟରେ ଯଥେଷ୍ଟ ନିଷ୍ଠାପର । ଜଣକ ପାଇଁ ଗୋଟାଏ ଓ ଅନ୍ୟ ଜଣକ ପାଇଁ ଭିନ୍ନ ପରମ୍ପରାକୁ ସେ ବରଦାସ୍ତ କରିବେ ନାହିଁ । ସେମାନେ ଭାବନ୍ତି ଯେ, ସେମାନଙ୍କର ନିଜ ପରମ୍ପରାଟି ଭଲ, ଅନ୍ୟମାନଙ୍କ ପରମ୍ପରା ଭୁଲ ।"

ମୁଁ ଯଦି ସାହେବଙ୍କୁ ବୁଝାଇ ଦେବି ଯେ ଏ ହେଉଚି ଓଡ଼ିଶାର ପରମ୍ପରା । ସେ କହିବେନି ଯେ ଏଇ ପରମ୍ପରାଟି ଭଲ ବୋଲି । ତାହେଲେ ଭଲ । କିନ୍ତୁ ସେ ଯଦି କହିବେ ଏ ପରମ୍ପରାଟି ଅମାନୁଷିକ, ତେବେ ? ପଛଫୁଲଦାନୀର କାହାଣୀ ଶୁଣି ସେ ଯଦି ଭାବିବେ ଯେ ସେ' ସ୍ତ୍ରୀ ଲୋକଟି ଖରାପ ସ୍ତ୍ରୀଟିଏ ଏବଂ ତାର ସେ ପୁଅ ଜାରଜ, ତେବେ ତାଙ୍କ ମନଟା ଆର ପାର୍ଟି ପ୍ରତି ଢ଼ଳିଯିବ ।"

"ଠିକ୍ କଥା ତ । ଏଇଟା ତ ପ୍ରଥମ ପ୍ରଶ୍ନର ଉତ୍ତର । ନରସିଂହ ଦେଓଙ୍କର ଅଡୁଆ ହେଲା । ମାତ୍ର ଏବେ ପ୍ରଶ୍ନ ହେଲା ଆମେ ତାଙ୍କୁ କିପରି ସାହାଯ୍ୟ କରିପାରିବା ?"

"ଫାଇଲରେ ନୋଟ ଦେଲାବେଳେ ମୁଁ ପ୍ରସ୍ତାବ ରଖିବି ଯେ ନରସିଂହ ଦେଓ ହେଉଚନ୍ତି ଉଚିତ୍ ସତ୍ତ୍ୱାଧିକାରୀ । ଆଦୌ ମିଛ ନ କହି ମୁଁ ଏହା କରିପାରିବି । ଏମିତି ଭାବରେ ସାହେବଙ୍କ ମତାମତକୁ ଆମ ସପକ୍ଷରେ ନେବାକୁ ମୁଁ ଚେଷ୍ଟା କରିବି । ତଥାପି ବି, ସାହେବ କଣ ପ୍ରକୃତରେ କରିବେ ନ କରିବେ ସେକଥା ମୁଁ ଜାଣି ପାରୁନି ।

"ମୁଁ ବି ଜାଣିପାରୁନି । ତେବେ ନରସିଂହ ରାଓ କଣ କରିବାକୁ ଚହାନ୍ତି ,

ଆମେ ଆଗ ତାଙ୍କୁ ସେ କଥା ପଚାରିବା ଠିକ୍ ହେବ । ତାଙ୍କ ଓକିଲ ସହିତ ମୁଁ ମଧ୍ୟ ଯୋଗାଯୋଗ କରିବି । ମୋଠାରୁ ଖବର ନ ପାଇବା ଯାଏ ତୁମେ କିଛି କରି ନ ଥିବ ଯେମିତି ।"

"ଆଉ ଗୋଟାଏ କଥା ବି ମୋର ଜାଣିବାକୁ ଅଛି । ବୁଢ଼ୀ ରାଣୀ ସାହେବା ଜୀବିତ ଅଛନ୍ତି କି ? କେଉଁ ଦାବୀଦାରଙ୍କୁ ସେ ହକ୍‌ଦାର ଭାବୁଛନ୍ତି ?"

"ହଁ ସେ ଜୀବିତ ଅଛନ୍ତି । ସେ ତ ତାଙ୍କ ନିଜ ଅଣନାତି ସପକ୍ଷ ନେବା ସ୍ୱାଭାବିକ । ଏ କଥାଟି ଖୁବ ଜରୁରୀ ନିଶ୍ଚୟ । କିନ୍ତୁ ଦଃଖର କଥାଯେ, ଆମକୁ ତାଙ୍କ ବିରୁଦ୍ଧରେ ଯିବାକୁ ହେବ ।"

ସେଦିନ ରାତିରେ ଫାଇଲ କାମ କରୁକରୁ କୃପାସିନ୍ଧୁ ଢ଼େର ଢ଼େରିଯାଏ ରାତି ଜାଗିଲା ଓ ବଡ଼ି ସକାଳୁ ଉଠି ନୋଟ୍ ଲେଖିଲା । ନୋଟ୍ ଲେଖିବା ବେଳେ କାହାରି ସପକ୍ଷରେ ଲେଖିଲା ନାହିଁ ।

ଅଫିସକୁ ଆସି ଦେଖିଲା ଯେ ସାହେବ ତାଙ୍କ ପଢ଼ାଘରେ ବସିଛନ୍ତି । ମେମ୍‌ସାହିବ ବି ଇଜିଚିଆର ଉପରେ ସେଇଠି ବସିଛନ୍ତି ।

"ନମସ୍କାର ସାର୍, ନମସ୍କାର ମ୍ୟାଡ଼ମ୍ ।"

"ନମସ୍କାର, ଟାଇପବାବୁ ।" ମ୍ୟାଡମ୍ କହିଲେ

"ନମସ୍କାର ବାବୁ । ଆଛା ତମେ ସେ ପାନପଢ଼ା ବିଷୟରେ ନୋଟ୍ ଲେଖି ଆଣିଛ କି ?"

"ହଁ ସାର୍ । ଆଣିଛି । ସବୁକଥା ପରିଷ୍କାର ଭାବେ ଲେଖିଛି ନୋଟ୍‌ରେ ସାର୍ ।"

"ଠିକ୍ ଅଛି । ମୁଁ ସେଇଟାକୁ ପଢ଼ି ଦେଖିବି । ଏବେ ସେ ବିଷୟରେ ଚୁମ୍ବକରେ ଟିକେ କହିଲ ।"

ରାୟସାହେବଙ୍କର କାହାଣୀ ଅନୁସାରେ, କୃପା ଗଣ୍ଡଗୋଳିଆ ରାଜସତ୍ତ୍ୱ କଥା ବର୍ଣ୍ଣନା କଲା । ତାର କଥା ସରିଲା ପରେ ସାହେବ ତାଙ୍କ ମେମ୍‌ଙ୍କୁ କହିଲେ ,

"ଲୁସି, ତମେ ଏ ଘଟଣା ବିଷୟରେ କ'ଣ ମତଦେବ କହିଲ ।"

"ଡିଅର, ଏଇଟା ଗୋଟାଏ ରୋମାଣ୍ଟିକ୍ ଗପ ଭଳି ଲାଗୁଛି ।"

ସାହେବ କହିଲେ, "ଏ ଦେଶଟା ବି ଗୋଟାଏ ଆଶ୍ଚର୍ଯ୍ୟ ଦେଶ ନୁହେଁ କି ?"

"କିନ୍ତୁ ଡାର୍ଲିଙ୍ଗ, ଏଇ ପଛଫୁଲଦାନୀ କଥାଟା ଟିକେ ଭାବିଲ । ତାର କି

ଆଶ୍ଚର୍ଯ୍ୟ ନାମ । ବିଚରା ଛୋଟବେଳୁ ସେ ଘରେ ବଢ଼ିଆସିଲା । ରଜାଙ୍କ ସଂଗେ ଖେଳାବୁଲା କରି ଦିନ କଟାଇଲା । ତାପରେ ବଡ଼ ହୋଇ ରଜା ଦି'ଦିଟା ସ୍ତ୍ରୀ ବାହାହେଲେ । କେତେ ଯେ ରକ୍ଷିତା ଥିବେ, କିଏ ଜାଣେ ସେକଥା । କିନ୍ତୁ ପଦ୍ମଫୁଲଦାନୀ ଛଡ଼ା ଆଉ କାହାକୁ ଭଲ ପାଇଲେ ନାହିଁ ? ସେ ବି ତାଙ୍କୁ କେତେ ଭଲ ପାଉଥିବ । କିନ୍ତୁ, ଏବେ ନିଜ ପୁଅର ହକ୍ ପାଇଁ ସେ ଲଢୁଛି । ସେ ଖୁବ୍ ସାହସିନୀ ଭଳି ମନେ ହେଉଛି ।"

ତଥାପି, ମୁଁ ଭାବୁଛି, ସେ ଆର ଦାବୀଦାର ଜଣକର ହିଁ ପ୍ରକୃତ ହକ୍ ଅଛି ।"

"ନା ସେ ନୁହେଁ, ପଦ୍ମ ଫୁଲଦାନୀର ପୁଅ ହିଁ ହକଦାର ।"

"ସେଇକଥା ନା କଣ ? ତେବେ ଆଇନ୍ ତା ସପକ୍ଷରେ ଯିବ ଯଦି ସିନା ସେ ହକ୍ ପାଇବ ।"

"ଆରେ ଆରେ ! ତମେ ବୁଝୁନ, ସେ ପ୍ରକୃତ ଦାବୀଦାର । ଆଇନ ଯାହା କହିଲେ କହୁଥାଉ । ଆଇନଟା ତ ଗୋଟାଏ ଗଧ ।"

"ଧରାଯାଉ ପଦ୍ମଫୁଲଦାନୀ ରାଜାଙ୍କର ସ୍ତ୍ରୀ ହୋଇ ନଥିବେ, ତେବେ ?"

"ଡିଅର, ତମେ ବୁଝୁନ କାହିଁକି । ସେ'ହିଁ ରାଜାଙ୍କ ପ୍ରକୃତ ସ୍ତ୍ରୀ । ଆହା ସେ ଜିତି ଯାଆନ୍ତା କି ? ତମେ ତାକୁ ଏ ଦିଗରେ କିଛି ସାହାଯ୍ୟ କରୁ ନାହଁ କାହିଁକି ?"

"କଣ କରିବି ବୁଝି ପାରୁନାହିଁ । ସତଟା କଣ, ସରକାରଙ୍କୁ ମୁଁ କେବଳ ତାହା ହିଁ ଜଣାଇବି ଏବଂ ସିଭିଲ୍ କୋର୍ଟରେ ଫଇସଲା ଉପରେ ସବୁ ଛାଡ଼ି ଦେବି । ଅବଶ୍ୟ, ସେମାନେ ଯେମିତି କ୍ଷତିଗ୍ରସ୍ତ ନ ହୁଅନ୍ତି ସେ କଥାର ବ୍ୟବସ୍ଥା କରିବାକୁ ଚେଷ୍ଟା କରିବି ।"

"ସେ ପୁଅଟିର ବୟସ କେତେ ?"

"ମ୍ୟାଡମ୍, ସେ ପିଲାଟା ଅପ୍ରାପ୍ତ ବୟସ୍କ । ପ୍ରାୟ ଦଶ ବର୍ଷର ହେବ ।"

"ଆଛା ଶିଶୁମାନଙ୍କ କୋର୍ଟଅଫ ଓ୍ୱାର୍ଡସ କଥା କୋର୍ଟ କଣ କହୁଛି ? ଏ ବିଷୟରେ ମୁଁ ବହୁତ ଶୁଣିଛି ।"

'ଏ ରାଜ୍ୟର ମାଲିକାନା କୋର୍ଟ ଅଫ ଓ୍ୱାର୍ଡ୍‌କୁ ନେଇ ସେ ଅପ୍ରାପ୍ତ ବୟସ୍କ ପୁଅକୁ ସହାୟତା କରୁନାହାନ୍ତି ।"

ନିଜର ମୁଖଭଂଗୀକୁ ସାଧାରଣ ଭଂଗୀରେ ରଖିବା ଏଥର କୃପାସିନ୍ଧୁର ଆୟତ୍ତ ବାହାରେ ହୋଇଗଲା । ଉଠିପଡ଼ି ସେ ହରିବୋଲ ଧ୍ୱନୀ କରିବାକୁ ଇଛା କରୁଥିଲା କାରଣ ମାଡାମ୍ ତ ସମାଧାନର ସୂତ୍ର ବାହାର କରିଦେଲେ । ଉପର ଠାଉରିଆ ଭାବେ କିଛି ନଜାଣିବା ପରି ସେ ସ୍ଥିର ରହିଲା । ସାହେବ କହିଲେ, ଏକଥା କହିବା ମାନେ

ନିଜ ଉପରକୁ କୁରାଢ଼ୀ ଉଠାଇବା । ଆମେ ଜଣେ ଅପ୍ରାପ୍ତ ବୟସ୍କକୁ ସତ୍ତ୍ୱାଧିକାରୀ ବୋଲି ମାନିପାରିବା ନାହିଁ । ଏକଥାଟାର ଫଇସଲା ଅଦାଲତ କରିବ । ମକଦ୍ଦମା ତ ଢେର ଦିନ ଧରି ଚାଲିବ । ଏପରିକି ସେମାନେ ହାଇକୋର୍ଟକୁ ବି ଯିବେ । ତାପରେ ସମାଧାନ ହେବ ଯେ "ଫୁଲବିବାହ"ର କିଛି ଗୋଟାଏ ଅର୍ଥ ନାହିଁ । ତାପରେ ଆମକୁ ନିନ୍ଦା ହେବ ଯେ ଗୋଟାଏ ଭୁଲ୍ ପାର୍ଟି ସପକ୍ଷରେ ଆମେ ଲେଖିଥିଲୁ ଓ ପ୍ରକୃତ ସତ୍ତ୍ୱାଧିକାରୀଙ୍କୁ ତାଙ୍କ ହକ୍‌ରୁ ବଂଚିତ କରିବା ପାଇଁ ଯାଉଥିଲୁଁ । ଅବଶ୍ୟ ଜଜ୍‌ମାନେ ଯେ ଏସବୁ ଅପଥା କାମ କରିବାକୁ ନାପସନ୍ଦ କରନ୍ତି ନାହିଁ ତା' ନୁହେଁ - କେତେ କେତେ ଖରାପ କାମ ସବୁ ବି ସେମାନେ କରନ୍ତି ।"

"ମାତ୍ର, ଟିକେ ଭାବିଲ, ଏ ପିଲାଟି ତା ବାପର ଘରେ ଜନ୍ମ ହୋଇଚି, ଜୀବନସାରା ବଢ଼ିଛି ଏବଂ ଏବେ କେଉଁ ଦୂରସଂପର୍କୀୟ, ଯାହା କଥା ସେ ଆଦୌ ଜାଣେ ନାହିଁ, ସେ ଏ ରାଜ୍ୟଟିକୁ ତାଠୁଁ ଛଡ଼ାଇ ନେବ । ଏକଥାଟା ଅନ୍ୟାୟ ଓ ଅସୁନ୍ଦର ହେବ ନାହିଁ କି ?" ମେମ୍ ସାହେବ ମନ୍ତବ୍ୟ ଦେଲେ ।

"କଥାଟା ତ ପୂରାପୁରି ଠିକ୍ । ସେ ପିଲାଟିକୁ ରୟତମାନେ ମଧ୍ୟ ଭଲ ଭାବେ ଜାଣିଥିବେ । ମୁଁ ଜୋର୍ ଦେଇ କହିପାରେ ଯେ ସେମାନେ ତାଙ୍କ ଜମିଦାରଙ୍କ ଏ ପିଲାଟିକୁ ସେମାନଙ୍କ ମାଲିକ ବୋଲି ମାନିବେ କିଂତୁ ସେ ଅଜଣା ସତ୍ତ୍ୱାଧିକାରୀକୁ ନୁହେଁ ।" ସାହେବ ଉତ୍ତର ଦେଲେ ।

"ସାର୍, ମୋତେ ଯଦି କିଛି ଅନୁଧ୍ୟାନ କରିବାକୁ କହିବେ ତ ମୁଁ କହିବି ରୟତମାନେ ସେ ପିଲାଟି ଅପେକ୍ଷା ବୁଢ଼ୀରାଣୀଙ୍କୁ ବେଶୀ ସମ୍ମାନ ଦେବେ ଓ ତାଙ୍କ ପକ୍ଷ ନେବେ ।"

"ସେଇଠି ତ ରହିଚି ଅସଲ କଥା । ସେ ଆଉ ଦାବିଦାରଟି ଜମିଦାରୀ ସିରସ୍ତା ଅଧିକାର କରିବାରେ ଅସୁବିଧା ଭୋଗିବ, ଯଦି ରୟତମାନେ ତାକୁ ମାଲିକ ବୋଲି ମାନି ନ ନେବେ । ତେଣୁ ଅଶାନ୍ତି ଗଣ୍ଡଗୋଳର ଆଶଙ୍କା ଯଥେଷ୍ଟ ରହିଛି ।"

"ତମେ ସବୁ ବାଜେ କଥା କହୁଚ । ଗରୀବ ରୟତମାନଙ୍କ କଥା ବି ବିଚାରକୁ ନେବା ଉଚିତ୍ ।" ମ୍ୟାଡମ୍ ଉପଦେଶ ଦେଲେ ।

"ବୁଢ଼ୀରାଣୀଙ୍କ କଥା ମଧ୍ୟ ବିଚାର କରି ଦେଖିବା ଦରକାର । ତାଙ୍କ ସହିତ ଯାଇ ଏ ବିଷୟରେ ମୋତେ କଥାବାର୍ତ୍ତା କରିବାକୁ ପଡ଼ିବ । ଫାଇଲ୍‌ଟାକୁ ଭଲ କରି ପଢ଼ି, ବୁଝି ମୁଁ ଯାହା କରିବି ।"

କୃପା ତା'ର ଛୋଟ ଅଫିସ ରୁମ୍‌କୁ ଗଲା ଏବଂ ଫାଇଲ୍ ବିଷୟରେ ଗଭୀର

ଭାବେ ଚିନ୍ତା କଲା । କଥାଟା ଏକ ଅଭାବିତ ଦିଗକୁ ଗତି କରୁଛି । ରାୟସାହେବଙ୍କୁ ସେ ଯେଉଁକଥା ଦେଇଥିଲା, ତା'ତ ଏବେ କାଏମ୍ ରହିବ ନାହିଁ । ସେମାନେ ଭୁଲ୍ ଦାବିଦାରକୁ ସହାୟତା କରିବାକୁ ଚାହୁଁଛନ୍ତି । ସାହେବ ଅନ୍ୟ ପକ୍ଷକୁ ସହାୟତା କରିବାକୁ ଯାଉଛନ୍ତି । ଏବେ ଆଉ ସମୟ ନଷ୍ଟ କରିବା ଉଚିତ୍ ହେବନି । ଆଶାଶୂନ୍ୟ ଅବସ୍ଥା ଏକ ଉଚିତ୍ ଉପାୟ ଦରକାର କରେ ।

ସେ ଗୋଟାଏ ଛୋଟ ଦରଖାସ୍ତ ଲେଖିଲା- "ସମ୍ମାନନୀୟ ମହାଶୟ । ହଠାତ୍ ମୋତେ ଜ୍ୱର ଧରିଗଲାରୁ ଦେହରେ ଭୀଷଣ ଯନ୍ତ୍ରଣା ହେଉଛି । ଏଣୁ ମୁଁ ଆପଣଙ୍କୁ ବିନୀତ ଅନୁରୋଧ କରୁଛି କି ଆଜି ଦିନକ ମୋତେ ଛୁଟୀ ମଂଜୁର ହେଉ ।

ଆପଣଙ୍କର ବଂଶବଦ କୃପାସିନ୍ଧୁ ।"

ଜରୁଆ ରୋଗୀଟିଏ ପରି ସେ ଚାଦର ଘୋଡ଼ି ହୋଇପଡ଼ିଲା । ମୁହଁରେ ଯନ୍ତ୍ରଣାର ଭାବ ଫୁଟାଇ ଜ୍ୱର ବାହାନାରେ ସେ ସାହେବଙ୍କ ପାଖକୁ ଦରଖାସ୍ତ ଦେବାକୁ କୁନ୍ଥେଇ କୁନ୍ଥେଇ ହୋଇଗଲା । ଦରଖାସ୍ତଟି ପଢ଼ି ସାହେବ ତାଙ୍କ ସ୍ତ୍ରୀଙ୍କୁ ଦେଲେ ।

ମ୍ୟାଡାମ୍ ଚେଆରରୁ ଡେଇଁପଡ଼ି କହିଲେ, "ଯାଏଁ, ମୁଁ ତାଙ୍କ ଦେହର ଉତ୍ତାପଟି ମାପିଦିଏଁ । ତମେ ମିନିଟିଏ ଅପେକ୍ଷା କର। ମୁଁ ଥର୍ମାମିଟରଟି ନେଇ ଆସେଁ ।"

କୃପା ତରତର ହୋଇ କହିଲା, "ମ୍ୟାଡାମ୍, ଆପଣ ଜମା ବ୍ୟସ୍ତ ହୁଅନ୍ତୁ ନାହିଁ। ମୁଁ ଏବେ ବସାକୁ ଯିବି । ମୋର ପ୍ରିୟତମା ସ୍ତ୍ରୀର ଆଦର ଓ ଯତ୍ନରେ କାଲିସୁଦ୍ଧା ଠିକ୍ ହୋଇଯିବି ।"

"ସାହେବ କହିଲେ, "ଆଛା, ଆଜି ତୁମେ ଯାଅ, ଆଶାକରେ ତମେ ଶୀଘ୍ର ଭଲ ହୋଇଯିବ ।"

କୃପାସିନ୍ଧୁ ସିନା ଅଫିସରୁ ପଳେଇ ଆସିଲା, ହେଲେ ସିଧା ଘରକୁ ଆସିଲାନି କି ତା ସ୍ତ୍ରୀର ସେବା ଯତ୍ନରେ ରହିଲା ନାହିଁ । ସେ ସିଧା ରାୟସାହେବଙ୍କ ଘରକୁ ଚାଲିଲା ।

ରାୟସାହେବ କହିଲେ, "ତମେ ଠିକ୍ ସମୟରେ ଆସି ପହଞ୍ଚିଯାଇଛ। କିଛି କହିବାର ଅଛି ତ ଶୀଘ୍ର କୁହ। ମୁଁ ଏବେ କାର୍‌ରେ ପୁରୀ ଯିବି। ଦଶମିନିଟ୍ ଭିତରେ ବାହାରିବି।"

"ଆପଣ ମୋ କଥା ଶୁଣି ସାରିଲେ ହିଁ ଯିବେ । ଆମର ସମସ୍ତ ଯୋଜନା ଓଲଟ ପାଲଟ ହୋଇଗଲା ।"

"ଏତେ ବ୍ୟସ୍ତ ନହୋଇ ଧୀରସ୍ଥିର ଭାବରେ ବସି ସବୁ କଥା କୁହ । କ'ଣ ହୋଇଛି ?"

"ଆମେ ତ ଭୁଲ୍ ଯୋଜନା ପଛରେ ଧାଇଁଛେ ।"

"ସାହେବ ସେ ପିଲାକୁ ସାହାଯ୍ୟ କରିବାକୁ ଚାହାଁନ୍ତି ?"

"ନା, ମେମ୍‌ସାହେବ କିଂତୁ ଚାହାଁନ୍ତି ।"

"ତେବେ, ଆମେ ବି ସେୟା କରିବୁ । ହେ ଅଡର୍ଲି । ସେ ବଦ୍‌ମାସ ଅଡ୍‌ର୍ଲିଟି କୁଆଡେ ଗଲା ଯେ ।"

ଅର୍ଡଲିଟି ଡରି ଡରି ଆସି ପହଞ୍ଚିଲା ।

"ସେ ଚିଠିଟା କେଉଁଠି ଅଛି ଖୋଜି ଆଣ ।"

"ସେଇ କଥାଟି ମୁଁ କହିବାକୁ ଚାହୁଁଛି ସାର୍ । ଚିଠିଟି ଏବେ ମୁଁ ନେଇକରି ଯାଉଛି ସାର୍ ।"

ଅର୍ଦ୍ଦଳୀଟି ଏମିତି କହିଲା ବେଳେ ରାୟସାହେବ ତାକୁ ହମ୍ଭାଳିଲା ଭଳି ସ୍ୱରରେ କହିଲେ, "ମୋତେ ସେ ଚିଠିଟି ଦେଇଯାଅ ?"

ସଂଗେ ସଂଗେ ଚିଠିଟିକୁ ନେଇ ଚିରିଦେଇ ରାୟସାହେବ ଆଶ୍ୱସ୍ତ ହେଲେ, "ଏ ଚିଠିଟିକୁ ନରସିଂହ ଦେଓଙ୍କ ଓକିଲଙ୍କ ପାଖକୁ ପଠାଉଥିଲି ।"

"ମେମ୍ ସାହେବ ତ ପୂରାପୂରି ପିଲାଟିର ସପକ୍ଷରେ ଅଛନ୍ତି । ତେଣୁ ସେ ସାହେବଙ୍କୁ ତା ସପକ୍ଷରେ ନିଶ୍ଚୟ ମତାଇବେ । ଭବିତବ୍ୟଟି ଜଳ ଜଳ କରି ମୋତେ ଦେଖାଯାଉଛି ।"

"ସ୍ତ୍ରୀ ଲୋକଙ୍କ ଚରିତ୍ର ବିଷୟରେ କିଛି କହିହେବ ନାହିଁ । ଆମେ ଯଦି ଆମ ଦେଶୀ ସ୍ତ୍ରୀମାନଙ୍କର ମନ ବୁଝିପାରୁ ନାହୁଁ ଗୋରା ସ୍ତ୍ରୀଲୋକଙ୍କ ମନ କଥା କିପରି ବୁଝିପାରିବୁ ।"

"ବର୍ତ୍ତମାନ ତମକୁ କ'ଣ କରିବାକୁ ହେବ ଜାଣିଛ ? ଆମେ ସେ କୋର୍ଟ ଅଫ୍ ୱାର୍ଡସ୍ ଦେଇଥିବା ରାଜ୍ୟକୁ ପାଇବା ପାଇଁ ନିଲାମ ଡାକିବା ।"

"ଠିକ୍ ଅଛି ଯେ, ହେଲେ ଏହା କାର୍ଯ୍ୟକାରୀ କେମିତି ହେବ ?" "ସେ ବୁଢ଼ୀରାଣୀ ଗୋଟାଏ ଦରଖାସ୍ତ କରିବେ । ତାପର କାମ ସବୁ ତମ ସାହେବ କରିବେ ।

"ଇଏ ତ ବଢ଼ିଆ କଥା । ତୁମେ ସେ ବୁଢ଼ୀରାଣୀଙ୍କୁ ସାକ୍ଷାତ୍ କରିବାକୁ ପାନପଡ଼ା ଯାଇପାରିବ ନାହିଁ । ମୁଁ ପୁରୀ ଫେରିଯିବି । ଗୋଟାଏ କିଛି ବ୍ୟବସ୍ଥା ମୁଁ କରିବି ।"

ରାୟସାହେବ ତାଙ୍କର ବଡ଼ପୁଅକୁ ଡାକି କିଛି ନିର୍ଦ୍ଦେଶ ଦେଲେ । ତାପରେ କୃପାସିନ୍ଧୁକୁ "ବିଦାୟ" କହି କାର୍ ଭିତରେ ବସି ଚାଲିଗଲେ ।

# ଚର୍ତୁବିଂଶ ପରିଚ୍ଛେଦ

୧୯୨୩ ମସିହା ଦୁଇଟି ବିଶେଷ ଘଟଣା କୃପା ପାଇଁ ସ୍ମରଣୀୟ । ସେ ବର୍ଷ ଜୁନ୍‌ମାସରେ କୃପାସିନ୍ଧୁର ଝିଅ ଦୟାବାଳାର ବିବାହ ସଂପନ୍ନ ହେଲା । ଅକ୍ଟୋବରରେ ଆଉ ଗୋଟିଏ ନାତି ଜନ୍ମ ନେଲା ।

କୃପାସିନ୍ଧୁ ଚାହୁଁଥିଲା ଯେ ବିବାହ ପରେ ଝିଅ ଆସି ତାରି ପାଖରେ ରହିବ ତାକୁ ଚଉଦବର୍ଷ ନ ପୂରିବାଯାଏ ସେ ସ୍ୱାମୀ ସହିତ ନ ରହୁ । ଦୟାର ସ୍ୱାମୀ ଜଣେ ଡେପୁଟୀ ମାଜିଷ୍ଟ୍ରେଟ୍‌ଙ୍କ ପୁଅ । ଜମିବାଡ଼ି ବି ସେମାନଙ୍କର ବହୁତ ବେଶୀ ଥିଲା । ତାଙ୍କର ସେ ସରକାରୀ ଚାକିରୀଟି ନିଜର ବଂଶ ପ୍ରଭାବ ଓ ସମ୍ମାନ ଥିବାରୁ ତାଙ୍କୁ ମିଳିଥିଲା । ତେଣୁ ତାଙ୍କ ସହ ବନ୍ଧୁତା କୃପାସିନ୍ଧୁର ସାମାଜିକ ସମ୍ମାନ ବଢ଼ାଇ ଦେଇଥିଲା । କୃପା ସେ ବିବାହରେ ଖୁବ୍ ଖୁସି ଥିଲା ।

ନୂଆ ନାତିଟି ଥିଲା ସାଧୁଚରଣର ପ୍ରଥମ ସନ୍ତକ । ପୁତ୍ର ସନ୍ତାନ ହୋଇଥିବାରୁ କୃପାର ଗର୍ବ ଓ ଆନନ୍ଦ ବଢ଼ିଯାଇଥିଲା । ସେଇ ଶିଶୁଟିର ନାମ ଆର୍ତ୍ତବଲ୍ଲଭ ରଖାଗଲା ।

ଏହି ସମୟ ଭିତରେ ପାନପଡ଼ା ଘଟଣାଟି ମଧ୍ୟ ବଢ଼ି ବଢ଼ି ଖୁବ୍ ସନ୍ତୋଷଜନକ ପରିସ୍ଥିତିରେ ପହଞ୍ଚିଯାଇଥିଲା । କୃପା ସେଇ ନାବାଳକର ପକ୍ଷ ନେଇ ଲଢୁଥିବା ଓକିଲକୁ ଗୋପନରେ ଭେଟିଲା। ବୁଢ଼ୀରାଣୀଙ୍କୁ ମତେଇ 'କୋର୍ଟ ଅଫ୍ ୱାର୍ଡ୍'ର ସହାୟତା ନେବାକୁ କହିଲା ଏବଂ ଏଥିପାଇଁ କିଛି ପାଇସା ଖର୍ଚ୍ଚ କରିବାକୁ ପଡ଼ିବ ବୋଲି ମନ୍ତ୍ରଣା ଦେଲା ।

ରାୟସାହେବଙ୍କ ପୁଅ ପାନପଡ଼ା ଯାଇ ବୁଢ଼ୀରାଣୀଙ୍କ ସହ ସାକ୍ଷାତ୍ କଲେ । ପାନପଡ଼ା ପୋଲିସ ଥାନାକୁ ଯାଇ ସେଠାର ଇନ୍‌ସ୍‌ପେକ୍ଟରଙ୍କୁ ମଧ୍ୟ ଦେଖା କଲା ଓ କ'ଣ ସବୁ କରିବାକୁ ପଡ଼ିବ, ସେଇ ନିର୍ଦ୍ଦେଶ ନେଇ ଆସିଲା । ରାୟସାହେବଙ୍କୁ ଦିଲ୍ଲୀର ସବୁ ପୋଲିସଙ୍କର ପ୍ରାଣେ ଡର। କାରଣ, ତାଙ୍କର ବଡ଼ ଅଫିସମାଙ୍କ ସହ ଘନିଷ୍ଠ ଯୋଗାଯୋଗ କଥା ସେମାନଙ୍କୁ ଜଣାଥିଲା । ଆଉ ଗୋଟାଏ ଉଡ଼ା ଖବର ବି ଶୁଣାଯାଉଥିଲା ଯେ ସେ କଟକକୁ ଏସ୍.ପି ହୋଇଆସିପାରନ୍ତି । ତେଣୁ ଏଠାର ଇନ୍‌ସ୍‌ପେକ୍ଟରମାନଙ୍କୁ ସେ ଯାହା କହନ୍ତି ତାହା ଉପରିସ୍ଥ ଅଫିସରଙ୍କ ନିର୍ଦ୍ଦେଶ ପରି ସେମାନେ ପାଳନ କରନ୍ତି ।

ସାକ୍ଷାତ୍ ଓ କଥାବାର୍ତ୍ତା ପରେ ସ୍ଥିର ହେଲା ଯେ ସେ ଦୁଇଜଣ ସ୍ତ୍ରୀ ଲୋକ ପଚାଶହଜାରର ଗୋଟିଏ ବଣ୍ଡ ତିଆରି ପାଇଁ ତତ୍‌କାଳ ୧୦ ହଜାର ଟଙ୍କା ଦେବେ । ତାହା ଦୁଇଶତାଂଶ ସୁଧରେ ଜଣେ ମହାଜନଠାରୁ ଅଣାଯିବ । ଏସବୁ କାମ ପାଇଁ

ସେ ଦଶ ଶତାଂଶ କମିଶନ ନେବ । ଓକିଲ ଜଣେ ସେ ଦୁଇ ସ୍ତ୍ରୀ ଲୋକଙ୍କୁ ବୁଝେଇ ଦେଲା ଯେ ଏହା ହିଁ ସବୁଠାରୁ ସୁବିଧାଜନକ ବ୍ୟାବସ୍ଥା । ରାଜ୍ୟ ଜମିଦାରୀ ଯଦି 'କୋର୍ଟ ଅଫ୍ ୱାର୍ଡ୍ସ' ଅଧୀନରେ ନରହେ, ତେବେ ବଣ୍ଡର ମୂଲ୍ୟ କିଛି ରହିବ ନାହିଁ । ଖାଲି ମହାଜନମାନେ ଟଙ୍କା ଆଦାୟ ଲାଗି ତୋଡ଼ ଦେଖାଇବା ସାର ହେବ । କୃପାସିନ୍ଧୁ ନିଶ୍ଚିତ ଥିଲା ଯେ 'କୋର୍ଟ ଅଫ୍ ୱାର୍ଡ୍ସ' ଇଷ୍ଟେଟର ଭାର ଗ୍ରହଣ କରିବ ।

ଏସବୁ ସରିଲା ପରେ, ସେ ସ୍ତ୍ରୀ ଲୋକ ଦି'ଜଣ 'କୋର୍ଟ ଅଫ୍ ୱାର୍ଡ୍ସ'ର ସହାୟତା ପାଇଁ ଦରଖାସ୍ତ ଦେଲେ । ବୁଢ଼ୀରାଣୀ ନିଜ ତରଫରୁ ଓ 'ପଛଫୁଲ ଦାନୀ' ନିଜ ପୁଅ ତରଫରୁ ଅପିଲ କଲେ । କୃପାର ଉପଦେଶ ଅନୁଯାୟୀ ଠିକ୍ ଛୁଟି ପଡ଼ିବା ପୂର୍ବରୁ କଚେରୀରେ ଅପିଲ ହେଲା । ଅଫିସ ସୁପରିଣ୍ଟେଣ୍ଡେଣ୍ଟ ଘଟଣାର ଗୁରୁତ୍ୱ ବୁଝି ଦରଖାସ୍ତ ନେଇ କିଲଟରୀରେ ପହଞ୍ଚାଇ ଦେଲେ । କଲେକ୍ଟରଙ୍କ ପାଖରେ ଦରଖାସ୍ତ ପହଞ୍ଚିବା ବେଳକୁ ସେ କ୍ଲବ ଗଲେଣି । ଏକୁଟିଆ ମେମ୍‌ସାହେବ ଘରେ ଥିଲେ । ତେଣୁ, ଅଫିସ ସୁପରିଟେଣ୍ଡେଣ୍ଟ ତାଙ୍କୁ ସବୁ ବିବରଣୀ ଭଲ ଭାବେ ବୁଝାଇ ଦେଇ ଅପିଲ ବିଷୟରେ କହିଲେ ଏବଂ ସବୁକିଛି କୃପାସିନ୍ଧୁର ଦାୟିତ୍ୱରେ ଦେଇ ଚାଲିଆସିଲେ । ଡ଼େରି ଯାଏ ବସି କୃପା ତା'ର ଟାଇପ୍ କାମ କରୁଥିଲା ।

ମେମ୍‌ସାହେବ କାର୍ ଚଳେଇ କ୍ଲବ ଘରକୁ ଧାଇଁଲେ । ଖେଳସାରି ତାଙ୍କ ସ୍ୱାମୀ ଲୁଗା ବଦଳେଇ ନିଜ ପଢ଼ାଘରକୁ ଆସି ଦେଖିଲେ ଯେ ମେମ୍ ନଥିପତ୍ର ଘାଣ୍ଟୁଛନ୍ତି । ସାହେବଙ୍କୁ ଦେଖିଲା ମାତ୍ରେ ସେ ସେଇ ଦରଖାସ୍ତ ଦୁଇଟି ବିଷୟରେ କହିଲେ । ସେ ମେମ୍‌ସାହେବଙ୍କୁ ବୁଝେଇଲେ 'ଏସବୁ କଥା କ'ଣ କ୍ଲବ ଘରେ କୁହାଯାଏ ପ୍ରିୟତମା ?"

"କଥାଟା କିଂତୁ ଖୁବ୍ ଜରୁରୀ ଥିଲା ତ ।"

"ଜରୁରୀ ବୋଲି ମୁଁ ଜାଣେ । ହେଲେ, କାଳେ କେହି ଶୁଣିବ। ତେଣୁ ସେଭଳି ସ୍ଥାନରେ ଏମିତି କଥା ସବୁ ମୁଁ ଆଲୋଚନା କରିବାକୁ ଚାହେଁ ନାହିଁ ।"

ଘରେ ରାତ୍ରିଭୋଜନ ବେଳେ ମଧ୍ୟ ମେମ୍ ସାହେବ ସେଇ ଅପିଲ ପ୍ରସଂଗ ଉଠାଇଲେ । ସେ ଇଷ୍ଟେଟର ଭାର 'କୋର୍ଟ ଅଫ୍ ୱାର୍ଡ୍ସ'ର ଅଧୀନରେ ରଖିବାକୁ କଲେକ୍ଟରଙ୍କୁ ଅନୁରୋଧ କଲେ ।

ଏ ବିଷୟରେ ଭଲକରି ମୋତେ ଚିନ୍ତା କରିବାକୁ ହେବ । ମାଜିଷ୍ଟ୍ରେଟ୍ ଏକଥା ଗ୍ରହଣ କରିବେ ବୋଲି ନିଶ୍ଚିତ ହେବା ପରେ ଯାଇ ମୁଁ ଏହା ସପକ୍ଷରେ ସୁପାରିଶ କରିବି ।

"ଧର ସେମାନେ ରାଜି ହେବେନି ତେବେ ? ତୁମେ ଗୋଟାଏ ଭଲ କାମ କରିଛ ବୋଲି ଅନ୍ତତଃ ଶାନ୍ତି ପାଇବ ତ ।"

"ଲୁସି ଡିଅର, ମୋର ପ୍ରସ୍ତାବ ଯଦି ଖାରଜ ହୋଇଯାଏ ତେବେ ମାଜିଷ୍ଟ୍ରେଟ୍ ମାନେ ମୋତେ ଗୋଟାଏ ଗଧ ଅଫିସର ବୋଲି ଭାବି ନେବେନିତ ତ ? ତେଣୁ ମୋତେ ସତର୍କତାର ସହ ସବୁକିଛି କରିବାକୁ ହେବ । ମୁଁ ଯାହା ଉପରକୁ ପଠେଇବି, ସେ ସବୁ ଯେମିତି ନାକଚ ନହୁଏ ସେ ପ୍ରତି ଦୃଷ୍ଟି ଦେବାକୁ ପଡିବ । ବୁଝିଲ ?"

"ମାଇକ୍ରୁତୀ ନ ହୋଇ ତମେ ମଣିଷଟିଏ ଯଦି ହୋଇଥାଅ ସେଇ ଅସହାୟ ମହିଳା ଦିଓଟିଙ୍କର ନିର୍ମାୟା ପିଲାଟାକୁ ସାହାଯ୍ୟ କରିବ । ଉପର ମାଜିଷ୍ଟ୍ରେଟ୍‌ମାନେ ତାହା ପସନ୍ଦ କରନ୍ତୁ ବା ନ କରନ୍ତୁ ।"

ଏହାପରେ କଲେକ୍ଟର ସାହେବ ସାଧ୍ୟମତେ ସେ ପିଲାଟି ସପକ୍ଷରେ କିଛି କରିବେ ବୋଲି ମେମ୍‌ଙ୍କୁ କଥା ଦେଲେ ।

ସେଦିନ ସକାଳୁ ପାନପଡ଼ା ସବ୍‌ଇନ୍ସପେକ୍ଟରଙ୍କୁ ରାୟସାହେବଙ୍କ ନିର୍ଦ୍ଦେଶ ଅନୁସାରେ ପ୍ରସ୍ତୁତି ଖବର ମିଳିଗଲା । ସେ ଜଣାଇଥିଲେ ଯେ ଜମିଦାରୀର ରୟତମାନେ ସମସ୍ତେ ନାବାଳକଟିର ସପକ୍ଷବାଦୀ । ଏକଥା ସତ । ସେମାନେ କେବେ ବି ନରସିଂହ ଦେଓଙ୍କୁ ସେମାନଙ୍କର ଜମିଦାର ବୋଲି ମାନିବାକୁ ପ୍ରସ୍ତୁତ ନୁହଁନ୍ତି । ଏକଥାରେ ଅବଶ୍ୟ ସାମାନ୍ୟ ଅତିରଞ୍ଜନ ଥିଲା । କିଂତୁ ନରସିଂହ ରାଓ ଜମିଦାରୀର ମାଲିକାନା ହାସଲ କରିବାକୁ ଚେଷ୍ଟା କରନ୍ତି ତ ପାନପଡ଼ାରେ ଶାନ୍ତି ଶୃଙ୍ଖଳା ବ୍ୟାହତ ହେବାର ନିଶ୍ଚିତତା ଥିଲା ; ଏକଥାଟି ବି ଅତିମାତ୍ରାରେ ଅତିରଞ୍ଜନ ।

କଲେକ୍ଟର ଯେତେବେଳେ ଦେଖିଲେ ଯେ ଶାନ୍ତିଶୃଙ୍ଖଳା ବ୍ୟାହତ ହେବାର ଅଛି - ସେ ମକଦ୍ଦମାଟିକୁ ଗୁରୁତ୍ୱପୂର୍ଣ୍ଣ ବୋଲି ଧରିନେଲେ ଏବଂ ତାହାକୁ ଉପରକୁ ନେବାକୁ ଚାହିଁଲେ । ଉପର ମାଜିଷ୍ଟ୍ରେଟ୍‌ମାନେ ମଧ୍ୟ ତାଙ୍କ ସହ ଏକମତ ହୋଇ ଜମିଦାରୀକୁ 'କୋର୍ଟ ଅଫ୍ ୱାର୍ଡ୍' ଅଧୀନରେ ରଖିବାକୁ ମତ ଦେଲେ ।

'କୋର୍ଟ ଅଫ୍ ୱାର୍ଡ୍' ଦ୍ୱାରା ନିଯୁକ୍ତ ମ୍ୟାନେଜର ଯେତେବେଳେ ଜମିଦାରୀ ସିରସ୍ତା ବୁଝୁଥିଲେ ସେତେବେଳେ ଜମିଦାରୀର ଦେଣାଦାର ମାନଙ୍କୁ ସେମାନଙ୍କ ଦାକି ପାଉଣା ପାଇଁ ଦରଖାସ୍ତ କରିବାକୁ ନୋଟିସ୍ ଦେଲେ । ସେତେବେଳେ ମହାଜନ ତା'ର ପଚାଶହଜାର ଟଙ୍କାର ଦାବି ଉପସ୍ଥାପନା କଲା ଏବଂ ତା'ସହିତ ମାସକୁ ଦୁଇଶତାଂଶ ହିସାବରେ ସୁଧ ବି ଦାବି କଲା, ଏହି ଋଣ ଏବଂ ଆହୁରି ଦେତେ ଛୋଟ ବଡ଼ ଋଣ ଅଳ୍ପସୁଧରେ ଧାର କରି ଶୁଝିବାକୁ କୋର୍ଟ ନିର୍ଦ୍ଦେଶ ଦେଲା ।

ଟଙ୍କା ପାଇ ମହାଜନ ତା'ର କମିଶନ ବାବଦକୁ ମୂଳ ଟଙ୍କାର ଦଶଶତାଂଶ କାଟିଦେଇ ବାକି ଟଙ୍କା କୃପାସିନ୍ଧୁକୁ ଫେରାଇ ଦେଲା । କୋର୍ଟ ଅଫ୍ ୱାର୍ଡ୍‌ସର ଡେପୁଟୀ କଲେକ୍ଟର, ଅଫିସ ସୁପରିଟେଣ୍ଡେଣ୍ଟ, ବଡ଼ବାବୁ, ପାନବପଡ଼ାର ସବ୍‌ଇନିସ୍‌ପେକ୍ଟର ଏବଂ ଅନ୍ୟ କେତେକ ନିଜ ନିଜର କମିଶନି ପାଇବା ପରେ କୃପା ଓ ରାୟସାହେବ ପ୍ରତ୍ୟେକ କୋଡ଼ିଏ ହଜାର ଟଙ୍କା ଲେଖେଁ ସେଥିରୁ ଲାଭ ପାଇଲେ ।

ତାପରେ ନିଜେ ନରସିଂହ ଦେଓ ଯାଇ ସବ୍‌ଜଜ୍‌ଙ୍କୁ ଲାଞ୍ଚ ଦେଇ ଆସିଥିଲେ। ମାତ୍ର, ସେ ସ୍ତ୍ରୀଲୋକ ଦି'ଜଣ ଏ ପ୍ରକାର ବ୍ୟବସ୍ଥା ଆଗରୁ କରିସାରିଥିବାରୁ, ସବ୍‌ଜଜ୍ କାହାରି ସପକ୍ଷରେ ଲେଖିଲେ ନାହିଁ। ସେ ଦେଖିଲେ ଯେ ନରସିଂହ ଦେଓ ନିଜେ ଜଣେ ଠକ ଏବଂ ସେ ରାଜପରିବାର ସହିତ ଆଦୌ ସଂପର୍କିତ ନୁହଁନ୍ତି। ତେଣୁ ଜମିଦାରୀ ପାଇବା ତାଙ୍କର ହକ୍ ଅଧିକାର ନୁହେଁ। ଆହୁରି ମଧ୍ୟ ସେ ମତ ଦେଲେ ଯେ ଫୁଲବିବାହର ଯଥାର୍ଥତା ନାହିଁ। ତେଣୁ ତତ୍‌ଜନ୍ମିତ ଶିଶୁଟି ସମ୍ପତ୍ତି ପାଇବାକୁ ହକ୍‌ଦାର ନୁହେଁ।

ଏହି ଫଇସଲା ହେବା ପରେ ନରସିଂହ ଦେଓ ଦେଖିଲେ ଯେ ତାଙ୍କର ଚଞ୍ଚକତା ଧରାପଡ଼ିଯାଇଛି । ତେଣୁ ସେ କୁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲେ । ତାଙ୍କ ଦେଖା ଆଉ ମିଳିଲା ନି । ନାବାଳକଟିର ସପକ୍ଷରେ କଲେକ୍ଟର ଗୋଟିଏ ହାଇକୋର୍ଟ ଅପିଲ ହେଉ ବୋଲି ଚାହିଁଲେ । 'ଫୁଲବିବାହ'ର ଯଥାର୍ଥତା ପ୍ରତିପାଦିତ କରି ହାଇକୋର୍ଟ ତା'ର ଫଇସଲା ଦେଲା । ନାବାଳକଟି ଏଥର ସମ୍ପତ୍ତିର ମାଲିକାନା ପାଇଲା ।

ହାଇକୋର୍ଟର ଫଇସଲା ଶୁଣି କଲେକ୍ଟର ଖୁସିଟାଏ ହୋଇଗଲେ । ସେ ଯାହା କରିବାକୁ ଚାହୁଁଥିଲେ ତାହା ହିଁ ହେଲା । ତାଙ୍କ ମନର ଅଶ୍ୱସ୍ତି ଭାବଟି କଟିଗଲା । ତଥାପି, ସେ ଏଥିପାଇଁ କୃପାକୁ ଧନ୍ୟବାଦ ଦେଲେ । କାରଣ ତାରି ପାଇଁ ହିଁ ଏସବୁ କିଛି ସମ୍ଭବ ହୋଇପାରିଲା ।

ଏସବୁ ମୋକଦ୍ଦମା ବହୁଦିନ ଧରି ଚାଲିଲା ।

ଏଥର ୧୯୨୩ ମସିହାକୁ ଫେରିବାକୁ ହେବ ।

ଦୟାବାଳାର ବାହାଘର ପରେ କୃପାସିନ୍ଧୁ ତା'ର ଅନ୍ୟ ଝିଅ କୃପାବାଳାର ବାହାଘର ପାଇଁ ବର ଖୋଜିଲା । ଶେଷରେ ଜଣେ ବଡ଼ବାବୁଙ୍କ ପୁଅକୁ ଠିକ୍ କଲା । ତହିଁ ପର ବର୍ଷ ଖରାଛୁଟିରେ ଗୋଟାଏ ଶୁଭଦିନ ଦେଖି ବାହାଘର ସ୍ଥିରୀକୃତ ହେଲା । ଏ ସମ୍ବନ୍ଧଟି ଭଲ ହେବ ବୋଲି କୃପା ଭାବିଥିଲା । ଅନ୍ୟ କିରାଣୀମାନେ ତାକୁ ଜଣେ ଇନିସ୍‌ପେକ୍ଟର ଭାବେ ଜାଣିଥିଲେ ଓ ସମ୍ମାନ ଦେଉଥିଲେ । ସେ ଆଗରୁ ଭାବିଥିଲା ଯେ, ଜଣେ କେହି ଅଫିସର ବଂଧୁଥିଲେ ତାର ଦରକାରରେ ଆସିବ ।

ଏହି ସମୟରେ ଅସହଯୋଗ ପାଳା ବି ଚାଲିଥିଲା । ଲୋକମାନେ ଏଥିଯୋଗୁଁ କ୍ଳାନ୍ତ ଓ ବିରକ୍ତ ହୋଇ ଉଠିଥିଲେ । ମଝିରେ ମଝିରେ ଅସହଯୋଗର ସ୍ଥିତି ଦୁର୍ବଳ ହୋଇପଡୁଥିଲା ତ ସେତେବେଳେ ଅସହଯୋଗୀମାନେ ଆନ୍ଦୋଳନକୁ ବଂଚାଇ ରଖିବାକୁ ପ୍ରାଣପଣେ ଉଦ୍ୟମ ଜାରି ରଖିଥିଲେ। ଅନ୍ୟ ଓଡ଼ିଆମାନଙ୍କ ପରି କୃପାସିନ୍ଧୁ ଅସହଯୋଗକୁ ଗୋଟାଏ ଅସମାହିତ ବାଜେ କଥା ବୋଲି ଭାବୁଥିଲା । ଅସହଯୋଗ ବିଷୟରେ ଏଣୁତେଣୁ କିଛି ତାର କାନରେ ପଡ଼ିଲେ, ସେ ସେକଥାକୁ ଅଣଶୁଣା କରୁଥିଲା । ଏଇସବୁ ତା'ର ଅଶାନ୍ତିର ମୂଳକାରଣ ବୋଲି ସେ ଧରି ନେଉଥିଲା । ଅସହଯୋଗ ଆନ୍ଦୋଳନ ଏକ ବନ୍ଧୁତ୍ୱହୀନ ପରିବେଶ ସୃଷ୍ଟି କରି ଅବିଶ୍ୱାସ ଏବଂ ବୈରପୂର୍ଣ୍ଣ ପରିବେଶ ସୃଷ୍ଟି କରୁନ୍ତି ବୋଲି ତାର ଧାରଣା ଥିଲା । ବରଂ ଏଥିପୂର୍ବରୁ ସମାଜରେ ସଦ୍‌ଭାବ ଓ ବିଶ୍ୱାସନୀୟ ବାତାବରଣ ବିରାଜମାନ କରୁଥିଲା । ୧୯୨୪ ମସିହାର ପ୍ରାରମ୍ଭରେ ସେ ଭାବୁଥିଲା ଯେ ଏହି ଅକାମୀ ବାତାବରଣ ଦୂର ହେବ । ତାର ବଂଧୁମାନେ ମଧ୍ୟ ଏକାପ୍ରକାରେ ଚିନ୍ତା କରୁଥିଲେ ।

ଫେବୃୟାରୀ ମାସ । ଦିନେ କୃପା ତା'ର ବସାରୁ କଲେକ୍ଟରଙ୍କ ଘରକୁ ଗଲାବେଳେ ବାଟରେ ଅସହଯୋଗ କଥା ଭାବି ଭାବି ଯାଉଥାଏ । ଗୋଟାଏ ଗାନ୍ଧୀଟୋପିବାଲାକୁ ସେ ବାଟରେ ଭେଟିଲା । ଲୋକଟି ତାକୁ ପଚାରିଲା ସେ ଖବରଟି ଜାଣିଛ କିନାହିଁ ।

କୃପା ତାଙ୍କୁ କି ଖବର ବୋଲି ପଚାରିଲା । ଲୋକଟି ଉତ୍ତର ଦେଲା, "ମହାତ୍ମା ଗାନ୍ଧୀ ଜେଲ୍‌ରୁ ଖଲାସ ହୋଇଗଲେ ।" ମନଖୁସିରେ କୃପା ତା' ବାଟେ ବାଟେ ଚାଲିଗଲା । କଲେକ୍ଟରଙ୍କ ବସାରେ ପହଞ୍ଚି ତାଙ୍କୁ ସେ "ଗୁଡ୍‌ମର୍ଣ୍ଣିଂ" କହି ଅଭିବାଦନ କଲା । ସାହେବ ତାକୁ ପ୍ରତି ନମସ୍କାର କହିଲେ ନାହିଁ । ବରଂ ପଚାରିଲେ, "ତୁମେ ଖବରଟି ଶୁଣିଛ କି ନାହିଁ ?"

କୃପା ଉତ୍ତର ଦେଲା, "ଆଜ୍ଞା ଶୁଣିଛି । ଗାନ୍ଧୀ ଜେଲ୍‌ରୁ ମୁକୁଳିଗଲେ । ବହୁଦିନ ଧରି ଶୁଣୁଥିବା ଖବର ଭିତରୁ ଏହା ଏକ ଶ୍ରେଷ୍ଠତର ଖବର ।"

- "ତୁମେ ଏ କି' କଥା କହୁଛ ?" ସାହେବ ଚିହିଁକି ଉଠି କହିଲେ ।

- "ସାର୍, ଏମିତି ଅଯଥା କଥା ସବୁତ ଶୁଣାଯାଉଛି । ମାତ୍ର ଭଗବାନଙ୍କ ଦୟାରୁ ଆମେ ସମସ୍ତେ ବଂଧୁ ।"

- "କଥାଟିକୁ ତୁମେ ଏଇ ବାଟେ ନେଇ ଯାଉଛ କି ?"

- "ସାର୍, ଆମେ ଓଡ଼ିଆମାନେ ସରକାରଙ୍କ ବିରୁଦ୍ଧରେ ଯିବୁନାହିଁ।

ଇଂରେଜମାନେ ଆମର ବଂଧୁ। ସେମାନେ ଆମକୁ ମରହଟ୍ଟା ଅମଳର ନିର୍ଯ୍ୟାତନାରୁ ରକ୍ଷା କରିଛନ୍ତି। ତେଣୁ ସରକାର ଓ ଜନତାଙ୍କ ଭିତରେ କନ୍ଦଳ ଆମ ଓଡ଼ିଆମାନଙ୍କୁ ଆଦୌ ଭଲ ଲାଗେ ନାହିଁ ଏବଂ ଠାକୁରଙ୍କ କରୁଣାରୁ ତାହାର ଅନ୍ତ ଘଟିଛି ।"

"ତା'ମାନେ, ତୁମେ କହୁଚ୍ଚ ଯେ ଜେଲ୍‌ରୁ ମୁକୁଳି ମହାତ୍ମା ଗାନ୍ଧୀ ଆଉ ଆନ୍ଦୋଳନର ପନ୍ଥା ଧରିବେ ନାହିଁ ?"

"ନାଇଁ ସାର୍, ଏହାର ଅନ୍ତ ହୋଇଯାଇଛି ।"

"ଠିକ୍ ଅଛି । ଯଦି ତୁମେ ଏ ଦିଗରେ ଭାବୁଚ୍ଚ ତ ମୁଁ ଆଶା କରିବି ଯେ ତୁମ ଦେଶର ସମସ୍ତେ ଏଇଭଳି ଚିନ୍ତା କରନ୍ତୁ ବୋଲି ।

ସେଇ ବର୍ଷ ମାର୍ଚ୍ଚ ମାସ ପୋଲିସ ସୁପରିଟେଣ୍ଡେଣ୍ଟ ଉଇନ୍‌ଷ୍ଟନ୍ ସାହେବ ଛୁଟିରେ ଗଲେ । ରାୟସାହେବ ପୁରୀରୁ ତାଙ୍କ ସ୍ଥାନକୁ ବଦଳି ହୋଇଆସିଲେ । ବର୍ତ୍ତମାନ ତାଙ୍କ ପାଖରେ ଦୁଇଟିଯାକ ଜିଲ୍ଲାର ନଥିପତ୍ରର ବ୍ୟକ୍ତିଗତ ନକଲ ସବୁ ଥିଲା । ଆଗରୁ ଗୋଟିଏ ଜିଲ୍ଲାର ବଡ଼ ବଡ଼ ଧନୀ ଲୋକଙ୍କ ପକ୍ଷ ନେଇ ସେମାନଙ୍କୁ ସାହାଯ୍ୟ କରିବାକୁ କୃପାସିନ୍ଧୁ ଓ ରାୟସାହେବ ଫୋନ୍ କଥାବାର୍ତ୍ତା ଦ୍ୱାରା  ଯୋଜନା କରିଥିଲେ।

ଦି'ମାସ ପରେ କୃପାବାଳାର ବିବାହ ହେଲା । ଆଗଠାରୁ ଏଥର କୃପା ବେଶୀ ବ୍ୟସ୍ତ ହୋଇଉଠିଲା । ତାର ଦୁଇ କନ୍ୟା କିପରି ଭଲରେ  ଭଲରେ ଶ୍ୱଶୂରଘରକୁ ଯିବେ । ତାପରେ ସେମାନେ ଦିହେଁ ଝିଅମାନଙ୍କୁ ବିଦାୟ କରିସାରି ଘରେ ଏକା ହୋଇ ପଡ଼ିବେ ।

ସେଇ ବର୍ଷ କୃପାସିନ୍ଧୁ ତାର ଦୁଇପୁଅଙ୍କୁ ନବୀଶ ରୂପେ ବାଲେଶ୍ୱର କଲେକ୍ଟର ଅଫିସରେ ଢୁକେଇ ଦେଲା ।

ଯେତେବେଳେ ଅସହଯୋଗ ଆନ୍ଦୋଳନ ସତକୁ ସତ ବଂଦ ହୋଇଗଲା କଲେକ୍ଟର ବିଗତ ପାଞ୍ଚବର୍ଷର ଘଟଣାର ପୁର୍ନନିରୀକ୍ଷଣ କଲେ । କିଏ ପ୍ରକୃତରେ ବିଶ୍ୱସ୍ତ ଏବଂ ଚାକିରୀରେ ଉନ୍ନୀତ ହେବାର ଯୋଗ୍ୟ କି ନୁହେଁ ତାହା ଯାଞ୍ଚ କରିବା ତାଙ୍କର ଉଦ୍ଦେଶ୍ୟ ଥିଲା । ସେ ଦେଖିଲେ ଯେ କୃପାସିନ୍ଧୁର ଚାକିରୀର ରେକର୍ଡ ଅସାଧାରଣ ଓ ଅନନ୍ୟ । ସେ ବୋଟ୍ ଚଳେଇ ସରକାରଙ୍କୁ ଅସହଯୋଗୀଙ୍କ କବଳରୁ ରକ୍ଷା କରିଥିଲା। ସ୍କୁଲ ପିଲାଙ୍କ ମୁଣ୍ଡରେ ଦେଶସେବାର ବିଷ ପୂରାଉ ଥିବା ହେଡ୍‌ମାଷ୍ଟରଙ୍କୁ ଧରାପକେଇ ଦେଇଥିଲା । ମହାତ୍ମା ଗାନ୍ଧୀ ଗିରଫ ହେବାର ଖବର ସର୍ବପ୍ରଥମେ ସେ ହିଁ ଆଣି ଦେଇଥିଲା। ଏମିତି  ସବୁ ଘଟଣାର ସଠିକ୍ ଖବର ଏବଂ ଲୋକମତ ସଂଗ୍ରହ କରି ଆଣି ସରକାରଙ୍କ ଠରେ ପହଞ୍ଚାଇ ଶାସନରେ ସହଯୋଗ

କରିଥିଲା କୃପାସିନ୍ଧୁ। ତାର ସବୁଠୁଁ ବଡ଼ କୃତିତ୍ୱ ହେଲା ଯେ, କୃପାର ବ୍ୟକ୍ତିଗତ ପ୍ରଭାବରୁ ସେ ଅଞ୍ଚଳର ଲୋକେ ଦଂଗା ହେଙ୍ଗାମା ଠାରୁ ଦୂରେଇ ରହିଥିଲେ। ତା' ଯୋଗୁଁ ତା'ର ଗାଁ ଓ ଆଖପାଖର ବିଦ୍ରୋହୀମାନେ ମୁହଁ ସୁଦ୍ଧା ଖୋଲିବାକୁ ସାହାସ କରୁନଥିଲେ।

ତେଣୁ, କୃପାସିନ୍ଧୁକୁ ରାୟସାହେବ ଉପାଧୀରେ ଭୂଷିତ କରାହେଲା । ତାସହିତ ତା'ର ବନ୍ଧୁ ଓ ସମ୍ପର୍କୀୟ ଗୋପାଳକୃଷ୍ଣ ମହାନ୍ତିଙ୍କୁ ମଧ୍ୟ ରାୟସାହେବ ପଦବୀରୁ ରାୟବାହାଦୂର ପଦବୀକୁ ଉନ୍ନୀତ କରାଗଲା ।

ବଡ଼ଦିନର କିଛି ପୂର୍ବରୁ ସାହେବ କୃପାକୁ ଡକେଇ ପଠେଇଲେ ।

"ରାୟସାହେବ, ମୋର ତମକୁ କିଛି ଜରୁରୀ କଥା କହିବାର ଥିଲା । ଏବେ ତମେ ତ ରାୟସାହେବ ଏବଂ ଷ୍ଟେନୋଟାଇପିଷ୍ଟ ଆସନରୁ ଯଥେଷ୍ଟ ଉଚ୍ଚପଦବୀରେ ଅଛ । କେତେକ ଜୁନିଅର ଟାଇପିଷ୍ଟ ମଧ୍ୟ ସର୍ଟହ୍ୟାଣ୍ଡ ଜାଣିଛନ୍ତି । ତମେ ଯଦି ଆଉ ବେଶୀଦିନ ଏ ଚାକିରୀରେ ମୁକରିର ରହିବ ତ ଆଗକୁ ଯିବାକୁ ଆଉ ବାଟ ନାହିଁ। ତେଣୁ, ଆମ ବଡ଼ବାବୁ ଆଉ କିଛିଦିନ ପରେ ଅବସର ନେବେ । ସେତେବେଳେ ତମକୁ ଗୋଟାଏ ବଡ଼ ସୁଯୋଗ ମିଳିବ ତାଙ୍କ ପୋଷ୍ଟରେ ବାହାଲ ହେବାକୁ । ବହୁଦିନ ଧରି ତମେ ଅଫିସ ଛାଡ଼ି ରେସିଡେନ୍ସରେ କାମ କରୁଛ । ଏବେ ତମର ଅଫିସ ଯିବା ଲାଭଜନକ ହେବ । ଆଉ କେହି କିରାଣୀକୁ ତମ ଜାଗାରେ ନେବାକୁ ମୋତେ ନିଶ୍ଚୟ ଭଲ ଲାଗିବ ନାହିଁ । ତେଣୁ, ତମ ଉପରେ ଏ ଦାୟିତ୍ୱର ସମାଧାନ ପାଇଁ ମୁଁ ନିର୍ଭର କରୁଛି । ଯଦି ତମେ ଏଠା କଲେକ୍ଟରିଏଟ୍‌ରେ କାମ କରିବ ତ ବାକି କାଳ ସେଇ ଚାକିରୀରେ ହିଁ ରହିବ । ପୁଲିସ ଅଫିସରେ ଦ୍ୱିତୀୟ କିରାଣୀପଦରେ ମଧ୍ୟ ଅବସ୍ଥାପିତ ହୋଇପାରିବ ଓ ଠିକଣା ସମୟରେ ପ୍ରଥମ ପୋଷ୍ଟକୁ ଫେରିଆସି ବଡ଼ବାବୁ ହୋଇପାରିବ।

ଆଶ୍ଚର୍ଯ୍ୟ ହୋଇ କୃପା ଏସବୁ ଶୁଣିଲା । ଏଥିପାଇଁ ସେ ବିନମ୍ର ଭାବେ କିଛି ସମୟ ମାଗି ନିଜ ସ୍ତ୍ରୀ ସହ ମନ୍ତ୍ରଣା କରି ଯାର ସମାଧାନ କରିବ ବୋଲି ସାହେବଙ୍କୁ କଥା ଦେଲା ।

କଲେକ୍ଟରିଏଟ୍‌ର ଗଣ୍ଡଗୋଳ ଓ ହୋହଲ୍ଲା ଭିତରେ କୃପାକୁ କାମ କରିବାକୁ ମନ ଲାଗୁନଥିଲା । କଲେକ୍ଟରଙ୍କ ବସାରେ ଶାନ୍ତକାନ୍ତ ଆରାମ ଦାୟକ ପରିବେଶ ବେଶ୍ ଭଲଥିଲା । ଦ୍ୱିତୀୟତଃ କୃପାର ବୟସ ମଧ୍ୟ ବଢ଼ିଆସିଥିଲା ଓ ସେ ମୋଟା ହୋଇଯାଇଥିଲା । ଟୁର୍ କରିବାଟା ବନ୍ଦ ହୋଇ ଯାଇଥିବାରୁ ତାକୁ ବିରକ୍ତ ଲାଗୁଥିଲା ।

ଆଉ ଏକ ଭୟ ମଧ୍ୟ ତାକୁ ଘାରୁଥିଲା। ଇଂଲିସ ଅଫିସକୁ ଫେରିବା ପରେ ତାର ମାସିକ ଉପୁରି ଆୟ ମଧ୍ୟ କମିବାର ସମ୍ଭାବନା ଥିଲା । ବଡ଼ବାବୁ ହେଲା

ପରେ ମଧ୍ୟ ତାକୁ ସେ ପୂର୍ବ ସୁଯୋଗ ମିଳିବ କି ନାହିଁ, ସେ ବିଷୟରେ ସେ ସନ୍ଦୀହାନ ଥିଲା । ଆଉରି, ସେ ଭାବିଲା ଯେ ତା'ର ପ୍ରଥମ କର୍ତ୍ତବ୍ୟ ନିଜର ପରିବାର ପ୍ରତି ରହିଛି । ପଇସା ତ ସବୁ କିଛି ନୁହେଁ । ସମ୍ମାନ ଓ ଉପାଧୀ ମଧ୍ୟ ଦରକାର । ଏହାର ମୂଲ୍ୟ ବହୁତ ବେଶୀ ।

ଆଉ ଗୋଟିଏ ଅସୁବିଧା ମଧ୍ୟ ତା'ର ଥିଲା । କଲେକ୍ଟରଙ୍କ କୋଠୀ କଚେରୀ ଠାରୁ ତିନିମାଇଲ୍ ଦୂରରେ ଥିଲା । କୃପାସିନ୍ଧୁ ସେଇ ପୁରୁଣା ଛୋଟ ଘରଟିରେ ରହୁଥିଲା କାରଣ ତା' ଘରଠାରୁ କୋଠୀକୁ ଖୁବ୍ କମ୍ ବାଟ। ଇଂଲିସ୍ ଅଫିସରେ ରହିଲେ ତାକୁ କଚେରୀ ଠାରୁ ପାଖ ଜାଗାରେ ରହିବାକୁ ପଡ଼ିବ । ଯେଉଁ ଘରଟିରେ ଏତେ ସୁଖକର ସମୟମାନ କଟାଇଛି ସେଇ ଶୁଭଘରଟିକୁ ଛାଡ଼ି ଅନ୍ୟତ୍ର ଯିବାକୁ ତା'ର ଇଚ୍ଛା ନଥିଲା ।

ଚାରୁବାଳାର ଉପଦେଶ କୃପାସିନ୍ଧୁର ଏଇ ସବୁ ଦ୍ୱନ୍ଦ୍ୱର ସମାଧାନ କରିଦେଲା । ସେ ତା'ର ସ୍ୱାମୀକୁ ନିଶ୍ଚିତ ଭାବରେ ହେଡ୍‌କିରାଣୀ ରୂପେ ଦେଖିବାକୁ ଚାହୁଁଥିଲା । ତେଣୁ କଲେକ୍ଟରଙ୍କ ଉପଦେଶମାନି କୃପା ଇଂଲିସ ଅଫିସର ଦ୍ୱିତୀୟ କିରାଣୀ ରୂପେ ବଡ଼ଦିନ ପରେ ପରେ ନୂଆବର୍ଷ ପୂର୍ବରୁ କାମ କରିବା ଆରମ୍ଭ କଲା ।

କାଠଯୋଡ଼ି କୂଳରେ ସେ ଗୋଟାଏ ନୂଆବସା ଘର ଖୋଜି ପାଇଲା । ତା'ର ପୂର୍ବ ଛୋଟ ଘରଟିକୁ ମନଦୁଃଖରେ ଛାଡ଼ି ସେ ସେଠିକି ଚାଲିଆସିଲା । ୧୯୨୫ ଜାନୁଆରୀରେ ପ୍ରଥମଦିନ ସେଇ ଘରେ ସେ ଶୋଇବାକୁ ଗଲାବେଳେ ନିଜ ସ୍ତ୍ରୀକୁ କହିଲା, "କାଲି ମୁଁ ମୋର ନୂଆ ସ୍ଥାନରେ ନୂଆ ଦାୟିତ୍ୱରେ କାମ କରିବି । ସେଠି ଥିବ ନୂଆ ଆଶା ଓ ନୂଆ ଆକାଂକ୍ଷା ।"

## ପଞ୍ଚବିଂଶ ପରିଚ୍ଛେଦ

ତହିଁ ପରଦିନ କୃପାସିନ୍ଧୁ ଅଫିସ ବାହାରିବାକୁ ପ୍ରସ୍ତୁତ ହେଲା ବେଳେ ତା'ର ପୂର୍ବସ୍ଥାନରେ ନିଯୁକ୍ତ ଯୁବକିରାଣୀଟି ଗୋଟାଏ ଆଦେଶନାମା ଧରି ଆସି କୃପାକୁ କଲେକ୍ଟର ଅଫିସ ଯାଇ ସେଠାର କାମ ସବୁ ତାକୁ ବୁଝେଇ ଦେବାକୁ ଅନୁରୋଧ କଲା ।

ତିନିମାଇଲ୍ ବାଟ ଚାଲି ଚାଲି ଯାଇ ସାରାଦିନ ସେଠାରେ କାମ କରିବାକୁ ତାର ଇଚ୍ଛା ନଥିଲା । ଜିନିଷପତ୍ର ବୋହିବା ପାଇଁ ଗୋଟାଏ କଉତୁକିଆ ଘୋଡ଼ାଗାଡ଼ିର

ବ୍ୟବସ୍ଥା କଲା । ଏହି ଗାଡ଼ିଟି ଆୟତାକାର କ୍ଷେତ୍ର ପରି । ଏହାର ଚାରିଟି ଚକ ଉପରେ ଗୋଟାଏ ବକ୍ସ ଥିଲା । ଦୁଇଟି ଟଟ୍ଟୁ ଘୋଡ଼ା ସେଇ ଗାଡ଼ିକୁ ଟାଣୁଥିଲେ । ଏହା ଏପରି ଯତ୍ନ ସହକାରେ ପ୍ରସ୍ତୁତ ହୋଇଥିଲା କି ଅଳ୍ପ ଜୋର୍‌ରେ ଚାଲିଲେ ବି ଏହା ଖୁବ୍‌ଜୋର ଶବ୍ଦ ସୃଷ୍ଟି କରିବ । ତିନିମାଇଲ୍ ଗେଣ୍ଡା ପରି ଧୀରେ ଧୀରେ ଯାଇ ମୁଣ୍ଡଫଟା ଧକଡ଼ ଚକଡ଼ ଭିତରେ ଜଣେ ଗୋରାଲୋକ ଆଣ୍ଠେଇ ପଡ଼ିବ । ମାତ୍ର ଏଇ ଅଳ୍ପଶିକ୍ଷିତ ଆଧୁନିକ  ଲୋକମାନଙ୍କର ଶରୀର ଖୁବ୍ ଶକ୍ତ । କୃପାସିନ୍ଧୁ ଓ ତା'ର ସାଂଗ ଏହି ଗାଡ଼ିଟିରୁ ଓହ୍ଲେଇବା ବେଳେ ସେମିତି କିଛି ଅସ୍ୱସ୍ଥ ଜଣାପଡୁନଥିଲେ । ଅଫିସ ଭିତରକୁ ପ୍ରବେଶ କରୁ ନ କରୁଣୁ କୃପାସିନ୍ଧୁ କହିଲା, "ତୁମକୁ କାମ ଦେଖାଇବା ପାଇଁ ସେମିତି ବିଶେଷ କିଛି ନାହିଁ । ଖାଲି କାଗଜପତ୍ର ସବୁ କେଉଁଠି ଅଛି, ସେଗୁଡ଼ିକ ଡ୍ରୟାର ଓ ପିଜନ ହୋଲ୍ ସଜାଡ଼ି ରଖିବ ଯେପରିକି ଯେତେବେଳେ ଯାହା ଖୋଜାପଡ଼ିବ ତାହା ସହଜରେ ମିଳି ଯାଇ ପାରିବ । ଏଠାକୁ ସାକ୍ଷାତକାର ଆସୁଥିବା ଲୋକଙ୍କ ବିଷୟରେ ମୁଁ ତୁମକୁ କିଛି ଶିଖାଇଦେବି । ସେମାନଙ୍କ ସହ କିପରି ବ୍ୟବହାର କରିବ ଶିଖାଇଦେବି ।

"ଆଗରୁ କଲେକ୍ଟର ଦିନକୁ କୋଡ଼ିଏ ଜଣ ଲୋକଙ୍କୁ ସାକ୍ଷାତ୍ ଦେଉଥିଲେ । ସେମାନେ ସମସ୍ତେ କିଛି କିଛି ଟଙ୍କା ପାଉଣା ଦେଉଥିଲେ । କିଂତୁ ଅସହଯୋଗ ଯୋଗୁଁ, ଏବେ ସେମାନଙ୍କ ସଂଖ୍ୟା କମିଯାଇଛି । ମାତ୍ର, ମାସକୁ ଶହେ ଟଙ୍କା ତ ନିଶ୍ଚୟ ତୁମେ ସେମାନଙ୍କ ଠାରୁ ପାଇବ । କିପରି ତାହା ତୁମେ ସେମାନଙ୍କଠୁଁ ପାଇବ ତା ଯଦି  ମୁଁ ତୁମକୁ ବତାଇଦେବି ତ ମୋତ କିଛି ତୁମକୁ କମିଶନ ଦେବାକୁ ପଡ଼ିବ । ଇଂଲିସ ଅଫିସକୁ ଯାଇ ମୁଁ ଏଇ ବକ୍‌ସିସ୍‌ତକ ହରାଇଛି ।"

ଯୁବକିରାଣୀଟି ଉତ୍ତର ଦେଲା, "ବାବୁ, ଛଅମାସ ଯାଏ, ମୁଁ ଯାହା ପାଇବି, ତାର ଅଧା ଆପଣଙ୍କୁ ଦେବି । ମାତ୍ର ମଝିରେ ମଝିରେ ଆପଣ ଆସି ଦେଖିଯାଉଥିବେ ମୁଁ କାମ ଠିକ୍‌ରେ କରୁଛି କି ନାହିଁ ଏବଂ ଟଙ୍କା ଠିକ୍‌ରେ ପାଉଛି କି ନାହିଁ । କାମ କେମିତି କରିବାକୁ ହେବ ସେ ବିଷୟରେ ନିର୍ଦ୍ଦେଶ ଦେବେ । ୬ ମାସ ପରେ ଏ ଅଫିସରୁ ମୁଁ ଯାହା ପାଇବି ସବୁତକ ମୁଁ ରଖିବି ।"

"ଠିକ୍ ଅଛି । ଅବଶ୍ୟ ଅନ୍ୟ ଉପାୟରେ ବି ତମେ ଟଂକା ପାଇବ । ସେ ବାଟ ମୁଁ ବତାଉଛି ଶୁଣ । ସାହେବ କରିବାକୁ ଚାହୁଁନଥିବା କୌଣସି କାମ ତାଙ୍କୁ କରିବାକୁ ତୁମେ ଉସ୍‌କାଇବ ନାହିଁ । ତାହେଲେ, ସେ ସଂଗେ ସଂଗେ ଧରିନେବେ ଯେ ତୁମେ ତାଙ୍କୁ ପ୍ରଭାବିତ କରିବାକୁ ଚାହୁଁଚ । ସେ ପାଇଁ ତୁମେ ଲାଞ୍ଚ ନେଇଚ଼ ବୋଲି ବି ସେ ଭାବିପାରନ୍ତି । ଏ କ୍ଷେତ୍ରରେ ତମେ ପାର୍ଟି ଠାରୁ ଆଦୌ ଟଂକା ନେବ ନାହିଁ ।

ସାହେବ ଯାହା କରିବାକୁ ଚାହୁଁଛନ୍ତି ସେପାଇଁ ବି ତୁମେ ତାଙ୍କୁ ଉସ୍କେଇବ ନାହିଁ । ଏହା ଅନାବଶ୍ୟକ । ଏକ୍ଷେତ୍ରରେ ତୁମେ ଉପୁରି ପାଇବ ଏବଂ ସାହେବଙ୍କୁ ମଧ୍ୟ ତାଙ୍କ ବାଟରେ କାମ କରିବାକୁ ସାହାଯ୍ୟ କରିବ ।

ମାତ୍ର, କେତେବେଳେ ସାହେବ କେଉଁ ବାଟେ କାମଟି କରିବେ ତା' ଯଦି ଅନୁମାନ କରି ଜାଣିପାରିବ ତ ଫଳ ଭଲ ମିଳିବ । ଏକଥା ତୁମେ ତାଙ୍କୁ ସୁପାରିଶ୍ କରିପାର । ସେ ଭାବିବେ ତୁମେ ଖୁବ୍ ଚାଲାକ୍ । ତାଙ୍କ ମତାମତ ସହ ତୁମ ତମ ମେଳି ଯାଉଛି । ତାଙ୍କ ଭାବନା ଓ ତୁମ ଭାବନା ଏକ ହୋଇଯାଉଚ୍ଛି । କିଛି ସୁପାରିଶ୍ କଲା ବେଳେ ଖୁବ୍ ଖୋଲା ଭାବେ କରିବ । କଥାଟିକୁ ବୁଲେଇ ବାଙ୍କେଇ ଆଦୌ କରିବ ନାହିଁ । କାରଣ ତୁମେ ତାକୁ ଉପଦେଶ ଦେଉଛ ବୋଲି ଯଦି ସାହେବ ରାଗନ୍ତି, ତେବେ କ୍ଷତି କ'ଣ ହୋଇଯିବ ସିଧା ସିଧା କହିଲେ । ସେ ବରଂ ତୁମର ସ୍ପଷ୍ଟବାଦିତା ପାଇଁ ତୁମକୁ ପ୍ରଶଂସା କରିବେ । କିନ୍ତୁ ସେ ଯଦି ଭାବିବେ ଯେ ତୁମେ ତାଙ୍କ ମତାମତକୁ ନିୟନ୍ତ୍ରିତ କରିବାକୁ ଚେଷ୍ଟା କରୁଚ୍ଛ, ତ ବଡ଼ ଅନର୍ଥ ହେବ । ତୁମକୁ କେବେ ବି ସେ ବିଶ୍ୱାସ କରିବେ ନାହିଁ ।

ଏବେ ସବୁଠାରୁ ଗୋପନ କଥାଟିଏ କହୁଚ୍ଛି ଶୁଣ । ଉପରି ଆୟ କରିବାର ପ୍ରଧାନ ବାଟ ହେଉଛି ଯେବେ ପଇସା ନେବାକୁ ମନା କରିଦେବ । କାରଣ ଯେତେବେଳେ କାମ କରିନପାରିଲେ  ଟଙ୍କା ନେବିନି କହିବ ତ ଲୋକେ ଭାବିବେ ଯେ ତାଙ୍କର ଦେଉଥିବା ଅର୍ଥ ବେକାର ଯିବ ନାହିଁ । ତୁମେ ତାଙ୍କ କାମଟି ନିଶ୍ଚୟ କରିବ । ତୁମେ ସେତେବେଳେ କାମଟି ନକରିପାରିଲେ ବି ଲୋକେ ତୁମକୁ ଆଦୌ ଦୋଷ ଦେବେ ନାହିଁ । କୃପା ଏମିତି ଭାବେ ତାକୁ ବୁଝେଇଲା ।

"ବାବୁ, ଆପଣଙ୍କ ଠାରେ  ଉପଦେଶ ଲାଗି ମୁଁ ଋଣୀ । ଏଇସବୁ କେଶ୍ ଆସିଲେ, ଲାଭାଂଶରୁ ଦୁହେଁ ଅଧା ଅଧା ବାଣ୍ଟିନେବା ।"

କାଗଜପତ୍ର କିପରି ଠିକଣାଜାଗାରେ ରଖାହେବ ଏବଂ ସାକ୍ଷାତ୍ ପାଇଁ ଆସୁଥିବା ଲୋକଙ୍କର କିପରି ସାକ୍ଷାତ୍ ବ୍ୟବସ୍ଥା କରାଯାଇପାରିବ, ସେହି ସବୁ ଉପକାରୀ ଉପଦେଶ ସବୁ ଦେଇସାରି କୃପା ପୁଣି ସେଇ ଧକଡ଼ଚକଡ଼ ଧଡ଼ଧଡ଼ିଆ ଗାଡ଼ିରେ ବସି କଚେରୀକୁ ଫେରିଲା । ଇଂଲିସ ଅଫିସରେ ଆସି ସେ ଦ୍ୱିତୀୟ କିରାଣୀ ପଦରେ ଯୋଗଦେଲା ।

ସେଠାରେ ସେ ଅନୁଭବ କଲା ଯେ କନିଷ୍ଠ କିରାଣୀମାନଙ୍କର ତା' ପ୍ରତି ଗୋଟାଏ ଅସୂୟା ମନୋଭାବ ରହିଚ୍ଛି । ସେମାନେ ତାକୁ ଜଣେ ମଝି ଦଲାଲ ବୋଲି ଭାବୁଥିଲେ । ସେ ଜଣେ ଡ଼େପୁଟୀ ମାଜିଷ୍ଟ୍ରେଟ୍‌ଙ୍କ ଜୋଇଁ ଓ ହେଡ୍‌କ୍ଲର୍କଙ୍କର ସମୁଦି ।

ତେଣୁ ତା'ର ଆଉ କିଛି ଭୟ ନାହିଁ ।

ଅଫିସ ସାରି ସେଦିନ ସଂଜ ବେଳେ ସେ ରାୟବାହାଦୂରଙ୍କୁ ଦେଖାକରିବାକୁ ଗଲା ।

"ଇଂରାଜୀ ଅଫିସକୁ ଫେରିଆସି ମୁଁ ବେଶୀ ଦରମା ସିନା ପାଉଚି, ହେଲେ ମୋର ଆୟ କମିଯିବାର ଭୟ ରହୁଚି । ମୁଁ ଏବେ ଆଉ କଲେକ୍‌ଟରଙ୍କ ଅଫିସର ଛାୟାରେ ରହିନାହିଁ । ତେଣୁ ଆପଣଙ୍କର କାମରେ ବେଶୀ ମୁଁ ଲାଗିପାରିବି ନାହିଁ । ମୋତେ ଭୁଲି ନଯାଇ ମଝିରେ ମଝିରେ ଯୋଗାଯୋଗ ରଖୁଥିବେ ।" କୃପା ତାଙ୍କୁ ଅନୁରୋଧ କରି କହିଲା ।

"କୃପାବାବୁ, ତୁମେ ମୋତେ ଅବିଶ୍ୱାସୀ ଓ ଅକୃତଜ୍ଞ ବୋଲି ମନେ କରୁନ୍ତ କି ? ମୁଁ ଗୋଟାଏ ମୂର୍ଖ ନୁହେଁ ଯେ ଠିକଣା ଟାଣୁଆ ବାଟଟିଏ ଛାଡ଼ିଦେବି । ତୁମକୁ କେବେ କେବେ ମୁଁ ଡାକି ପଠେଇବି । ସେମିତି ହେଲେ କେହି ବିଶେଷ ଧନୀ ଲୋକଙ୍କୁ ସାହାଯ୍ୟ କରିହେବ ।" ରାୟବାହାଦୂର ତାକୁ ଆଶ୍ୱସ୍ତ କରି କହିଲେ ।

କୃପା ଏଣିକି ଧନୀ ହେବାରେ ଲାଗିଲା- ଜମିଜମା କିଣିଲା । ନିଜର ବେଶ୍ କିଛି ସଂଚୟକୁ ବନ୍ଧକ ଇତ୍ୟାଦି ନେଇ ସୁଧରେ ଲଗେଇଲା । ଅନ୍ୟ କିରାଣୀମାନଙ୍କୁ ସୁଧରେ ଦେଲା । ବ୍ୟାଙ୍କରେ କିଛି ଟଙ୍କା ଫିକ୍ସଡ ଜମା ଆକାରରେ ରଖିଲା ।

ଏବେ ସେ ଗୋଟାଏ ଜମିଦାରୀ କିଣିବାର ମତଲବରେ ରହିଲା । ତାହାହେଲେ, ନିଜର ଅବସର ପରେ ସେ ସମ୍ମାନ ଓ ଆରାମ ସହ ରହିବାର ସୁଯୋଗ ପାଇବ । ସେ ଅନୁଭବ କରୁଥିଲା ଯେ ତାର ଅଣୁରେ ଅଣୁରେ ଗୋଟାଏ ଚାଷୀ ବଂଚିଚି; କିରାଣୀଟିଏ ନୁହେଁ । ତେଣୁ ଜମିଦାରୀ ଖରିଦ କରିବାକୁ ତାର ମନରେ ପ୍ରବଳ ଆଗ୍ରହ ଜନ୍ମିଲା ।

ଥରେ ଥରେ କିରାଣୀର ବିରକ୍ତିକର ଜୀବନ ତାକୁ ଅଶାନ୍ତ କରୁଥିଲା । ବର୍ଷସାରା ସବୁଦିନ ସେଇ ଏକା କାମ । ଚାଷୀଟିଏର ଜୀବନରେ ଏକା କାମ କରିବାରେ ବିରକ୍ତି ଆସେ ନାହିଁ । କାରଣ ଋତୁ ବଦଳିବା ସହ ଚାଷୀର ଜୀବନର ଗତି ବଦଳୁଥାଏ । ନୂଆ ଆଶା ନେଇ ନୂଆ କାମରେ ତା'ର ଆଗ୍ରହ ଜନ୍ମେ । ସାଂଧ୍ୟଭ୍ରମଣ ବେଳେ ସେ ସହରର ଶେଷ ମୁଣ୍ଡକୁ ଯାଏ ଯେଉଁଠାରେ ସବୁଜ ଚାଷ ଜମି ସବୁ ଦେଖାଯାଏ । ସେଠାରେ ଚାଷ କିପରି ହୋଇଚି, ସେ ଅନୁଧାନ କରେ । ଏମିତି ଭାବରେ, କେବେ ସେ ଚାକିରୀରୁ ଅବସର ନେଇ ତାର ଜମିଜମା ପାଖକୁ ଫେରିଯିବ, ସେଇ ଦିନକୁ ଚାହିଁ ବସିଥାଏ ।

# ଷଷ୍ଠବିଂଶ ପରିଚ୍ଛେଦ

ତିନିବର୍ଷ ଧରି କୃପାସିନ୍ଧୁକୁ ଦ୍ୱିତୀୟ କିରାଣୀ ପଦବୀରେ କାମ କରିବାକୁ ପଡ଼ିଲା । ସେ ସମୟରେ ସେ ରୀତିମତ ଉପୁରି ଆୟ କରି ଚାଲିଥାଏ । ସୁବିଧା ସୁଯୋଗ ଆସିବା ମାତ୍ରେ ସେ ଜାଣି ରଖୁଥାଏ ଅଫିସରେ କେଉଁ ବିଭାଗରେ କ'ଣ ସବୁ କାମ ହେଉଛି । ବିଶେଷତଃ ବନ୍ଧୁକ ଲାଇସେନ୍ସ ବିଭାଗରେ କ'ଣ କ'ଣ କାମ ଚାଲିଛି । ସେ ଦେଖିଲା ଯେ ଏ ବିଭାଗରେ ଜଣେ ଅନଭିଜ୍ଞ ଯୁବକିରାଣୀ ମୁକରିର ଅଛି ଯିଏ ତା' ହାତରେ ପଡୁଥିବା ସୁଯୋଗର ପୂରାପୂରି ସଦୁପଯୋଗ କରିପାରୁନାହିଁ । ତେଣୁ କୃପାସିନ୍ଧୁ ସେ କିରାଣୀ ଟୋକାକୁ ଠିକ୍ ନିର୍ଦ୍ଦେଶ ଦ୍ୱାରା ବାଟ ଦେଖାଇ ତା'ର ଉପୁରି ଆୟରୁ ମଧ୍ୟ କିଛି ଭାଗ ନେଲା। ଏଇ ତିନିବର୍ଷ ଭିତରେ ସେ ଦ୍ୱିତୀୟ କିରାଣୀ ଥିବା ବେଳେ ଅଫିସର ମୁଖ୍ୟ କିରାଣୀଙ୍କ ଦେହାନ୍ତ ହେଲା । କୃପାସିନ୍ଧୁ ତାଙ୍କ ସ୍ଥାନରେ ନିଯୁକ୍ତି ପାଇଲା ।

ଏହି ପଦୋନ୍ନତି କେବଳ ଯେ ତା'ର ସମ୍ମାନ ବଢ଼ାଇ ଦେଲା ତା' ନୁହେଁ, ସମାଜରେ ତା'ର ଆସନ ମଧ୍ୟ ଉଚ୍ଚରେ ରହିଲା । ପଇସା ଆୟର ସୁଯୋଗ ଆଉରି ତା'ର ହାତ ନିକଟକୁ ଆସିଲା । ଅଫିସର ପ୍ରତ୍ୟେକ ବିଭାଗର କାମ ବିଷୟରେ ସେ ଅଭିଜ୍ଞ ହୋଇଉଠିଲା । କେଉଁ ବିଭାଗରୁ ବେଶୀ ଉପୁରି ଆୟ କରିହେବ ସେକଥା ଅନୁଧାନ କରିବୁଝିଲା ଏବଂ ସେଇଠୁ କମିଶନ ଆଦାୟ କଲା । କେଉଁ ବିଭାଗରେ ପଇସା ହାତଛଡ଼ା ହୋଇଯାଉଚ୍ଛି, ସେକଥା ଲକ୍ଷ୍ୟ କଲା ଏବଂ ସେ ବିଭାଗର କିରାଣୀକୁ ଉପଦେଶ ଦେଲା ସେମାନେ କିପରି ବେଶୀ ବେଶୀ ପଇସା ଆୟ କରିପାରିବେ, ଯାଦ୍ୱାରା କମିଶନି ଆକାରରେ ସେ ବେଶ୍ ଅର୍ଥ ଆୟ କରିପାରିଲା ।

ବଡ଼ବାବୁ ହୋଇ କୃପାସିନ୍ଧୁର ପଦୋନ୍ନତି ପରେ ପରେ ହିଁ ରାୟ ବାହାଦୂରବାବୁଙ୍କ ଅବସର ବେଳ ହେଲା । କଟକରେ ତାଙ୍କର ଘରଟିଏ ଥିଲା । ଅବସର ପରେ ସେ ସେଠାରେ ରହିଲେ । ସେହି ଜିଲ୍ଲାରେ ବି ତାଙ୍କର ଜମିଦାରୀ ଥିଲା । ସହରରେ ତାଙ୍କ ପୁଅ ଗୋଟାଏ ବ୍ୟାପାର ଖୋଲିଥିଲା । ସେ ଅଞ୍ଚଳର ଅଫିସରମାନେ ତାଙ୍କ ସହ ଯୋଗାଯୋଗ ରଖି ବିଚାର ଆଲୋଚନା କରୁଥିଲେ । ପୂର୍ବେ ସେ ଚାକିରୀରେ ଥିବା ସମୟ ପରି ଖବରଖାବର ବୁଝିବାକୁ କିମ୍ବା ବିଶ୍ୱସ୍ତ ଖବର ଦେବାକୁ, ତାଙ୍କ ସହ ଆଗ ପରି ସେମାନେ ବିଚାର ବିମର୍ଷ କରୁଥିଲେ ।

ଏହି କାରଣରୁ ସେଇ କାମମାନଙ୍କ ପାଇଁ କୃପାସିନ୍ଧୁ ସହ ତାଙ୍କର ବେଳେ ବେଳେ ଦେଖା ସାକ୍ଷାତ୍ ହେଉଥିଲା ।

କାଠଯୋଡ଼ି କୂଳର ବସାଘରେ କୃପାସିନ୍ଧୁ ତା'ର ସ୍ତ୍ରୀ ଓ ଦୁଇଝିଅଙ୍କ ସହିତ ବେଶ୍ ହସଖୁସିର ସହ ଆନନ୍ଦରେ ଦିନ କାଟୁଥିଲା । ତା'ର ଘର ଠାରୁ କଚେରୀକୁ ମାତ୍ର ପାଞ୍ଚମିନିଟ୍‌ର ରାସ୍ତା । ବର୍ଷକୁ ଥରେ ଦୁଇଥର ସେ ଗାଁକୁ ଯାଉଥିଲା । ପ୍ରତିବର୍ଷ ତା'ର ଜଣେ ବା ଦି'ଜଣ ନୂଆ ନାତି ନାତୁଣୀ ଜନ୍ମ ନେଉଥିଲେ । ବଡ଼ବାବୁ ପଦବୀ ପାଇବାର ତୃତୀୟ ବର୍ଷ କିଂତୁ ଅଘଟଣଟିଏ ଘଟିଲା । ରାତାରାତି ବଡ଼ଲୋକ ହେବା ଲୋଭରେ ଦୟାନିଧି ଅର୍ଥ ତୋଷାରପାତ ଘଟଣା ଧରାପଡ଼ିଲା ଓ ତା'ର ଚାକିରୀ ଚାଲିଗଲା ।

ମାଲିକ ତାକୁ ଚାକିରୀରୁ ବାହାର କରିଦେବାରୁ ସେ ଗାଁକୁ ଯାଇ ତା'ର ସ୍ତ୍ରୀ-ପିଲା ଓ ନାତୁଣୀ ନାତିଙ୍କ ସହ ବସବାସ କରିବାକୁ ଲାଗିଲା । ସେଠାରେ ସେ ତା'ର ପରିବାରକୁ ହରିବନ୍ଧୁର ଜିମାରେ ଛାଡ଼ିଦେଇ କୃପାସିନ୍ଧୁ ସହ ଦେଖା କରିବାକୁ କଟକ ଆସିଲା ।

"ଭାଇ, ତୁ ଯେମିତି ହେଲେ ମୋତେ ସାହାଯ୍ୟ କରିବୁ । ତୋର ବଡ଼ଭାଇ ଓ ତା'ର ପରିବାରକୁ ଓପାସରେ ପଡ଼ି ରହିବାର ଦେଖିବୁ ନାହିଁ ଯେମିତି ।" କୃପାକୁ ସେ ବିନତି ହେଲା ।

"ଅବଶ୍ୟ ତୁମକୁ ଆମେ କେବେ ଭୋକରେ ରହିବାକୁ ଦେବୁ ନାହିଁ । ଏତେ ବ୍ୟସ୍ତ ହେବା ଦରକାର ନାହିଁ ।"

"ମୋ ବିରୁଦ୍ଧରେ ଅର୍ଥ ତୋଷାରପାତର ଅଭିଯୋଗ ଆଗତ ହେବାକୁ ଯାଉଛି ।"

"ତମେ କ'ଣ ଏଡ଼େ ବୋକା ଯେ ଏଇ ଉଡ଼ାକଥାକୁ ଡ଼ରୁଚ୍ ? ତା' ବିଷୟରେ ସବୁ ଜାଣି ତମେ ତାକୁ କୋଡ଼ିଏ ଥର ଜେଲ୍‌କୁ ପଠେଇବ । ସେ ଅଭିଯୋଗ ଆଗତ କରିବ ନାହିଁ । ସେ ସାହାସ ତା'ର କାହିଁ ?"

"ଆଉ, ମୁଁ ଚଳିବି କେମିତି କହିଲୁ ?"

"କେତେ ହଜାର ଟଙ୍କା ଅଛି ।" କୃପା ଭାବି ଭାବି କହିଲା, "ମୁ ଭାବୁଚି, ସେ ପୁରୁଣା ଘରଟା ପରିବାରର ସବୁ ଲୋକଙ୍କ ପାଇଁ ଅଣ୍ଟୁ ନାହିଁ । ନିଶିବାଲା ତା'ର ଛୁଆକୁ ଧରି ହରିବନ୍ଧୁ ତିଆରି କରିଥିବା ଛୋଟ ବଗିଚା ଘରେ ରହୁଚି । ହରିବନ୍ଧୁ ଓ ତା'ର ଛୁଆ ପିଲା ସେ ଘରେ ରହୁଚନ୍ତି । ତୁମ ପିଲାଏ ଏବେ ସେଇଠି ରହିବେ । ମୁଁ ଭାବୁଚି ଏବେ ପରିବାରରେ ସମ୍ପତ୍ତି ଭାଗବଂଟୁରା କରିଦେବା ଉଚିତ୍ ହେବ ।"

"ପୈତୃକ ସମ୍ପତ୍ତି ତ ମାତ୍ର ଦଶଏକର । ଆମେ ତାକୁ ତିନିଭାଗ କରିଦେଲେ,

ଗୋଟାଏ ସ୍ୱଚ୍ଛଳ ପରିବାର ତିନୋଟି ଅଚ୍ଛଳ ପରିବାରରେ ପରିଣତ ହୋଇଯିବ ।"

"ସେକଥା ମୁଁ କହୁନାହିଁ । ପୁରୁଣା ସମ୍ପତ୍ତିକୁ ଆମେ ଠିକ୍ ରଖିବା । ତୁମେ ବଡ଼ଭାଇ ହିସାବରେ ସେତକ ପାଇବ । ହରିବନ୍ଧୁ ପାଇଁ ନୂଆ ଜାଗାରେ ଘର କରିଦେବା । ମୋର ତ ନିଜ ନାମରେ ଜମିଜାଗା ଅଛି ।"

"ହରିବନ୍ଧୁ ପୈତୃକ ସମ୍ପତ୍ତି ଚାଷ କରୁଚି । ସେ ଘରେ ସେ ତା'ର ଛୁଆ ପିଲା ଧରି ରହୁଚି । ତେଣୁ ସେ କେବେ ସେସବୁ ଛାଡ଼ି ଦେଇ ଯିବାକୁ ଇଚ୍ଛା କରିବ ନାହିଁ ।" ଦୟାନିଧି କହିଲା । "ସେ ବିଷୟରେ ମୁଁ ଚିନ୍ତା କରିସାରିଛି । ଯେହେତୁ ମେ ପୈତୃକ ସମ୍ପତ୍ତି ଭୋଗ କରି ଆସୁଛି । ମୋତେ ଓ ତୁମକୁ ସେଥିରୁ ସେ ଭାଗଦେବା କଥା । ମାତ୍ର ତାଠାରେ ସେଥିପାଇଁ ସମ୍ବଳ ନଥିବ । କିଂତୁ ତୁମେ ଯଦି ସେ ସମ୍ପତ୍ତି ନିଅ ତେବେ, ତୁମେ ହରିବନ୍ଧୁକୁ ତା'ର ଭାଗ ଦେଇପାରିବ । ମୋ ଭାଗଟି ମୁଁ ତୁମକୁ ମୋଫଂତରେ ଛାଡ଼ିଦେବି । ତାହେଲେ, ହରିବନ୍ଧୁ ତୁମଠୁଁ ଓ ମୋଠୁଁ କିଛି ଅର୍ଥ ନେଇ ନୂଆ ଜମି ଓ ଘର କରି ଚଳିବ । ଆମ ଘର ଓ ନଈକୂଳ ମଝିରେ ଥିବା ଆମ୍ବତୋଟାଟି ମୁଁ କିଣିଛି । ତା ଭିତରେ ଥିବା ଗଛଗୁଡ଼ିକ ବୁଢ଼ା ହୋଇଗଲାଣି । କିଂତୁ, ସେ ଜାଗାଟା ଉଚ୍ଚା ଥିବାରୁ ବନ୍ୟା ବିପ୍ଳାତ ସେଠି ହେବନି । ସେଠାରେ ଗଛଗୁଡ଼ାକ କାଟି ମୁଁ ଗୋଟାଏ ଘର ତିଆରି କରିବି ।"

"ଇଏ ତ ଅତି ଉତ୍ତମ କଥା । ହରିବନ୍ଧୁ କିଂତୁ ଏସବୁରେ ରାଜି ହେବନି । ତେଣୁ ଯାହା ଚାଲୁଚି ସେମିତି ଚାଲୁଥାଉ ।"

"ତୁମେ ଓ ତୁମ ପରିବାର ଗୋଟାଏ ଅଲୋଡ଼ା ବୋଝ ହୋଇ ଆମ ଉପରେ ଜୀବନସାରା ରହିବାକୁ ଚାହୁଁଛ କି ? ମୁଁ ହରିବନ୍ଧୁକୁ ଏସବୁ ବିଷୟରେ ଲେଖୁଛି । ପୂଜା ସମୟରେ ସମସ୍ତେ ବସି ମିଳିମିଶି ଯାହା ସ୍ଥିର କରିବୁଁ ।"

ଦୟାନିଧି ଘରକୁ ଫେରିଗଲା । ଘରେ ଯାଇ ହରିବନ୍ଧୁକୁ କୃପା କହିଥିବା କଥା ସବୁ କହିଲା । କୃପା ଏସବୁ କହିଥିବ ବୋଲି ହରିବନ୍ଧୁ ବିଶ୍ୱାସ କଲା ନାହିଁ । ତହିଁ ପରଦିନ କୃପାର ଚିଠି ଘରେ ପହଞ୍ଚିଲା । ଚିଠି ଦେଖିଲା ପରେ ଯାଇ ହରିବନ୍ଧୁ ସବୁକଥା ବିଶ୍ୱାସ କଲା । କୃପାସିନ୍ଧୁ ଯେ ତାକୁ ପୈତୃକ ଘରୁ ଉଚ୍ଛେଦ କରିବାକୁ ଚାହୁଁଚି, ସେକଥା ଭାବି ସେ କାନ୍ଦି ପକାଇଲା ।

ଯେଉଁ ଘରେ ସେ ବଢ଼ି ଆସିଛି, ସ୍ତ୍ରୀ ପିଲାଙ୍କ ସହ ଚଳିଚି, ଝାଳ ନିଗାଡ଼ି ଜୀବନସାରା ଯେଉଁ ଉର୍ବର ଜମି ସେ ଚାଷ କରିଛି, ସେଠୁଁ ତାକୁ ଅନ୍ୟତ୍ର ଯିବାକୁ ହେବ। କଥାଟା ସେ ଆଦୌ ସହି ପାରିଲାନି । ତେଣୁ କ'ଣ କରିବ ବୋଲି ସେ

ଭାବିହେଲା ଏବଂ ଶେଷରେ ସେ ଏକ ବୁଦ୍ଧି ପାଞ୍ଚିଲା । ଦୟାନିଧି ଜିମାରେ ଛୁଆପିଲାଙ୍କୁ ଛାଡ଼ି, ଆଗରୁ କିଛି ଖବର ନଦେଇ ସେ କଟକରେ ଯାଇ ପହଞ୍ଚିଗଲା ।

କଟକରେ ଆସି ସେ ରାୟବାହାଦୂରଙ୍କ ସହ ସାକ୍ଷାତ୍ କଲା । କୃପାର ଭାଇ ବୋଲି ଜାଣିବା ପରେ ରାୟବାହାଦୂର ତାକୁ ଖୁବ୍ ଖାତିରଦାରି ଦେଖାଇଲେ। ପାଞ୍ଚମିନିଟ୍ ଭଦ୍ରତାରେ କୁଶଳ ମଂଗଳ ଆଲୋଚନା ପରେ ଦୟାନିଧି ତା'ର ମତଲବଟି ରାୟବାହାଦୂରଙ୍କ ଠାରେ ପ୍ରକାଶ କଲା ।

"ମୋର କିଛି ଟଙ୍କାର ଜରୁରୀ ଆବଶ୍ୟକତା ଅଛି ।"

"ତୁମ ପାଇଁ ତ ଟଂକା ଧାର କରିବା ଖୁବ୍ ସହଜ। ତୁମକୁ ମୁଁ କିଛି ଟଙ୍କା ଦେବି ।"

"ଜୀବନସାରା ଋଣ କରି କରି ସୁଧବୋଝରେ ଲଦି ହେବାକୁ ମୁଁ ଚାହେଁ ନାହିଁ । ଆପଣ ମୋତେ କିଛି ଟଂକା ଦେବେ ।"

"କେତେ ଟଙ୍କା ତୁମର ଦରକାର ?"

"ଏଇ ପାଞ୍ଚହଜାର ହେଲେ ହେବ ।"

"ଶହେ ଟଙ୍କା ହୋଇଥିଲେ ମୁଁ ଦେଇପାରିଥାନ୍ତି । ତୁମେ ତ ମୋ ଜୋଇଁଙ୍କ ଭାଇ । କିଂତୁ ପାଞ୍ଚହଜାର ଦେବା ବହୁତ ବେଶୀ ହୋଇଯିବ ।"

"ମୋତେ ପାଞ୍ଚହଜାର ଦେବାର କାରଣ ଅଛି । ଆପଣ ତ ପାନପଡ଼ା କଥା ସବୁ ଜାଣନ୍ତି । ସେ ଦୁଇ ସ୍ତ୍ରୀଲୋକଙ୍କ ଠାରୁ ଆପଣ ୬୦ ହଜାର ଟଙ୍କା ଠକିନେଲେ । ସେମାନେ ଭାବିଲେ ଯେ କଲେକ୍ଟରଙ୍କୁ ନିଜ କାମ ପାଇଁ ସେମାନେ ଟଙ୍କା ଦେଉଛନ୍ତି । କିଂତୁ ଆପଣ ସେ ଟଙ୍କା ସବୁ ନେଲେ । ଯଦି ସେଥିରୁ ମୋତେ ପାଞ୍ଚହଜାର ଟଙ୍କା ନ ଦିଅନ୍ତି, ତେବେ ମୁଁ ଯାଇ କଲେକ୍ଟରଙ୍କୁ ସବୁକଥା ଖୋଲି କହିଦେବି ଓ ଆପଣଙ୍କର ସର୍ବନାଶ ହୋଇଯିବ ।"

"ତୁମ ଭାଇର ବି ସର୍ବନାଶ କରିବ ?"

"ନା, ମୁଁ କହିବି ଯେ ସେଥିରେ ତାଙ୍କର କିଛି କରିବାର ନଥିଲା । ଆପଣ ସେକଥା ପ୍ରମାଣ ମଧ୍ୟ କରିପାରିବେ ନାହିଁ ।"

"ଠିକ୍ ଅଛି । ତେବେ, ପାଞ୍ଚହଜାର ଅତିବେଶୀ ହୋଇଯାଉଛି । ଘରେ ଏତେ ଟଙ୍କା ମୁଁ ରଖେ ନାହିଁ । ମୋତେ ଯୋଗାଡ଼ କରିବାକୁ ହେବ । ତୁମେ କାଲି ପୁଣି ଆସ ।"

ହରିବନ୍ଧୁ ଫେରିଗଲା ପରେ ରାୟସାହେବ କୃପାକୁ ଡାକି ପଠେଇଲେ ଓ

କହିଲେ, "ତୁମ ଭାଇ ପାଗଳ ନା କ'ଣ ? ମୋତେ ଡ଼ରେଇ ପାଞ୍ଚ ହଜାର ଟଙ୍କା ନେଇଯିବ ।?"

ହରିବନ୍ଧୁ ରାୟସାହେବଙ୍କୁ କହିଥିବା କଥାଶୁଣି କୃପାସିନ୍ଧୁ ହସିଲା । "ମୋ ଭାଇ ଗୋଟାଏ ଅତି ସରଳ ଯୁବକ । ଟଙ୍କା ତା'ର କ'ଣ ପାଇଁ ଲୋଡ଼ା, ମୁଁ ଜାଣେ । ସେ ଆସିଲେ ତାକୁ ମୋ ପାଖକୁ ପଠାଇ ଦେବେ । ମୁଁ ତାକୁ ଠିକ୍ କରିଦେବି ।"

ହରିବନ୍ଧୁ ଯେବେ ରାୟସାହେବଙ୍କ ଘରକୁ ଟଙ୍କା ନେବାକୁ ଆସିଲା, ସେ ତାକୁ କହିଲେ, "ଯେ କୃପା ତାକୁ ଟଙ୍କା ଦେବାକୁ ମନା କରିଛି ତେଣୁ ସେଇଠିକୁ ଯାଅ ।"

ପ୍ରଥମେ ହରିବନ୍ଧୁ ଟିକେ ସାହାସ ସଂଚୟ କରି କହିଲା- ଭାଇମାନେ ତାକୁ ନିଜଘରୁ ତଡ଼ି ଦିଅନ୍ତୁ, ସେକଥା ସେ ଚାହେଁ ନାହିଁ । ପରେ ସେ ବିକଳ ହୋଇ ତା'ର ଭାଇକୁ ବିନତି କଲା ଏପରି କଠୋର ନହୋଇ ଆଉ କିଛି ବିକଳ୍ପ ବ୍ୟବସ୍ଥା କରିବାକୁ ସେମାନେ ଚେଷ୍ଟା କରନ୍ତୁ । ତା'ର କଥାକୁ କାଟିଦେଇ କୃପା କହିଲା, ଏଥିରେ ଡ଼ରିବାର କିଛି କାରଣ ହରିବନ୍ଧୁ ପାଇଁ ନାହିଁ । ତା' ଇଚ୍ଛା ବିରୁଦ୍ଧରେ ଘରୁ ତାକୁ ଉଚ୍ଛେଦ କରାଯିବ ନାହିଁ ।

"ଭାଇ ହରିବନ୍ଧୁ, ସେ ଭୁଟା ଚୋର ପାଖକୁ ଟଙ୍କା ପାଇଁ କାହିଁକି ଯାଇଥିଲୁ ?"

"ପାଞ୍ଚ ହଜାର ଟଙ୍କା ଆମ ପୈତୃକ ସମ୍ପତ୍ତି ଠାରୁ ଯଥେଷ୍ଟ ବେଶୀ । ମୁଁ ଭାବୁଥିଲି ସେ ମୋତେ କମ୍ ଟଙ୍କା ଦେବ, ତଥାପି ବି ମୁଁ ନେଇଥାନ୍ତି ।"

"ତୋଠୁଁ ବେଶୀ ଚଲାଖ ନ ହୋଇଥିଲେ ସେ ଜଣେ ମୋଟୁ ଚୋର ହୋଇ ନଥାନ୍ତା, ତେବେ ତୁ କ'ଣ କିଛି ସଂଚ୍ୟ କରି ରଖିନୁ କି ?"

"ଭାଇ, ମୁଁ ତୁମ ପିଲାଙ୍କୁ ରଖି ଚଳେଇଚି । ଏବେ ଯାଏ ମଧ୍ୟ ତୁମ ପୁଅ ଓ ସେମାନଙ୍କର ସ୍ତ୍ରୀ ପିଲାଙ୍କୁ ଚଳେଇ ଚାଲିଛି । ଢ଼େରଦିନ ଧରି ଦୟାନିଧିର ପରିବାରକୁ ମଧ୍ୟ ମୁଁ ଚଳେଇଲି। ସେମାନେ ପୁଣି ଫେରି ଆସିଲେଣି । ତୁମର ବି ଚାଉଳ, ଡାଲି, ମସଲା ଓ ଆଉ ଯାହା ଦରକାର, ସେସବୁ ଦେଇ ଚାଲିଛି । କିଛି କଥାରେ ଉଣା କରି ନାହିଁ, ଯେହେତୁ ଏ ସମ୍ପତ୍ତିରେ ତିନିଜଣଙ୍କର ଭାଗ ରହିଛି । ମୁଁ ଖଜଣା ଦେଉଚି । ମୋ ପିଲାଙ୍କୁ ଖୁଆଉଛି । ତାପରେ ବଳକା କ'ଣ ହେଉଚି ଯେ ରଖିବି ? ମାତ୍ର ଦୁଇଶହ ଟଙ୍କା ମୋ ଠାରେ ବଳକା ଅଛି ।"

"ସେଇଟା ଇଜିମାଇଲ୍ ଟଂକା ଯେହେତୁ ତାହା ତୁ ଜମିଜମା ଚାଷରୁ ସଂଗ୍ରହ କରିଛୁ । ତେବେ, କିଛି କଥା ନାହିଁ - ଜମି ଓ ଘରର ମୂଲ୍ୟ କେତେ ତାହା ଆମେ

କଳନା କରିଦେବା । ତୁ ତୋର ଦୁଇଶ ଟଙ୍କା ଓ ବେଶୀ କିଛି ଦୟାନିଧିର ଭାଗ ଆଡ଼କୁ ଦେବୁ । ସେ ତା'ର ସଂଚୟ ଓ ସେଇ ଟଙ୍କାରେ ଅଲଗା ଜମିକିଣି ଘର କରି ରହୁ । ତାହେଲେ ଯାଇ ତା' କବଳରୁ ଆମେ ମୁକ୍ତ ହେବୁ ।

"ଦୟାନିଧିକୁ ଏକଥା ଭଲ ଲାଗିପାରେ । ଚାକିରୀ ପ୍ରତି ସେ ବୀତସ୍ପୃହ ହୋଇପଡ଼ିଛି । ଟଙ୍କା ପଛରେ ଦୌଡ଼ି ଦୌଡ଼ି ବିପଦରେ ପଡ଼ି ସେ ଜେଲ୍ ଭୟରେ ଶଡ଼ି ହେଉଛି । ମୁଁ ତୋତେ ଇଜିମାଇଲ୍ ସମ୍ପତ୍ତିରୁ କିପରି ତୋ ଭାଗ ଦେଇ ପାରିବି ?"

"ମୁଁ ତୋତେ ସେ ଟଙ୍କା ଦାନ ଦେଇଦେବି । ଦଶଏକର ଜମିର ଏକ ତୃତୀୟାଂଶର ମୂଲ୍ୟ ବା କେତେ ? ହରିବନ୍ଧୁ ! ମୁଁ ଧନୀ ହୋଇଗଲିଣି । ଏତିକି ଟଙ୍କା ମୋ ପାଇଁ କିଛି ନୁହେଁ ।"

"କୃପାସିନ୍ଧୁ ତୁ ବହୁତ ଭଲ । ଦେଇଥିବା କଥା ସବୁବେଳେ ରଖୁ । ତୋର ଅବସର ପରେ ତୁ କ'ଣ କରିବୁ ?"

" ସେ ଆମ୍ବ ବଗିଚାରେ ଘରଟିଏ କରି ନିଜ ଜମି ଚାଷ କରି ଚଳିବି ବୋଲି ଭାବିଛି ।"

ତିନିଭାଇ ଯାକ ଏ ବ୍ୟବସ୍ଥାଟିକୁ ଠିକ୍ ବୋଲି ଗ୍ରହଣ କଲେ । ପୂଜାଛୁଟିରେ ସଭିଏଁ ମିଳି ଟିକିନିଖି କରି ସବୁକଥା ସ୍ଥିର କଲେ । ଏବଂ ସେ ଅନୁସାରେ କାଗଜପତ୍ର ମଧ୍ୟ ପ୍ରସ୍ତୁତ ହେଲା ।

ନିଜ ନୂଆଘର ତିଆରି ପାଇଁ କୃପାସିନ୍ଧୁ ଠିକା ଦେଇ ଦେଲା । ବଡ଼ଲୋକମାନେ ରହିବା ପରି ଗୋଟାଏ ବଡ଼ ଦୁଇତାଲା ଘର ତା'ର ହେବା ଦରକାର । ସେ ଯେ ଏବେ ରାୟସାହେବ ହେଲାଣି । ଆମ୍ବଗଛ ସବୁ କଣ୍ଟ୍ରାକ୍ଟରେ କଟା ଆରମ୍ଭ ହୋଇ ବଗିଚା ସଫା ହେଲାଣି ।

ଧୋବାମାନେ ହେଉଛନ୍ତି ଗଛ କାଟିବା ଜାତି । କୁରାଢ଼ି ଧରି ଗୋଟାଏ ପରେ ଗୋଟାଏ ଗଛ ପାଖକୁ ଯାଇ, ଗଛକୁ ପ୍ରଣାମ କରି କାଟିବା ପାଇଁ ତା'ର ଅନୁମତି ନେଲା ପରେ ହିଁ ଗଛରେ କୁରାଢ଼ୀ ଲଗାନ୍ତି ସେମାନେ ।

ପାଖାପାଖି କେତେଖଣ୍ଡ ଜମି କିଣି ସେଥିରେ ଫଳଫୁଲ ଓ ଗୁଳ୍ମ ସବୁ ଲଗେଇ ବଗିଚାଟିଏ କରିବାକୁ କୃପାସିନ୍ଧୁ ଚାହିଁଲା ।

ହରିବନ୍ଧୁ ଏସବୁ କାମ ତଦାରଖ କଲା । ଜମିଜମା ସଫା କରିବା, ବଗିଚା ତିଆରି ଓ ଫଳଗଛ ଲଗେଇବା କଥା ସବୁ ବୁଝିଲା ।

ତାର ଘର ପାଖରୁ ନଦୀକୂଳଯାଏ ସବୁ ତକ ଜମି କୃପାସିନ୍ଧୁ କିଣି ପକେଇଲା ।

ପରେ ରାସ୍ତା ଓ ନଦୀରେ ଘାଟ ତିଆରି କରେଇଲା । ସେମିତି ହେଲେ ତା ପରିବାରର ଲୋକେ ବୁଢ଼ାବଳଙ୍ଗ ନଦୀକୁ ସୁବିଧାରେ ଗାଧେଇବାକୁ ଯାଇପାରିବେ ।

ବର୍ଷା ଦିନ ଭିତରେ ଘର ଚାରିପାଖେ ଓ ବଗିଚାରେ ବାଡ଼ମାନଙ୍କରେ ଗୁଲ୍ମଗଛ ସବୁ ଲଗାହେଲା । ବୁଢ଼ାବଳଙ୍ଗ ନଦୀଘାଟକୁ ଯାଇଥିବା ରାସ୍ତାର ଦୁଇଧାରରେ ମଧ୍ୟ ଗୁଲ୍ମ ଗଛ ଲଗାହେଲା ।

ବଡ଼ଦିନ ଛୁଟିରେ ଗାଁକୁ ଗଲା ପରେ ସେ ଦେଖିଲା ଯେ ତା'ର ନୂଆଘରଟିର ତିଆରି ସରିବା ଉପରେ ହେଲାଣି । ଗୁଲ୍ମଗୁଡ଼ାକ ଖୁବ୍ ସୁନ୍ଦର ଭାବେ ବଢ଼ି ଉଠିଥିଲା । ବଗିଚାରେ ଫୁଲ ଫୁଟିଲାଣି ଓ ପରିବା ଫଳିଲାଣି । ଗୋଟାଏ ଭଲ ଦିନ ଦେଖି ସେ ତା'ର ନୂଆ ଘରକୁ ଉଠିଯିବାର ଯୋଜନା କଲା ।

## ସପ୍ତବିଂଶ ପରିଚ୍ଛେଦ

ବଡ଼ବାବୁ ପୋଷ୍ଟରେ ତିନିବର୍ଷ ଧରି କୃପାସିନ୍ଧୁ କାମ କଲା ଏବଂ ନିରନ୍ତର ଭାବରେ ନିଜର ଉପୁରି ଆୟ ବଢ଼ାଇ ଚାଲିଲା । ପ୍ରତ୍ୟେକ ବିଭାଗରେ କ'ଣ କାମ ହେଉଚି ତାହା ତଦାରଖ କରି ସେଠାରୁ କମିଶନ ସଂଗ୍ରହ କରି ଚାଲିଥିଲା । କେହି କିରାଣୀ ସେ ଦିଗରେ ଅପାରଗ ହେଲେ, ସେ ତାକୁ ଉଚିତ୍ ଶିକ୍ଷା ଦେଉଥିଲା । ଅଫିସରେ ସେ ସମସ୍ତଙ୍କର ପ୍ରିୟପାତ୍ର ଥିଲା । ସାନ ସାନ କନିଷ୍ଠ କିରାଣୀଙ୍କୁ ସେ ଉଚିତ୍ ମାର୍ଗ ବତାଏ ମାତ୍ର ତାଙ୍କ ଠାରୁ ଅଧିକ ଶୋଷେ ନାହିଁ ।

ଏବେ ତାକୁ ବାରଂବାର କଲେକ୍ଟରଙ୍କ କୋଠୀକୁ ଯାଇ କାଗଜପତ୍ର ଦାଖଲ କରିବାକୁ ହେଉଥାଏ । ଜଣେ ନୂଆ କଲେକ୍ଟର ଆସିଥାନ୍ତି । ସେ ତାଙ୍କ ଷ୍ଟେନୋ ଟାଇପିଷ୍ଟ ସହ କ୍ୱଚିତ୍ କଥାବାର୍ତ୍ତା କରନ୍ତି । କେବଳ ନୋଟ୍ ଡାକିବା ଛଡ଼ା ଆଉ କିଛି କଥା ହୁଅନ୍ତି ନାହିଁ କି ତା' ଉପରେ ଆଦୌ ବିଶ୍ୱାସ କରନ୍ତି ନାହିଁ । ତାକୁ ଯୁବକ ଏବଂ ଅନଭିଜ୍ଞ ଭାବି କେବଳ ଟାଇପ୍ ସର୍ଟହେଣ୍ଡ ଛଡ଼ା ସେ ଆଉ କିଛି ଜାଣି ନାହିଁ ବୋଲି ଧରିନେଇଥାନ୍ତି । ତେଣୁ ସେ କନିଷ୍ଠ କିରାଣୀ କୃପାସିନ୍ଧୁ ପରି ସୁବିଧା ସୁଯୋଗ ଉପଭୋଗ କରିବାର ସୁବିଧା ପାଉନଥାଏ । ସେ ନୂଆ କଲେକ୍ଟରଙ୍କର କିଂତୁ କୃପାସିନ୍ଧୁ ପ୍ରତି ଅଗାଧ ବିଶ୍ୱାସ ଥାଏ । ତେଣୁ ଆଗଠାରୁ କୃପା ଆହୁରି ତାଙ୍କ ପାଇଁ ଆବଶ୍ୟକ ଏବଂ ଅପରିହାର୍ଯ୍ୟ ହୋଇ ପଡ଼ିଥାଏ ।

ଗାଁରେ ଏଣିକି କୃପା କରଜ ଦେବା ବେପାର ଆରମ୍ଭ କରି ଦେଇଥାଏ । ଛୁଟୀମାନଙ୍କରେ ଯେବେ ଗାଁକୁ ଯାଏ, ସେତେବେଳେ କରଜ ଟଙ୍କାର ସୁଧ ଆଦାୟ କରେ । ନୂଆ ଲୋକଙ୍କୁ ମଧ୍ୟ କରଜ ଦିଏ । ଏହି କାରଣରୁ ଗାଁର ଅଧାରୁ ଊର୍ଦ୍ଧ୍ୱ ଜମି ତା'ଠାରେ ବନ୍ଧକ ପଡ଼ିଥାଏ ଏବଂ ପାଖ ପଡ଼ିଶାମାନଙ୍କ ଉପରେ ତା'ର କ୍ଷମତା ଓ ଆସନର ପ୍ରଭୂତ ପ୍ରଭାବ ପଡ଼ିଥାଏ ।

କୃପାର ନୂଆଘର ତୋଳା ସରିବା ପରେ ସେ ମାସଟିଏ ଅଫିସରୁ ଛୁଟିନେଲା । ବାଲେଶ୍ୱରରେ ରହୁଥିବା ତା'ର ପୁଅ ଏବଂ ଭାଇ ହରିବନ୍ଧୁଙ୍କୁ ଚିଠି ଲେଖି ଘରଟିକୁ ଆସବାବପତ୍ରରେ ସଜାସଜି କରି ରହିପାରିବା ଭଳି ବ୍ୟବସ୍ଥା କରିବା ପାଇଁ ନିର୍ଦ୍ଦେଶ ଦେଲା ।

ସେଇ ବର୍ଷ ସେ ତା'ର ଦୁଇଝିଅଙ୍କୁ ସେମାନଙ୍କ ଶାଶୂଘରକୁ ପଠାଇବା ପାଇଁ ସ୍ଥିର କଲା । ନୂଆ ଗୃହ ପ୍ରବେଶ ବେଳେ ଦି'ଜୋଇଁଙ୍କୁ ନିମନ୍ତ୍ରଣ କରି ଝିଅ ଦୁହିଁଙ୍କୁ ନେଇ ଯିବା ପାଇଁ ସେ ବ୍ୟବସ୍ଥା କଲା ।

ସବୁ କାର୍ଯ୍ୟ ଠିକ୍‌ରେ ସମାହିତ ହେଲା ପରେ କୃପାର ପୁଅ ଓ ସେମାନଙ୍କ ପିଲା-ଛିଲିମାନେ ଆସି ସେ ନୂଆଘରେ ରହିଲେ । କୃପାସିନ୍ଧୁ ଛୁଟିନେଇ ତା'ର ସ୍ତ୍ରୀ ଓ ଦୁଇଝିଅ ସହିତେ ଗାଁକୁ ଆସିଲା । ତା'ର ଦୁଇଜଣ ଯାକ ପୁଅ ମଧ୍ୟ ଛୁଟିନେଇ ଗାଁକୁ ଆସିଲେ । ନୂଆ ଘରର ହୋମ ଓ ଅନ୍ୟାନ୍ୟ ପୂଜାବିଧି ନସରିବା ଯାଏ, ନିଶିବାଳା ଓ ତା'ର ପିଲାଙ୍କୁ ନୂଆ ଘରକୁ ଆସିବାକୁ ଦିଆଗଲା ନାହିଁ ।

ହୋମଯଜ୍ଞ ଦ୍ୱାରା ଘରକୁ ଶୁଦ୍ଧ ପବିତ୍ର କରାଗଲା । ଏ ଉତ୍ସବକୁ ପରିବାରର ସବୁ ବଂଧୁବାନ୍ଧବଙ୍କୁ ଆମନ୍ତ୍ରିତ କରାଯାଇଥିଲା । ବହୁ ଜଣ ବ୍ରାହ୍ମଣଙ୍କୁ ମଧ୍ୟ ଆମନ୍ତ୍ରଣ କରାହୋଇଥିଲା । ସମସ୍ତଙ୍କ ଲାଗି ଉତ୍ତମ ଭୋଜିଭାତର ବ୍ୟବସ୍ଥା ମଧ୍ୟ ହୋଇଥିଲା । ଆଖପାଖର ଗରୀବ ଗୁରୁବାଙ୍କୁ ଡାକି ସେମାନଙ୍କୁ ପେଟ ପୂରା ଭୋଜନ ଦିଆଯାଇଥିଲା ।

ନୂଆ ଗୃହ ପ୍ରବେଶ ବେଳେ କୃପାସିନ୍ଧୁର ଦୁଇଜୋଇଁ ମଧ୍ୟ ଆସିଥିଲେ । ବଢ଼ିଆ ଭୂରିଭୋଜନ ପରେ, ପୂଜାପୂଜି ଓ ଉତ୍ସବ ସାରି ଝିଅମାନଙ୍କ ସହ ଦୁଇଟି ଟାକପାଣୀ ଦେଇ, ଜୋଇଁମାନଙ୍କ ସହ ସେମାନଙ୍କ ଶ୍ୱଶୁର ଘରକୁ ବିଦାୟ କରାଗଲା ।

ତାପରେ ନିଶିବାଳା ଓ ତା'ର ପୁଅ ନୂଆ ଘରକୁ ଆସିଲେ । ସେମାନଙ୍କ ପାଇଁ ଉଦ୍ଦିଷ୍ଟ କୋଠରୀରେ ସେମାନେ ଦୁହେଁ ରହିଲେ ।

ଏସବୁ ପାଇଁ କୃପାସିନ୍ଧୁର ଅନେକ ଅର୍ଥ ଖର୍ଚ୍ଚ ହୋଇଗଲା, କୃପାସିନ୍ଧୁ ତା'ର ହୃଦୟବତ୍ତା ଏବଂ ଆତିଥ୍ୟ ପାଇଁ ପାଖପଡ଼ିଶାରେ ଖୁବ୍ ଆଦୃତ ହେଲା । କୌଣସି

ଖର୍ଚ୍ଚକୁ ସେ ଖାତିର କରିନଥିଲା । କାରଣ ତାର ପିଲାଏଁ ତ ପାରି ଉଠିଥିଲେ । ସେ ନିଜେ ବି ପ୍ରଚୁର ଆୟ ଅର୍ଜନ କରୁଥିଲା।

ଝିଅ ଦିଇଟାଙ୍କୁ ବିଦାୟ ଦେଇ ବହୁଦିନ ଯାଏ ତାଙ୍କ ପାଇଁ ଝୁରି ହେଉଥିଲା । ବିଦାୟ ଦେଲା ବେଳେ ସେ ଝିଅ-ଜୋଇଁଙ୍କୁ ପୁଣି ଆସିବାକୁ ବାରଂବାର ଅନୁରୋଧ କରିଥିଲା । ସେମାନଙ୍କ ବିଦାୟ ବେଳେ ସେ ନିଜ ଲୁହକୁ ଅଟକାଇ ପାରିଲା ନାହିଁ । ଝିଅମାନେ କାନ୍ଦୁଥିବା ବେଳେ ସେ ନିଜେ ବି କାନ୍ଦୁଥିଲା ।

କଟକ ଫେରିବା ବେଳକୁ ତାର ମନରେ ସେ ଦୁଃଖିତ ଭାବ ଆଉ ନଥିଲା । ବରଂ ସେ ଭାବିଲା ଯେ ଏବେ ସେ ତା'ର ସ୍ତ୍ରୀ ସହିତ ଭଲରେ ଓ ଶାନ୍ତିରେ ରହିପାରିବ । ଏବେ ଘରେ ତାର ବୁଢ଼ୀ ଚାକରାଣୀ ଓ ଗାଈଟିକୁ ଛାଡ଼ିଦେଲେ ସେ ଓ ଚାରୁବାଳା ଛଡ଼ା କେହି ନଥିଲେ ।

ତା'ର ଦୁଇପୁଅଙ୍କ ମଧ୍ୟରୁ ଜଣେ ବାଲେଶ୍ୱର କଲେକ୍ଟରଙ୍କ ଅଫିସରେ କିରାଣି ଓ ଅନ୍ୟ ପୁଅଟି ଶିକ୍ଷାନବୀଶ କିରାଣୀ ଥିଲା । ସାନପୁଅକୁ ଚାକିରୀରୁ ଖସେଇ ଆଣି ସେ ନୂଆଘର ଓ ଜମିବାଡ଼ିର ଦାୟିତ୍ୱ ତା' ହାତରେ ନ୍ୟସ୍ତ କରିଦେଲା । ନିଜେ ସେ ସୁଦୂର କଟକରେ ଚାକିରୀ ସ୍ଥଳରେ ରହିଲା ।

କୃପାସିନ୍ଧୁ ଅନୁଭବ କଲା ଯେ ଏବେ ତାର ସବୁ ଦାୟିତ୍ୱ ସରିଯାଇଛି । ତା'ର ପୁଅମାନେ ଯୋଗ୍ୟ ହେଲେଣି । ଝିଅ ବି ବାହା ହୋଇଗଲେଣି । ନିଜର ଘରଟିଏ ବି ଅଛି । ବୁଢ଼ା ବୟସରେ ତା'ର ପେଟପୋଷି ହେବାକୁ ଜମି କେଇମାଣ ବି ଅଛି । ସେ ଅଞ୍ଚଳରେ ସେ ଜଣେ ଗଣ୍ୟମାନ୍ୟ ଲୋକ । କିନ୍ତୁ ସେ ଯେ ଜଣେ ସାଧୁ ସଚ୍ଚୋଟ ମଣିଷ ଏ ଭାବନା ତାକୁ ଶାନ୍ତି ଆଣି ଦେଉଥିଲା । ସେ ଶାସକ ରଜାଙ୍କ ପ୍ରତି ବିଶ୍ୱସ୍ତ ଓ ବଂଶବଦ ଥିଲା । ଲାଞ୍ଚ ପାଇଁ କାହାରିର କେବେ କ୍ଷତି କରି ନ ଥିଲା ।

ଏ ସମସ୍ତ ସତ୍ତ୍ୱେ ମଧ୍ୟ ତା' ମୁଣ୍ଡରେ ଆଉ ଗୋଟାଏ ଦାୟିତ୍ୱ ତଥାପି ଥିଲା । ନିଶିବାଳାର ପୁଅକୁ ମାତ୍ର ଅଠରବର୍ଷ ବୟସ ହୋଇଥିଲା । ସେ ଗାଁ ସ୍କୁଲରେ ପଢୁଥିଲା । ତାର ସାଂଗମାନେ ତାକୁ ଜାରଜ ବୋଲି ଥଟ୍ଟା କରୁଥିଲେ । ସେସବୁକୁ ଆଡ଼େଇ ଦେଇ ପାଠପଢ଼ାରେ ମନନିବେଶ କରିବାକୁ ହାଡ଼ିବଂଧୁ ତାକୁ ଉପଦେଶ ଦେଉଥିଲା । କେବେ କେବେ ସେ ଚାଷବାସ କାମରେ ନିଜ ଜେଜେଙ୍କୁ ମଧ୍ୟ ସାହାଯ୍ୟ କରୁଥିଲା । କୃପା ମନସ୍ଥ କଲା ଯେ, ତାର ବିବାହ କରାଇ ଦେଲେ ଭଲ ହେବ । କିଛି ଗୋଟାଏ ବ୍ୟବସ୍ଥା ତା' ପାଇଁ କରିଦେଲେ, ପିଲାଟା ଜୀବନରେ

ପ୍ରତିଷ୍ଠିତ ହୋଇଯିବ । ଏୟା ଭାବି ଭାବି ବିବ୍ରତ ହୋଇ ପଡୁଥିବା ବେଳେ, ସେ ପିଲାଟି ଜନ୍ମ ହେବା ବେଳେ ତାର ସାଂଗମାନଙ୍କ ପ୍ରବୋଧନା ତାର ମନେ ପଡୁଥିଲା । ଏଇଟା ଗୋଟାଏ ସାଧାରଣ ଘଟଣା । ବିଧବା ନିଶିବାଳା ଯେ ଗୋଟାଏ ଜାରଜ ପିଲା ଜନ୍ମ କରିଛି ତାହା ନୁହେଁ ଏମିତି ବହୁତ ଝିଅଙ୍କର ଜାରଜ ସନ୍ତାନ ଜନ୍ମ ହେଉଛି । କୃପାସିନ୍ଧୁ ଭାବିଲା, ରାୟସାହେବଙ୍କ ସହ ଏ ବିଷୟରେ ଆଲୋଚନା କରିବ ।

ଚାକିରୀରେ ଥିବା ବେଳେ ରାୟବାହାଦୁର ତାଙ୍କର ସବୁ ସୁଯୋଗର ପୂର୍ଣ୍ଣ ସୁବିଧା ଉଠାଇଥିଲେ । ବିଶେଷତଃ ଯୋଗାଯୋଗ ଖବରଖାବର ରଖିବାରେ ସେ ସୁଯୋଗ ପାଉଥିଲେ । ଅବସର ପରେ ଏ ସଂକ୍ରାନ୍ତୀୟ ସବୁ ନଥିପତ୍ର ଆଣି ନିଜ ଆଲମୀରାରେ ରଖିଥିଲେ । ସେ ଜାଣିଥିଲେ ଯେ ଯେଉଁ ନକଲମାନ ସେ ତାଙ୍କ ଆଲମୀରାରେ ବଂଦ କରିରଖିଚନ୍ତି; ସେଗୁଡ଼ିକ ବଡ଼ଘରର କଥା । କେଉଁ ଚାଲାକ ଲୋକ ହାତରେ ପଡ଼ିଲେ ଖୁବ୍ କାମରେ ଆସିବ ।

ତେଣୁ, ସେ କୃପାସିନ୍ଧୁକୁ ଓଡ଼ିଶାର ସମସ୍ତ କଲେକ୍ଟର, ଡେପୁଟୀ ଓ ସେହିଭଳି ଉଚ୍ଚାସନରେ ଅଧିଷ୍ଠିତ ଅନ୍ୟ ଭଦ୍ର ଲୋକମାନଙ୍କର ଏକ ତାଲିକା ଯୋଗାଇ ପାରିଲେ । ଯେଉଁମାନଙ୍କର ବିଧବା ଝିଅ ଓ ଭଉଣୀମାନଙ୍କର ବିବାହ ବନ୍ଧନ ନଥାଇ ସନ୍ତାନ ଜନ୍ମ ହୋଇଛି । ଏ ତାଲିକା ଭିତରୁ କୃପାସିନ୍ଧୁ ସେହିଭଳି ଜଣେ ଭଦ୍ରଲୋକଙ୍କର ବିଧବା ଭଉଣୀର ଚଉଦବର୍ଷର ଝିଅଟିଏ ଥିବା ଜାଣିଲା ଏବଂ ତା'ସହ (ନିଶିବାଳାର ପୁଅ) ନିଜର ଜାରଜ ନାତିର ବିବାହ ପ୍ରସ୍ତାବ ପକାଇଲା । ଭଦ୍ରଲୋକ ଜଣକ ତାଙ୍କ ଜମିଦାରୀ ଥିବା ପାଞ୍ଚ ଏକର ଜମି ଯୌତୁକ ଦେବେ ବୋଲି କହିଲେ । ସେହି ଜମିଗୁଡ଼ିକ କୃପାସିନ୍ଧୁର ଘରଠାରୁ ବେଶ୍ ଦୂରରେ ଥିଲା । ଏଇଭଳି ଦୂରତାରୁ ନିଶିବାଳାର ପୁଅଟି ବାହା ହୋଇ ଘରସଂସାର କଲା ଯେଉଁଠାରେ କି ତାର ଜନ୍ମଜାତକର କାହାଣୀ କେହି ଜାଣିନଥିଲେ । ନିଶିବାଳା ତାର ଜନ୍ମ ସ୍ଥାନରେ ହିଁ ନିଜର ବାକି ଜୀବନ କଟେଇବାକୁ ଇଚ୍ଛା କଲା । ସେଠାରେ ଥିଲେ, ସେ ତାର ବାପାଙ୍କ ସହ ରହି ତାଙ୍କ ସେବା କରିପାରିବ ।

ନିଜ ସମ୍ପର୍କୀୟ ମାନଙ୍କ ପାଇଁ ସବୁ ବ୍ୟବସ୍ଥା କରିସାରି ଓ ନିଜର ବାର୍ଦ୍ଧକ୍ୟ ସମୟ ପାଇଁ ଯୋଜନା ସବୁ କରିସାରିବା ପରେ ମଧ୍ୟ କୃପାର ଅବସର ପାଇଁ ଆଉ ଦି'ବର୍ଷ ବାକି ଥିଲା । ଜମିଦାର ହେବା ପାଇଁ କୃପା ମନରେ ପ୍ରବଳ ଅଭୀପ୍ସା ଥିଲା । ପ୍ରଥମେ ସେ ଜାମିଦାରୀର କିଛି ଅଂଶ ପାଖ ଗାଁରୁ କିଣିଲା । ତାପରେ ତାର

ସୋମନାଥବାବୁଙ୍କ କଥା ମନେପଡ଼ିଲା ଯିଏ ତାଙ୍କ ଜମିଦାରୀଟି ନିଜ ପିତାଙ୍କ ଠାରୁ ଉତ୍ତରାଧିକାରୀ ସୂତ୍ରରେ ପାଇଥିଲେ । ସୋମନାଥବାବୁ ଥରେ କୃପାକୁ କିଭଳି ଅପମାନ କରିଥିଲେ, ସେକଥା ବି ତାର ମନେପଡ଼ିଲା । ଏବେ ସେ ଅପମାନର ପ୍ରତିଶୋଧ ନେବା ପାଇଁ ସମୟ ଆସିଛି ବୋଲି କୃପା ମନେ ମନେ ଭାବିନେଲା । ଇଷ୍ଟର ଛୁଟିରେ ଗାଁକୁ ଯିବା ସମୟରେ ସେ ସୋମନାଥ ବାବୁଙ୍କୁ ଭେଟିବାକୁ ଗଲା ।

ସୋମନାଥବାବୁ ଯେଉଁ ବିରାଟ ଘରେ ରହୁଥିଲେ, ସେଠାକୁ ଯାଇ ଘରର ବାହାର ଅଗଣାରେ ଦୁଇଟି ପିଲାଙ୍କୁ ବୁଢ଼ାପଣ୍ଡିତ ଜଣେ ପାଠ ପଢ଼ାଉଥିବାର ଦେଖିଲା। ବାରଣ୍ଡା ଉପରକୁ ଉଠିଯାଇ ଭଦ୍ରତାର ସହ ସେ ପଣ୍ଡିତଙ୍କ ସହ ବାର୍ତ୍ତାଳାପ କଲା । ପିଲା ଦିଓଟିଙ୍କ କାନ୍ଧ ଉପରେ ଝୁଙ୍କି ପଡ଼ି ସେମାନେ ଖଡ଼ି ଓ ସିଲଟରେ କ'ଣ ଲେଖୁଛନ୍ତି ବୋଲି ଲକ୍ଷ୍ୟ କଲା । ସେମାନେ ଏ, ବି,ସି,ଡ଼ି ଲେଖୁଥିଲେ ।

ସୋମନାଥ ବାବୁ କୃପାକୁ ବୈଠକ ଘରକୁ ପାଛୋଟି ନେଲେ । ଏବେ ତ କୃପା ବଡ଼ ଲୋକ ଜଣେ । ତେଣୁ ସେ ଚେୟାରରେ ବସିଗଲା । ପଢୁଥିବା ପିଲା ଦି'ଜଣଙ୍କ କଥା ସେ ପଚାରିଲା- "ସୋମନାଥବାବୁ, ଅଗଣାରେ ଦୁଇଟି ସୁନ୍ଦର ପିଲା ବସି ଏବିସିଡି ଲେଖୁଛନ୍ତି ଦେଖିଲି ।"

"ଓଃ.... ସେମାନେ ମୋର ନାତି ।" ସୋମନାଥ କହିଲେ ।

"ସତରେ ନା କ'ଣ ? ମୁଁ ଭାବିଥିଲି କୌଣସି ରୟତର ପିଲା ହୋଇଥିବେ । କାରଣ, ସେମାନେ ମାଙ୍କଡ଼ଙ୍କର ଭାଷା ପଢୁଛନ୍ତି କି ନା ।"

"ଆଜିକାଲି ଇଂରେଜୀ ଜାଣିବା ଜରୁରୀ ।" ସୋମନାଥ ଦୀର୍ଘଶ୍ୱାସ ଛାଡ଼ି କହିଲେ- "ଆଚ୍ଛା ରାୟସାହେବ, ତୁମେ ଏଠାକୁ ଆସିବାର କାରଣ କ'ଣ ? ଯଦି ଟଂକା ପଇସା ଉଦ୍ଦେଶ୍ୟରେ ଆସିଥାଅ ତ ମୋ ପାଖରେ ବେଶୀ କିଛି ଅର୍ଥ ନାହିଁ ।"

"ପଇସା ପାଇଁ ନୁହେଁ, ମୁଁ ଜମି ପାଇଁ ଆସିଥିଲି ।" କୃପା ଉତ୍ତର ଦେଲା ।

"କ'ଣ କହିବାକୁ ଚାହଁ ତୁମେ ?"

"ହଁ, ସେଇ ଜମି କଥା ତ କହୁଚି । ବହୁବର୍ଷ ତଳେ ତମ ବାପାଙ୍କୁ ମୁଁ ଦଶହଜାର ଟଙ୍କା ଦେଇଥିଲି । ବଂଚିଥିବା ଯାଏ ସେ ନିୟମିତ ସୁଧ ଦେଇ ଆସୁଥିଲେ । ବର୍ତ୍ତମାନ ତା'ର ମୂଳ ଓ ଚକ୍ରବୃଦ୍ଧି ହାରରେ ସୁଧ ବଢ଼ି ବଢ଼ି ପଇଁଚାଳିଶ ହଜାର ଶହେ ଅଠର ଟଙ୍କାରେ ପହଞ୍ଚିଛି । ତମେ ତାହା ମୋତେ ଦେଇପାରିବ ତ ?"

"ତୁମେ ତ ଜାଣ, ଏତେ ଟଙ୍କା ମୁଁ କୁଆଡୁ ଦେଇପାରିବି ?"

"ମୁଁ ଭଲ ଭାବେ ତା ଜାଣିଚି । ସେଥିପାଇଁ ତ କହିଲି, ଟଙ୍କା ନୁହେଁ, ଜମି ପାଇଁ ମୁଁ ଏଠିକି ଆସିଛି ।"

"ରାୟ ସାହେବବାବୁ, ତମେ ପାଉଣା ଟିକେ କମାଅ ।"

"ମୁଁ ସେ ପାଉଣାକୁ ଟ ୬,୦୦୦ଙ୍କାକୁ କମେଇ ଦେଲେ, ତୁମେ ତାହା ସଂଗେ ସଂଗେ ମୋତେ ଫେରାଇ ପାରିବ ତ ?"

"ତୁମେ ତ ଜାଣ ପଇସା ଆକାରରେ ମୁଁ ଏତେ ଦେଇପାରିବିନି ।"

"ତାହେଲେ, ତମ ଜମିଦାରୀରୁ କିଛି ଗାଁ ବିକି ତମେ ଋଣ ପରିଶୋଧ କର ।"

"ମୋତେ କିଛି ସମୟ ଦିଅ ।"

"ମୋ ହାତରେ ସମୟ ନାହିଁ ରିହାତି ଦେବାକୁ ।"

"ତେବେ ମୁଁ ଆଉ କ'ଣ କରିପାରିବି । ଋଣର ସୁଧହାର ବଢ଼ାଇ ଦିଅ ।"

"ସୁଧହାର ବଢ଼ାଇବାରେ ଲାଭ ବା କ'ଣ ? ତୁମେ ଯଦି ତାହା ଫେରାଇ ପାରିବନି । ତମ ଜମିଦାରୀର କିଛି ଅଂଶ ସେ ବାବଦକୁ ମୋତେ ଦେଇପାରିବ ।"

"ତୁମର ଯାହା ଦାବି, ମୋର ବର୍ଷସାରାର ଆୟରୁ ମୋ ଜମିଦାରୀର ଏକ ଅଣା ଆୟ ତମେ ନେଇପାର ।"

"ନା, ମୁଁ ଜମିଦାରୀର ଅଂଶ ନୁହେଁ, ଜମିଦାରୀର କେତେ ଖଣ୍ଡ ଗାଁ ମାତ୍ର ନେବି । ତମ ଜମିଦାରୀର ସେଇଟା ଦୁଇଅଣା ଅଂଶର ଦାମ୍ ହେବ ।"

"ଏଇଟା ତ ଅତି ବେଶୀ ହୋଇଯାଉଚି । ଏମିତି ହେଲେ ମୋ ପୈତୃକ ସମ୍ପତ୍ତିରୁ କିଛି ଅଂଶ ନଷ୍ଟ ହୋଇଯିବ ।"

"ମୋ ଋଣ ଯେତେ ଶୀଘ୍ର ସୁଝିବ, ସେତେ ଶୀଘ୍ର ସେ ପୈତୃକ ସମ୍ପତ୍ତି ହସ୍ତାନ୍ତରରୁ ରକ୍ଷା ପାଇବ ।"

"ଏଥିରୁ ଆଉ ରକ୍ଷା ମିଳିବାର ନାହିଁ କାରଣ ତମ ମନରେ ଦୟାମାୟା ବୋଲି କିଛି ନାହିଁ ।"

"ସତୁରୀ ହଜାରରୁ ଷାଠିଏ ହଜାରକୁ ମୋ ପାଉଣା କମାଇଦେଲି । ସେତିକି ଯାହା ତୁମେ ମୋଠାରୁ ପାଇବ ।"

"ମୋ ହାତରେ ତ ପଇସା ନାହିଁ । ଷାଠିଏ ହଜାର ଟଙ୍କା ମୂଲ୍ୟର ଗାଁ ତମକୁ ଦେବାକୁ ସ୍ଥିର କରିଛି ।" "ଯଦି ଆଉ ବଳକା ଦଶହଜାର ଟଙ୍କା ମୋତେ ଦେଇ ପାରିବ ତ " ସୋମନାଥ ବାବୁ କହିଲେ ।

"ସେ କଥା ମୁଁ ପାରିବି । କିଂତୁ ବର୍ଷକୁ ତା'ର ସୁଧ ୩୬ ଶତାଂଶ ନେବି ।

ଦୁଇବର୍ଷରେ ଚକ୍ରବୃଦ୍ଧି ହେବ । ଏଇ ସର୍ତ୍ତରେ ମୁଁ ରାଜି ।

ସୋମନାଥ ବାବୁ କୃପାର ଏ ସର୍ତ୍ତରେ ରାଜି ପଡ଼ିଲେ । ଶୀଘ୍ର କୃପାକୁ କଟକ ଫେରିଯିବାକୁ ପଡିବାରୁ ଏ ସଂକ୍ରାନ୍ତ ସବୁ କଥା ଟିକିନିଖି କରି ଠିକ୍ ହୋଇପାରିଲା ନାହିଁ । ଦୟାନିଧିଙ୍କୁ ତା ତରଫରୁ  କଥା ଛିଡ଼ାଇବାକୁ ଦାୟିତ୍ୱ ଦେଇ କୃପା କଟକ ଗଲା । ସେମନାଥବାବୁ ଏସବୁ ଝାମେଲା ତୁଟେଇବା ନିମନ୍ତେ ଗୋଟାଏ ଓକିଲ ନିଯୁକ୍ତ କଲେ । ଶେଷରେ କଥାଟି ଛିଡ଼ିଲା । କୃପା ଛଅଟି ଗାଁର ମାଲିକାନା ପାଇଲା । ତା'ର ଋଣ ବାବଦକୁ ଏତକ ପାଇ ସେ ଖୁବ୍ ଖୁସି ହେଲା । ସୋମନାଥ ବାବୁଙ୍କୁ ଆଉ ଦଶହଜାର ଟଙ୍କା ସୁଧରେ ଦେଲା ।  କାରଣ କୃପା ଜାଣିଥିଲା ଯେ ଏ ଟଙ୍କା ସୋମନାଥ ବାବୁ କେବେ ସୁଝିପାରିବେ ନାହିଁ । ତେଣୁ ତାଙ୍କ ସାରା ଜମିଦାରୀର ମାଲିକାନା ଧୀରେ ଧୀରେ ତା' ହାତକୁ ଆସିଯିବ ।

ମାଂକଡ଼ର ଭାଷା ବୋଲି ତା'ର ପିଲାଦିନେ ସୋମନାଥ ଯାହା କହିଥିଲା ସେ କଥା ତା'ର ମନେ ଥିଲା । ତେଣୁ ସେ ଅପମାନର ପ୍ରତିଶୋଧ ନେଇ ପାରିଥିବାରୁ କୃପାସିନ୍ଧୁ ଖୁବ୍ ଖୁସିଥିଲା ।

ସେ ବର୍ଷ ଅକ୍ଟୋବରରେ କୃପା ଗୋଟାଏ ଦିନରେ ତିନିଟି ଚିଠି ପାଇଲା । ପ୍ରଥମ ଚିଠିଟି ଦୟାବାଳାର ସ୍ୱାମୀ ଲେଖିଥିଲା । ଦୟାବାଳାର ପୁଅଟିଏ ହୋଇଛି । ମା' ଓ ପୁଅ ଭଲ ଅଛନ୍ତି ।

ଦ୍ୱିତୀୟ ଚିଠି କୃପାବାଳାର ସ୍ୱାମୀ ଲେଖିଥିଲା । ତା'ର ବି ଝିଅଟିଏ ହୋଇଚ଼ି । ମା ଓ ଝିଅ ଦୁହେଁ ଭଲ ଅଛନ୍ତି ।

ତୃତୀୟ ଚିଠିଟି ହରିବନ୍ଧୁର ଥିଲା । ସେ ଲେଖିଥିଲା ମହାମାନ୍ୟ ସରକାର ଘୋଷଣା କରିଛନ୍ତି ଯେ ଝିଅ ଚଉଦବର୍ଷର ହେଲେ ହିଁ ତା'ର ବିବାହ କରାଯାଇପାରିବ ।

ପ୍ରଥମ ଚିଠି ଓ ଦ୍ୱିତୀୟ ଚିଠି ପଢ଼ିସାରି ସେ ଖୁବ୍ ସନ୍ତୋଷ ଲାଭ କଲା । ପ୍ରତି ଉତ୍ତରରେ ସେମାନଙ୍କୁ ଶୁଭ କାମନା ଜଣାଇ ଏବଂ ନାନା ଉପଦେଶମାନ ଦେଇ ଲମ୍ବା ଚିଠିଟି ମାନ ସେ ପ୍ରତ୍ୟେକଙ୍କୁ ଲେଖିଲା ।

ତୃତୀୟ ଚିଠି ପଢ଼ି ସେ ହସିବ କି କାନ୍ଦିବ କିଛି ଭାବିପାରିଲା ନାହିଁ । ରାଜନୀତି ଛାଡ଼ିବାକୁ ସେ ପ୍ରାଣପଣେ ଚେଷ୍ଟା କରିଆସିଛି । ତେଣୁ ତାର ବନ୍ଧୁବର୍ଗ ଓ ପ୍ରିୟ ପରିଜନ ସମସ୍ତେ ତା' ସହ ରାଜାନିତି ସଂପର୍କରେ କଥାବାର୍ତ୍ତା କରିବା ଅନୁଚିତ୍ ବୋଲି ଭାବି ନେଇଥିଲେ । ତେଣୁ ଏ ଖବରଟା ତା' ପାଇଁ ନୂଆ ଥିଲା ।

ବିଧାନସଭାରେ ଏ ବିଷୟରେ ବି ଆଲୋଚନା ହୋଇପାରେ ବୋଲି ତା'ର ଧାରଣା ନଥିଲା । ଏଇଟା ଗୋଟାଏ ଭଲ ଖବର ବୋଲି ସେ ଧରିନେଲା । କାରଣ ଅଳ୍ପ ବୟସରେ ବାହା ହେଲେ ମାଆ ମାନଙ୍କର କ'ଣ ହେଉଚି ସେ ନିଜେ ଅଂଗେ ଲିଭେଇଛି । ସେଥିପାଇଁ ତ ସେ କୃପାବାଳା ଓ ଦୟାବାଳାଙ୍କ ବିବାହ ପରେ ତାଙ୍କ ସ୍ୱାମୀ ସହ ରହିବାକୁ ନଦେଇ ଚଉଦ ବର୍ଷ ଯାଏ ନିଜ ଘରେ ରଖିଥିଲା । ତଥାପି ଖବରଟା ପାଇଁ ସେ ବ୍ୟସ୍ତ ହେଲା କାରଣ ଲୋକେ ନିଜେ ନିଜେ ଯାହା କରିପାରିଥାନ୍ତେ, ସେ କଥାରେ ସରକାରଙ୍କୁ ଲଜ୍ଜାଜନକ ଭାବେ ନାକ ପୂରେଇବାକୁ ପଡ଼ିଲା । ହେଲେ, ଆମ ଗାଉଁଲି ଲୋକଙ୍କ ମାନସିକତା ଯାହା, ଏ ନୀତି ସରକାରଙ୍କ ନିଜ ବିରୁଦ୍ଧରେ ଯିବ ବୋଲି କୃପାର ଭୟ ହେଲା । ତେଣୁ ସେ କଚେରୀ ଯାଇ ବୁଝାବୁଝି କରି ଜାଣିଲା ଯେ ଏ ଆଇନ୍ ସେ ବର୍ଷ ଏପ୍ରିଲ ପୂର୍ବରୁ ଲାଗୁ ହେବ ନାହିଁ ।

ତେଣୁ ଅବିବାହିତା ଝିଅ ଥିବା ଲୋକଙ୍କୁ, ଆଇନ୍ ଲାଗୁ ହେବା ପୂର୍ବରୁ ନିଜ ଝିଅଙ୍କୁ ବାହା ଦେବାକୁ ତାଙ୍କ ହାତରେ ଯଥେଷ୍ଟ ସମୟ ଥିଲା । କୃପା ଲକ୍ଷ୍ୟ କଲା, ଝିଅଙ୍କୁ ଶୀଘ୍ର ବାହା କରି ଦେଉଥିବା ଜାତି ଓ ସଂପ୍ରଦାୟ ଭିତରେ ହଟଚମଟ ଖେଳିଯାଇଛି । ବାହା ହେବାକୁ ଥିବା ଝିଅ ବାପାମାନେ ବର ଖୋଜି ବୁଲୁଛନ୍ତି । ବର ଥିବା ବାପାମାନେ ବେଶୀ ଯୌତୁକ ମାଗୁଛନ୍ତି । ମଧ୍ୟସ୍ଥମାନେ ସେମାନଙ୍କ କମିଶନି ବଢ଼ାଇ ଦେଉଛନ୍ତି ।

ହରିବନ୍ଧୁର ତିନି ପୁଅ ଓ ଦୁଇ ଝିଅ । ଦୁଇଟି ଯାକ ଝିଅ ଚଉଦବର୍ଷରୁ କମ୍ । ଦୟାନିଧିର ନାତିଟିଏ ଓ ନାତୁଣୀ ପାଞ୍ଚ ବର୍ଷର । ହରିବନ୍ଧୁ ଲେଖିଥିଲା ଯେ ଏହି ଏପ୍ରିଲ ପୂର୍ବରୁ ସେମାନଙ୍କ ବାହାଘର କରିବାକୁ ସେମାନେ ଉତ୍କଣ୍ଠିତ । ମାତ୍ର ବାହାଘର ହେଲେ ବହୁତ ଟଙ୍କା ଦରକାର ହେବ ।

କୃପା ଭାଇମାନଙ୍କୁ ଲେଖିଲା, ବାହାଘର ଯୋଗାଡ଼ ସବୁ ତା ଉପରେ ଛାଡ଼ିଦେବାକୁ । ଝିଅମାନଙ୍କ ପାଇଁ ଯୌତୁକ କମ୍ କରିବାକୁ ସେ ଚେଷ୍ଟା କରିବ ।

ଭାଇମାନଙ୍କ ସମ୍ମତି ପାଇଲା ପରେ ସେ ଅଫିସରେ ନିଜ ଘରର ଚାରିଜଣ ପୁତୁରା ବାହାହେବାକୁ ଅଛନ୍ତି ବୋଲି ଘୋଷଣା କରିଦେଲା । ତାପରେ ସେ ଲକ୍ଷ୍ୟ କଲା ଯେ କେତେ ଜଣ କିରାଣୀ, ଅନ୍ୟ ସରକାରୀ ଅଫିସର ନିଜ ନିଜ ଝିଅ ବାହାଘର ପାଇଁ ବର ଖୋଜିବାକୁ ଛୁଟି ନେଇ ଯାଇଛନ୍ତି । କେତେଜଣଙ୍କର ଛୁଟି ନାମଞ୍ଜୁର ହେବାରୁ, ସେମାନେ ଚାକିରୀରୁ ଇସ୍ତଫା ଦେଇ ମଧ୍ୟ ପଳେଇଛନ୍ତି ।

ଏମାନଙ୍କ ମତରେ ଝିଅ ବାହାଘର କରି ନପାରିବା ଠାରୁ ଚାକିରୀ ଛାଡ଼ିଦେବା ବରଂ ଭଲ ।

ତେଣୁ କୃପା ଯେବେ ଝିଅ ଘରୁ ନିଜ ପୁତୁରାଙ୍କ ପାଇଁ ପ୍ରସ୍ତାବ ପାଇଲା ସେ ମନ ଇଚ୍ଛା ଯୌତୁକ ମାଗିଲା ଏବଂ ଯୌତୁକ ଟଙ୍କାଟି ଆଗରୁ କିପରି ମିଳିବ ସେ ଚେଷ୍ଟାରେ ରହିଲା ।

ଚାରି ପୁତୁରାଙ୍କ ବାହାଘର ପାଇଁ ଯୌତୁକ ଟଙ୍କା ନେଇ ତିନିଟି ଝିଆରୀ ବାହାଘରରେ ସେ ତାହାକୁ ଖର୍ଚ୍ଚ କରିଦେଲା । ଏମିତି ଭାବେ ଯଥେଷ୍ଟ ଟଙ୍କା ଦେଇ ସେ ନିଜ ଝିଆରୀମାନଙ୍କ ବାହାଘର ଭଲ ଭଲ ଜାଗାରେ କରିଦେଲା । ପୁତୁରାମାନେ ଆଣିଥିବା ଯୌତୁକ ଜିନିଷ ସବୁ ଝିଆରୀମାନଙ୍କୁ ବାଣ୍ଟିଦେଇ ଭଲରେ ସେମାନଙ୍କୁ ବିଦା କଲା ।

ଏମିତି ଭାବେ ସେ ଚାରିଟି ପୁତରା ଓ ତିନି ଝିଆରୀଙ୍କର ବାହାଘର ଖର୍ଚ୍ଚ ନିଜେ ତୁଲାଇ ଦେଲା ।

## ଅଷ୍ଟବିଂଶ ପରିଚ୍ଛେଦ

୧୯୩୦ ମସିହାର ଆରମ୍ଭରେ ବିଦ୍ରୋହ ପୁଣି ନୂଆ କରି ଜୋରସୋର୍‌ରେ ଆରମ୍ଭ ହୋଇଗଲା । କୃପା ନିଜର ନିୟମାନୁସାରେ ସେ ଦିଗକୁ କାନ ଦେଲା ନାହିଁ କି କିଛି ଆଗ୍ରହ ଦେଖାଇଲାନି । ମାର୍ଚ୍ଚ ମାସ ବେଳକୁ ଲୁଣ ମାରିବା ନେଇ ହଟ୍ଟଗୋଳ ଜବର ହେଲା । ଶେଷରେ, କୃପାର ମନ ଏ ଦିଗରେ ମୁହାଁଇଲା । କାରଣ ଲୁଣମରା ଆନ୍ଦୋଳନ କଥା ଅଳ୍ପ ବହୁତେ ତାକୁ ଜଣାଥିଲା ।

ଦିନେ ସେ ନଈକୂଳରେ ବୁଲୁଥାଏ ତ ଜଣେ ଗାନ୍ଧୀଟୋପି ବାଲାଙ୍କୁ ସେଠାରେ ଭେଟିଲା । ଆଗରୁ ସେ ତାଙ୍କୁ ଚିହ୍ନିଥିଲା । ଏ ଅଞ୍ଚଳରେ ସେ ଜଣେ ବଡ଼ ନେତା । ତାଙ୍କ ପାଖକୁ ଯାଇ କୃପା ଲୁଣମରା ଆନ୍ଦୋଳନ ବିଷୟରେ ପଚାରିଲା ।

ସେ କହିଲେ, "ଏ ବେଆଇନ୍ ଲୁଣମରା ଓ ସ୍ୱରାଜ ଭିତରେ କ'ଣ ସଂପର୍କ ଅଛି, ମୁଁ କିଛି ବୁଝିପାରୁ ନାହିଁ ।"

କାଠଯୋଡ଼ି କୂଳରେ ବସି ସମୁଦ୍ର ଆଡୁ ବହୁଥିବା ସତେଜ ପବନ ଉପଭୋଗ କରୁଥିବା ବେଳେ, ନେତା ଜଣକ ବହୁତ କିଛି କଥା ବଖାଣି ବସିଲେ ।

ମହାତ୍ମାଗାନ୍ଧୀ ଆଦେଶ ଦେଇଛନ୍ତି ଯେ, ଆମେ ଯେତେ ଇଚ୍ଛା ସେତେ

ବେଆଇନ୍ ଲୁଣ ମାରି ଖାଇବୁ । ତାହାହେଲେ ସରକାରଙ୍କ ଏକଚାଟିଆ କାରବାର ଭାଂଗିଯିବ ଏବଂ ଆୟ ମଧ୍ୟ କମିଯିବ । ଇଂରେଜମାନେ ତଡ଼ା ଖାଇ ଚାଲିଯିବେ ଓ ଆମେ ସ୍ୱରାଜ ପାଇବୁଁ ।

ହସି ପକେଇ କୃପାସିନ୍ଧୁ କହିଲା, "ବାବୁ ମୁଁ ବାଲେଶ୍ୱର ଓ କଟକ ଜିଲ୍ଲାର ବହୁତ ଜାଗା କଲେକ୍ଟରଙ୍କ ସଂଗେ ଯାଇ ବୁଲିଛି । ମୁଁ ନିଶ୍ଚିତ ଭାବେ କହିପାରେ ଯେ ସବୁ ସମୁଦ୍ର କୂଳିଆ ଗାଁ ଓ ମୁହାଁଣ ପାଖରେ ଯେଉଁଠି ପାଣି ଲୁଣି ଥାଏ, ସେଠାରେ କେଉଟମାନେ ଲୁଣ ମାରନ୍ତି । ସେମାନେ ସବୁଦିନ ସେମିତି କରୁଛନ୍ତି ଓ କରିବେ ମଧ୍ୟ । ଥରେ ଥରେ ସାହେବମାନଙ୍କ ନଜରରେ ସେକଥା ପଡ଼େ । କେଉଟମାନେ ଗରୀବ ବୋଲି ସେମାନେ ଜାଣନ୍ତି ! ତେଣୁ କଦବା କେମିତି କେହି ବଦମାସ କେଉଟ ବିରୋଧରେ କାର୍ଯ୍ୟାନୁଷ୍ଠାନ ହୁଏ, ସମସ୍ତଙ୍କ ଉପରେ ନୁହେଁ । ଯଦି ଲୁଣମାରି ସ୍ୱରାଜ ଆଣିହେବ ତ ଏଇ କେଉଟମାନେ କେବେଠୁଁ ସ୍ୱରାଜ ଆଣିସାରନ୍ତେଣି ।"

"ଶୁଣ ବାବୁ, କେଉଟମାନେ କେବଳ ନିଜର ବ୍ୟବହାର ପାଇଁ ଲୁଣ ମାରୁଛନ୍ତି । ତେଣୁ ସେମାନଙ୍କର ସେମିତି କିଛି ସାର୍ବଜନୀନ ଆଦର୍ଶ ନାହିଁ । ସେମାନେ ବି ଲୁଚାଛପାରେ ଲୁଣ ତିଆରି କରନ୍ତି । ମହାତ୍ମାଜୀ ସମୁଦ୍ରକୂଳକୁ ଶହ ଶହ ସମର୍ଥକ ମାନଙ୍କ ସହିତ ଯାଇ ସରକାରଙ୍କ ସାମ୍ନାରେ ଲୁଣ ମାରୁଛନ୍ତି । ଏଥିଦ୍ୱାରା ସରକାରଙ୍କର ଆୟ ଉପରେ ପ୍ରଭାବ ପଡୁଛି । ଏ କାର୍ଯ୍ୟ ଦ୍ୱାରା ଗୋଟାଏ ଅଦ୍ଭୁତ ଆତ୍ମତ୍ୟାଗ ଓ ଶହୀଦ ମନୋଭାବ ନିହିତ ଅଛି ।"

"କିଛି ବେଆଇନ୍ କାମ କରି ଜୋରିମାନା ଦେବା ତ ଗୋଟାଏ ଶହୀଦ ମନୋବୃତ୍ତି ନିଶ୍ଚୟ ।" କୃପାସିନ୍ଧୁ ହସି ଉଠି ଥଟ୍ଟାରେ କହିଲା ।

ତା' ମତରେ ଏ ବିଦ୍ରୋହ ଆମ ବିଦ୍ରୋହ ଠାରୁ ମଧ୍ୟ ନଗଣ୍ୟ । ନଗଣ୍ୟ ହେଉ ବା ନହେଉ, ବାଜେ କଥାଟିଏ ନିଶ୍ଚୟ । ଲୁଣମରା ବିଦ୍ରୋହ ଚାଲୁ ରହିଲା ଏବଂ ମେ' ମାସରେ ଗାନ୍ଧୀ ମହାଶୟ ଗିରଫ ହୋଇଗଲେ । ଆନ୍ଦୋଳନ କିନ୍ତୁ ଚାଲୁରହିଲା । ଅଗଷ୍ଟ ଆସିଲା – ବିଦ୍ରୋହ ଚାଲୁ ରହିଥାଏ । ସର୍ବସାଧାରଣଙ୍କ ଉପରେ ଏହାର ଏକ ଖରାପ ପ୍ରଭାବ ପଡୁଥାଏ ।

ଅଗଷ୍ଟ ମାସରେ ଦିନେ କୃପାସିନ୍ଧୁ କଲେକ୍ଟର ସାହେବଙ୍କ ପାଖକୁ କିଛି ଦରକାରୀ କାଗଜପତ୍ର ନେଇଯାଇଥାଏ । ସାହେବ ତାକୁ ସେଦିନ ସକାଳର ଖବରକାଗଜଟି ଦେଖାଇ କହିଲେ । "ଏଇଟା ପଢ, ଏ ବିଷୟରେ କ'ଣ ତମର ମତାମତ କୁହ ।"

କୃପାସିନ୍ଧୁ ଖବରରୁ ପଢ଼ିଲା ଯେ କଲିକତାର ପେଲିଟି ରେସ୍ତୋରାଁରେ

ଇଉରୋପୀୟ ମାନଙ୍କର ଗୋଟାଏ ବଡ଼ ସର୍ବସାଧାରଣ ସଭା ହୋଇଥିଲା । ରେସ୍ତୋରାଁ ସାରା ଲୋକ ଭର୍ତ୍ତି । ଯେଉଁମାନେ ସେ ଭିଡ଼ ଭିତରେ ଆଦୌ ପଶିପାରିଲେ ନାହିଁ, ସେମାନେ ରାସ୍ତା ଉପରେ ସରକାରୀ ଘରର ବାଡ଼ (ପାଚେ଼ରୀ) ଯାଏ ଭର୍ତ୍ତି ହୋଇଯାଇଥିଲେ ।

ସେଠାରେ କେତେଗୁଡ଼ାଏ ପ୍ରସ୍ତାବ ଆଗତ କରାଯାଇଥିଲା । ପ୍ରସ୍ତାବଟି ହେଲା, ପ୍ରଚାର ଓ ବେଆଇନ୍ ବିଦ୍ରୋହକୁ ଖୁବ୍ ଜୋର୍‌ଦାର ଭାବେ ମୁକାବିଲା କରାଯିବ ।

ଦ୍ୱିତୀୟ ପ୍ରସ୍ତାବଟି ହେଲା- ଭାରତ ସରକାରଙ୍କର ଆଇନ୍‌କାନୁନ୍‌କୁ ଉଠେଇ ଦେଇ, ତା ସ୍ଥାନରେ ମର୍ଲେମିଣ୍ଟୋଙ୍କର ୧୯୦୯ ଆଇନ୍ କାର୍ଯ୍ୟକାରୀ କରାଯିବ । ଦରକାର ପଡ଼ିଲେ, ଏହାର କିଛି ପରିବର୍ତ୍ତନ କରାଯାଇପାରେ ।

କୃପାସିନ୍ଧୁ କହିଲା, "ଏହା ତ ଆମ ପାଇଁ ଖୁବ୍ ଦରକାର ଥିଲା । ଆପଣ କ'ଣ ଭାବୁଛନ୍ତି ସରକାର ଏକଥା ବାସ୍ତବରେ କରିପାରିବେ ?"

"ମୁଁ ଭାବୁଚି, ପ୍ରକୃତରେ ସମସ୍ତେ ଏଇ କଥାଟି ଚାହିଁବେ ମାତ୍ର ସରକାର ଏମିତି କିଛି କରିପାରିବେ ବୋଲି ମୋର ବିଶ୍ୱାସ ହେଉ ନାହିଁ । ଦିନେ ନା ଦିନେ ଏ ନିୟମ ଅବଶ୍ୟ ହେବ । କିନ୍ତୁ ଏବେ ହୋଇପାରିବ ବୋଲି କହିହେବନି ।"

କୃପା କହିଲା, ମୋତେ ଯଦି ପଚାରିବେ ତ ମୁଁ କହିବି ଯେ ସରକାରଙ୍କୁ ନିନ୍ଦା କରିବାର ଯଥେଷ୍ଟ କାରଣ ରହିଛି । ଆମେ ଓଡ଼ିଆଙ୍କୁ ନିଜ ଦେଶରେ ଭଲରେ ରହିବାକୁ ଦିଆଯାଉନାହିଁ କାହିଁକି ? ଆମକୁ ସେଇ ପାଜି ବିଦେଶୀମାନଙ୍କ ସହ ଟକ୍କର ଦେବାକୁ ହେଉଚି କାହିଁକି ? ଯଦି ଏ ବଂଗାଳୀମାନେ ଆମ ମୁଣ୍ଡରେ ବିଷ ନ ପୂରାନ୍ତେ ତ ଆମ ଲୋକେ ଏସବୁ ଅଯଥା କଥାରେ ନାକ ପୂରାନ୍ତେ ନାହିଁ । ବିରକ୍ତି ପ୍ରକାଶ କରି ସାହେବ କହିଲେ, "ବାବୁ, ତୁମର ଇଂରେଜୀ ଭାଷାରେ ଏତେ ଦଖଲ ଅଛି ଦେଖି ମୁଁ ଆଶ୍ଚର୍ଯ୍ୟ ହେଉଛି ।"

"ଆଜ୍ଞା ମହାଶୟ, ମୋତେ ମୋର ଶବ୍ଦ ବାହୁଲ୍ୟ ପାଇଁ କ୍ଷମା କରିବେ । ଯେତେବେଳେ ବାହାର ପ୍ରବେଶକାରୀମାନଙ୍କ ଚାପରେ ଆମ ଦେଶର ଲୋକେ ଅତିଷ୍ଠ ହୋଇ ଉଠୁଛନ୍ତି ସେତେବେଳେ ମୁଁ ଧୈର୍ଯ୍ୟ ଧରି ପାରୁନାହିଁ । ଏଇ ସରକାରଙ୍କ ଉଦାସୀନତା ପାଇଁ ସେମିତି ସବୁ ଘଟୁଛି ସିନା ।"

"ତୁମେ କ'ଣ ନିଶ୍ଚିତ ଭାବେ କହୁଚ ଯେ ସବୁ କିଛି ସରକାରଙ୍କ ଦୋଷରୁ ଘଟୁଛି । ସର୍ବସାଧାରଣଙ୍କର ସେ ବିରାଟ ସଭାର ନିଷ୍କର୍ଷ କ'ଣ ହେଲା ତେଣୁ ଜାଣିବାଟା ନିହାତି ଜରୁରୀ ।"

"ଆଜ୍ଞା ସାର୍, ମୋତେ ଏ ବିଷୟରେ ଦୟାକରି ଟିକେ ଜଣାଇବେ ।"

"ପ୍ରତିଦିନ ଖବର କାଗଜ ପଢ଼ିଲେ ତୁମେ ସବୁ କିଛି ଜାଣିପାରିବ ।"

ଏଣିକି କୃପାସିନ୍ଧୁ ଖବରକାଗଜ ପଢ଼ିଲା ଓ ତା'ର ଫଳାଫଳ ସଂଗେ ସଂଗେ ମିଳିଗଲା । ସଭାର କିଛିଦିନ ପରେ, କଂଗ୍ରେସ କାର୍ଯ୍ୟକାରିଣୀ କମିଟି ଗୋଟାଏ ବେଆଇନ୍ ସଂଗଠନ ବୋଲି ଘୋଷିତ ହେଲା । ତା ବିରୁଦ୍ଧରେ ଖୁବ୍ ଜୋର୍‌ଦାର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଗଲା । କିଛିମାସ ଭିତରେ ବିଦ୍ରୋହ ପୂରାପୂରି ଥମିଗଲା । ବର୍ଷର ଶେଷ ବେଳକୁ କଂଗ୍ରେସ ମୃତପ୍ରାୟ ହୋଇଗଲା । ତାପରେ ଲର୍ଡ ଇର୍‌ଉଇନ୍ କିପରି ଏଇ ସଂଗଠନକୁ ପୁର୍ନଜୀବନ ଦେଲେ ଓ ସମ୍ମାନ ଓ ସାମର୍ଥ୍ୟର ଶୀର୍ଷ ଶିଖରେ ପହଞ୍ଚାଇଲେ ବା କିପରି ସାମୁଏଲ୍ ହୋଏରେ ଏହାକୁ ଧ୍ୱଂସ କରିବାକୁ ଚାହିଁଥିଲେ ଏବଂ ସେଥିରେ ବିଫଳ ହେଲେ । ସେସବୁ ଲେଖିବା ନିରର୍ଥକ । କାରଣ ଏ ଉପନ୍ୟାସର କାହାଣୀ ସହ ସେସବୁର କିଛି ସଂପର୍କ ନାହିଁ ।

ଏସବୁ ଝିନ୍‌ଝଟ୍ ସତ୍ତ୍ୱେ କୃପାସିନ୍ଧୁ ତା'ର କାମ ଅତି ଦକ୍ଷତାର ସହ କରି ଚାଲିଥିଲା ଓ ନିଜର ବ୍ୟକ୍ତିଗତ ଆୟ ମଧ୍ୟ ବଢ଼ାଇ ଚାଲିଥିଲା । ରାୟ ବାହାଦୂରଙ୍କ ସହ ତା'ର ବନ୍ଧୁତ୍ୱ ଓ ଯୋଗାଯୋଗ ନିରବଚ୍ଛିନ୍ନ ଭାବେ ଚାଲିଥିଲା । ସେ ତାକୁ କେବେ କେବେ ଖୁବ୍ ସାହାଯ୍ୟ ବି କରୁଥିଲେ ।

କୃପାସିନ୍ଧୁର ପଞ୍ଚାବନତମ ଜନ୍ମଦିନ ଆସୁଥାଏ । ନିୟମ ଅନୁସାରେ ସେ ଚାକିରୀରେ ରହିବ କି ପେନ୍‌ସନ ସହିତ ଅବସର ନେବ, ଏବେ ସେକଥା ଭାବିବାର ବେଳ । ନିଜ ସ୍ତ୍ରୀ ସହ ଏ ବିଷୟରେ ବିଚାର ବିମର୍ଷ କରିବାକୁ ସେ ଉଚିତ୍ ମଣିଲା ।

"ଦାଲେଶ୍ୱରର ସେଇ ଛୋଟ ଘରେ ନୂଆ ନୂଆ ବାହା ହୋଇ ଆମେ ବେଶ୍ ଭଲରେ ଥିଲୁଁ । ମୋର ସେଇଠି ରହିଯିବାକୁ ମନ ଥିଲା । ତାପରେ କଟକ ଆସି, ସାହେବଙ୍କ କୋଠୀ ପାଖ ଛୋଟ ଘରେ ବି ଶାନ୍ତିରେ ଥିଲୁଁ ବେଶ୍ କିଛି ବର୍ଷ । ଆମ ପିଲାମାନେ ବି ସେଇଠି ଜନ୍ମ ହେଲେ । ତମେ ମହାନଦୀକୁ ବନ୍‌ସୀ ପକେଇ ମାଛ ଧରିବାକୁ ଯାଅ । ଆମ ସାହେବ ସାଇବାଣୀ ବି ଆମ ପ୍ରତି ଦୟାଶୀଳ ଥିଲେ । ଆମ ପିଲାଙ୍କୁ ସେମାନେ ଖେଳନା ଆଦି ଦେଉଥିଲେ। କିନ୍ତୁ ଏ ଘରଟିରେ ରହିବା ପରଠାରୁ ଲାଗୁଚି, ଏଠା ଛାଡ଼ି ଆମକୁ ଯିବାକୁ ପଡ଼ିବ । ଆମେ ବି ଆଉ କାହିଁକି ସେ ଛୋଟ ମାଟି କାନ୍ଥର ଚାଳଘରେ ରହିବୁ ? ଆମର ତ ନିଜର ବିରାଟ ପକ୍କା ଘର ଅଛି । ତମେ ବି ବୁଢ଼ା ହେଲଣି । ତୁମେ ତୁମ ଘରେ ନିରାପଦ ଶାନ୍ତି ଭିତରେ ବଂଚିବା ଉଚିତ୍ ।"

ସ୍ତ୍ରୀର ଏକଥାଟି ଖୁବ୍ ବୁଦ୍ଧିମତ୍ତାର କଥା । କୃପା କହିଲା, "ଚାକିରୀଆ କି କୁକୁରିଆ । ତା'ର ନିରାପତ୍ତା କାହିଁ ? ସବୁବେଳେ ଉପରିସ୍ଥ ଅଫିସର ସେ କ'ଣ କରିନ୍ତି ନ କରିନ୍ତି ବୋଲି ତୋଡ଼ ଛାଡ଼ିବେ । ଯାପରେ ଘଟଣାର ମୋଡ଼ ବି ଅନ୍ୟ ବାଟରେ ଯାଇପାରେ ।"

"ଆହୁରି ଅନ୍ୟ କାରଣଟିଏ ବି ଅଛି । ମୁଁ ଗୋଟାଏ ଚାଷୀର ଝିଅ । ଗାଁରେ ବଢ଼ିକୁଢ଼ି ମଣିଷ ହୋଇଚି । ଧାନଜମି ଓ ସବୁଜ କ୍ଷେତ୍ର ମୋର ଅତି ପ୍ରିୟ । ଗୋରୁ ଗାଈ ଏବଂ ଏଲ ସବୁ ଗାଉଁଲି ଚିଜରେ ମୋର ଖୁସି ।

ସ୍ତ୍ରୀର କଥାରେ କୃପା ରାଜି ହେଲା ଏବଂ ପେନ୍‌ସନ୍ ନେଇ ଅବସର ନେବାକୁ ଅପିଲ କଲା । ତାପରେ ନିଜର ଆସ୍ଥାନ ଏବଂ ଯୋଜନା ମାନଙ୍କର ଏକ ଆକଳନ କଲା । ଜମିଦାରୀ ସମ୍ପତ୍ତିରୁ ସେ ବର୍ଷକୁ ଖଜଣା ବାବଦକୁ ପାଞ୍ଚହଜାର ଟଙ୍କା ପାଇବ । ତା ବାଦେ, ନିଜର ମଧ୍ୟ ପ୍ରାୟ ଶହେ ବିଘା ହେବ ଜମି ତା'ର ଅଛି । ସୋମନାଥ ବାବୁଙ୍କୁ ସେ ଦଶହଜାର ଟଙ୍କା ଋଣ ଦେଇଛି । ତାଙ୍କ ଜମିଦାରୀ ବନ୍ଧକ ରଖିବା ବାବଦକୁ ଏ ଋଣ । ଏସବୁ ବାଦ୍ ଦେଲେ ଅନ୍ୟାନ୍ୟ ବନ୍ଧକ ରଖିଥିବା ଚିଜ ବାବଦକୁ ମେ ଦଶହଜାର ସୁଧ ପାଇବ । ଅନ୍ୟ ସଂଚୟ ସବୁକୁ ସୁନାରୂପା ରୂପେ ନିରାପଦରେ ରଖି ଦେଇଛି । ପୁଅ ସାଧୁଚରଣ ସହାୟତାରେ ଜମିଦାରୀ ରକ୍ଷଣାବେକ୍ଷଣ ତା' ପାଇଁ ସୁବିଧାଜନକ ହେବ । ନିଜର ଚାଷବାସ ମଧ୍ୟ ସେ ବୁଝାବୁଝି କରିପାରିବ । ଏସବୁ ପାଇଁ କେତେଜଣ ମୂଲିଆ ଓ ହଳିଆ ନିଯୁକ୍ତ କରିବାକୁ ହେବ । ନିଜର ଫଳ ପରିବା ବଗିଚା ମାନଙ୍କର ଯତ୍ନ ବି ନେବାକୁ ହେବ ।

ସେଦିନ ଆସିଗଲା- ଯେଉଁଦିନ ଇଂଲିସ ଅଫିସ ଭିତରର ଲମ୍ବା ଟେବୁଲର ଗୋଟାଏ ମୁଣ୍ଡରେ କୃପା ଚେୟାର ଗ୍ରହଣ କଲା । ସବୁ କିରାଣୀମାନେ ଶେଷଥର ପାଇଁ ସେଇଠି ବସନ୍ତି । ତହିଁ ପରଦିନ କଟକରେ ଚାଲୁଥିବା ସେ ଧଡ଼ଧଡ଼ିଆ ଘୋଡ଼ାଗାଡ଼ିରୁ ଗୋଟାଏ ଭଡ଼ା କରି କୃପା ଯାଇ ସହରରେ ପରିଚିତ ସମସ୍ତଙ୍କ ଘର ବୁଲି ବୁଲି ବିଦାୟ ନେଇ ଆସିଲା ।

ସର୍ବପ୍ରଥମେ ସେ କଲେକ୍ଟର ସାହେବଙ୍କ ଘରକୁ ଗଲା । ବାରଣ୍ଡାଯାଏ ବାହାରି ଆସି ସାହବ ତାକୁ ପାଛୋଟି ନେଲେ ଏବଂ ହ୍ୟାଣ୍ଡସେକ୍ କଲେ ତା' ସହିତ ।

"ଏତେବର୍ଷର ବିଶ୍ୱସ୍ତ ଓ ନିଷ୍ପାପର ଚାକିରୀ ଜୀବନ ପରେ ତୁମେ ତୁମ ଗାଁର ଶାନ୍ତକାନ୍ତ ପରିବେଶରେ ସମ୍ମାନର ସହ ଜୀବନ ଅତିବାହିତ କରିବାକୁ ଯାଉଛ ତାହେଲେ, ନୁହେଁ ?"

କୃପାସିନ୍ଧୁ କହିବାକୁ ଚାହୁଁଥିଲା ଯେ ତା'ର ଗାଁର ଘର ପରିବେଶ ଏତେଟା ଶାନ୍ତକାନ୍ତ ନୁହେଁ । କିନ୍ତୁ କଥାଟା କହିବା ଉଚିତ୍ ହେବନି ବୋଲି ସେ କହିଲା- "ସାର୍ ଆପଣଙ୍କ ଦୟାରୁ ମୋତେ ମୋର ଯଥାଯଥ ପେନ୍‌ସନ୍ ତକ ମିଳିଯାଇଛି । ମୁଁ ଇଂଲିସ୍ ଅଫିସରେ ଆଉ ସେ କରୁଣାମୟ ରାଜସେବା କରିପାରିବି ନାହିଁ ସତ, ତେବେ ଆପଣ କେବେ ମୋତେ ଦରକାର କଲେ, ମୁଁ ନିଶ୍ଚୟ ଆପଣଙ୍କ ସେବାରେ ଆସିବି ।"

"ନିଶ୍ଚୟ । ତୁମେ କଟକ ଆସିଲେ, ମୋତେ ଦେଖା କରୁଥିବ । ତମର ଅବସର ପରେ ତମର ଦୀର୍ଘ ନିରାମୟ ସୁଖୀ ଜୀବନ ମୁଁ କାମନା କରୁଛି ।"

କୃପାସିନ୍ଧୁ ସେଇ ଧକଡ଼କଡ଼ ଗାଡ଼ିରେ ଯାଇ ବସିଲା ଓ ଡ୍ରାଇଭରକୁ କମିଶନରଙ୍କ ଅଫିସକୁ ଗାଡ଼ି ଚଳେଇବାକୁ କହିଲା । କାଣ୍ଟନମେଣ୍ଟରୋଡ୍ ବାଟରେ ଅଟକି ଅଟକି ଯାଇ ସେଠାରେ ଥିବା ଅନ୍ୟ ସାହେବ ମାନଙ୍କୁ ମଧ୍ୟରେ ଦେଖାକରି ଆସିଲା । ଫେରିବା ବେଳେ ଗଳିର ମୋଡ଼ ପାଖରେ ପହଞ୍ଚିବା ବେଳକୁ କୃପା ତା'ର ମନ ପରିବର୍ତ୍ତନ କରି ଡ୍ରାଇଭରକୁ ଦୁର୍ଗର ଅଧାଭଂଗା ଗେଟ୍ ଦେଇ କ୍ଲବ ଘର ଆଡକୁ ଗାଡ଼ି ନେବାକୁ କହିଲା ।

କ୍ଲବ ହାଉସ୍ ଠାରେ ଓହ୍ଲେଇ ପଡ଼ି ସେଠାର କିରାଣୀ ଠାରୁ ମଧ୍ୟ ସେ ବିଦାୟ ନେଇ ଆସିଲା । ଏଇ ଲୋକଟିକୁ ସେ ଭଦ୍ରଲୋକ ବୋଲି ଗୁରୁତ୍ୱର ସହ ସମ୍ମାନ ଦେଉଥିଲା। ସାହେବମାନଙ୍କ ସହ ଟୁର୍‌ରେ ଗଲା ବେଳେ ତାଙ୍କ ସହ ତା'ର ପରିଚୟ ହୋଇଥିଲା । ତାଙ୍କୁ 'ଗୁଡ଼ ବାୟ' କହି ଚାଲି ଚାଲି ଯାଇ ସେ ପାର୍କ ଆଡ଼େ ଆଖିବୁଲେଇ ନେଲା । ସେଠାରେ ସୁନ୍ଦର ସୁନ୍ଦର ଗଛ ଦ୍ୱାରା ବେଷ୍ଟିତ ଗଡ଼ଖାଇଟି ଦୁର୍ଗକୁ ଘେରି ରହିଥିଲା । ପାର୍କରେ ଥିବା ହରିଣ ପଲମାନଙ୍କଠୁ ମଧ୍ୟ ବିଦାୟ ନେଲା । ତାପରେ ସେ କମିଶନରଙ୍କ ଘରକୁ ଗଲା । ବାରଣ୍ଡା ଉପରକୁ ଉଠି ତାଙ୍କ ପାଖକୁ ଯାଇ କମିଶନରଙ୍କୁ ଭେଟିଲା । ସେ କୃପାକୁ ଖୁବ୍ ଆଦର ଓ ଶ୍ରଦ୍ଧାର ସହ ବିଦାୟ ଦେଲେ । ଟୁର୍‌ରେ ଗଲେ କୃପାର ଘରକୁ ଯାଇ ତାକୁ ଭେଟିବେ ବୋଲି କହିଲେ ।

ଏଥର ରାତ୍ରିଭୋଜନ ପାଇଁ କୃପାସିନ୍ଧୁ ଘରକୁ ଲେଉଟି ଆସିଲା । ଚିହ୍ନା ପରିଚିତ, ସାଂଗସାଥୀ ସବୁରିଙ୍କ ଠାରୁ ବିଦାୟ ନେବାକୁ ଇଚ୍ଛା କରି କୃପାସିନ୍ଧୁ ଚାରୁବାଳାକୁ ସାଂଗରେ ନେଇ ବାହାରିଲା ।

ସେମାନେ କଲେକ୍ଟର କୋଠୀ ପାଖ ସେ ଛୋଟ ଘରଟିକୁ ଗଲେ ଯେଉଁଠି ସେମାନଙ୍କର ବହୁ ସୁଖକର ଦିନ ସବୁ କଟିଥିଲା । ମହାନଦୀର କୂଳେ କୂଳେ ମଧ୍ୟ

ଚାଲି ଚାଲି ଗଲେ; ତା'ର ଅବବାହିକା ଆଡ଼େ ଆଖି ପକେଇଲେ । ଏଇ ଜାଗାରେ କୃପାସିନ୍ଧୁ ନିତିନିତି ବନ୍‌ସୀ ପକାଉଥିଲା । ଦୂର ପାହାଡ଼କୁ ଦେଖିଲେ । ଯୋବ୍ରା ଆଡ଼େ ଯାଇ ସେମାନେ ନୌକା ଓ ସେଠାର କାରଖାନା ସବୁକୁ ପୁଣି ବୁଲି ଦେଖିଲେ। ସେଇ ସଂଧ୍ୟାଟି ଥିଲା ସେମାନଙ୍କ କଟକ ରହଣୀର ଶେଷତମ ସଂଧ୍ୟା । ସେ ଏଯାଏଁ କନିଷ୍ଠ କିରାଣୀ କି ଅନ୍ୟ କିରାଣୀଙ୍କ ଠାରୁ ବିଦାୟ ନେଇ ନଥିଲା । କାରଣ ସେ ନିଜେ ଜଣେ ବଡ଼ ଅଫିସର । ବଡ଼ ଅଫିସର ସାନମାନଙ୍କୁ ବିଦାୟ ଦିଅନ୍ତି ନାହିଁ । ସାନମାନେ ବଡ଼ମାନଙ୍କୁ ବିଦାୟ ଦିଅନ୍ତି । ସେମାନେ ଆସି କୃପାସିନ୍ଧୁର ଦୀର୍ଘ ଜୀବନ କାମନା କଲେ ।

ଯେଉଁ ବୁଢ଼ୀ ଚାକରାଣୀଟି କୃପା ଘରେ କାମ କରୁଥିଲା ସେଦିନ ରାତିରେ ତା'ର ଦରମାପତ୍ରର ହିସାବ କୃପା କରିଦେଲା । ଦରମା ସହ ଗାଟାଏ ଗାଈ ମଧ୍ୟ ତାକୁ ଉପହାର ସ୍ୱରୂପ କୃପା ତାକୁ ଦେଲା । ତାପରେ ପୁଣି ସେଇ ଧଡ଼ଧଡ଼ିଆ ଗାଡ଼ିଟି ମଗାଇ ସେଥିରେ ତା'ର ଲଗେଜପତ୍ର ଭରି ଗାଡ଼ି ଭିତରେ ସ୍ୱାମୀସ୍ତ୍ରୀ ଦୁହେଁ ଖୁନ୍ଦିଖାନ୍ଦି ହୋଇ ବସି ଷ୍ଟେସନ ଗଲେ ଓ ପୁରୀ ହାଓଡ଼ା ଏକ୍ସପ୍ରେସ୍‌ରେ ଚଢ଼ିଲେ ।

ବାଲେଶ୍ୱରରେ କେତେ ଘଣ୍ଟା ଭିତରେ ଗାଡ଼ି ପହଞ୍ଚିଗଲା । କୃପାସିନ୍ଧୁର ଦୁଇଟି ପୁଅ ସେଠାରେ ବଳଦଗାଡ଼ି ଧରି ସେମାନଙ୍କ ପାଇଁ ଅପେକ୍ଷା କରି ରହିଥିଲେ । ବାକି ରାତିଟା ସାରା ସେମାନେ ବଳଦଗାଡ଼ିରେ ବସି ସକାଳ ହେବା ବେଳକୁ ନଈଘାଟ ଠାରେ ପହଞ୍ଚିଗଲେ ।

ନଈଘାଟରେ ସେ ପୁରୁଣା ନାଉରୀ ଆଉ ନଥିଲା । ଏବେ ତା'ର ପୁଅ ନାଆ ଚଳାଉଥିଲା । ନିଜ କୁଡ଼ିଆ ଭିତରୁ ବାହାରି ଆସି ସେ କୃପାସିନ୍ଧୁକୁ ଅଭିବାଦନ ଜଣେଇଲା ।

ନଈର ସେପାରିରେ କୃପାସିନ୍ଧୁର ଭାଇମାନେ ତା'ପାଇଁ ଅପେକ୍ଷା କରି ରହିଥିଲେ । ଜନାର୍ଦ୍ଦନ ଜେଠୀର ପୁଅ ମଧ୍ୟ ସେମାନଙ୍କ ସହ ଆସିଥିଲା । ସମସ୍ତେ କୃପାସିନ୍ଧୁକୁ ଆଦରରେ ଅଭ୍ୟର୍ଥନା କରିନେଇଗଲେ ।

ଏବେ ନିଜର ପୈତୃକ ଜାଗା ଯେଉଁଠି ବାପା ଜେଜେମାନେ ରହିଥିଲେ ସେଠାକୁ ଚାଲ । ଅନ୍ୟମାନେ ମଧ୍ୟ ସଶ୍ରଦ୍ଧ ଥଟ୍ଟାର ସହ ତାକୁ ପାଛୋଟି ନେଲେ ।

ନିଜର ସୁନ୍ଦର ନୂଆ ଘରକୁ ଯାଇ ଚାରୁ ପ୍ରଥମେ ସ୍ତ୍ରୀଲୋକଙ୍କ ରହିବା ଘର ଭିତରକୁ ଚାଲିଗଲା । କୃପା ମଧ୍ୟ ଗାଧେଇ ପାଧୋଇ ଯାଇ ସେ ଘରେ ପହଞ୍ଚି ଗଲା ଓ ସ୍ତ୍ରୀଲୋକ ଓ ପିଲାଙ୍କୁ ସେଠାରେ ଭେଟିଲା । ସେଠାରେ ହରିବଂଧୁର ସ୍ତ୍ରୀ, ତାର

ଦୁଇବୋହୂ ଓ ନିଶିବାଳା ତାକୁ ପ୍ରଣାମ କରିବାକୁ ଅପେକ୍ଷା କରି ରହିଥିଲେ । କୃପା ଆସିଯିବାରୁ ହରିବଂଧୁର ସ୍ତ୍ରୀ ନିଜ ମୁହଁରେ ଓଢ଼ଣା ଟାଣିଦେଲା, କାରଣ ବଡ଼ଭାଇକୁ ଓଢ଼ଣା ଟାଣିବା ଓଡ଼ିଆ ସଂସ୍କାର । ଝିଅମାନଙ୍କର ଚାକରାଣୀ ଦୁଇଟି ମଧ୍ୟ ସେଠାକୁ ଆସିଥିଲେ । କୃପା ଓ ଚାରୁକୁ ଦେଖି ସେମାନେ ଖୁବ୍ ଖୁସି ହୋଇଗଲେ । କାରଣ ଚାରୁବାଳା ସେମାନଙ୍କୁ ଖୁବ୍ ଭଲରେ ରଖିଥିଲା । ଅନ୍ୟମାନଙ୍କ ପରି ଲୁହାରଡ଼ରେ ପିଟି ସେମାନଙ୍କ ଭୁଲ୍ ପାଇଁ କେବେ ଦଣ୍ଡ ଦେଉନଥିଲା ।

ସେଠାର ସବୁ ସ୍ତ୍ରୀମାନେ ସେମାନଙ୍କୁ ଅଭ୍ୟର୍ଥନା କରି ପାଛୋଟି ନେଲେ ।

ପିଲାମାନଙ୍କ ଭିତରୁ କେତେଜଣ ତାକୁ ଭୟରେ ଓ ଆନନ୍ଦରେ ଚାହିଁରହିଲେ । ସେମାନେ କୃପାର ପକେଟ ଅଣ୍ଡାଳି ପକେଇଲେ । ସେଦିନ ସଂଧ୍ୟାରେ ଓ ପରଦିନ ସକାଳେ ଗାଁର ଲୋକମାନେ ଆସି ତାକୁ ଦେଖାକଲେ । କାରଣ କୃପା ଏବେ ଗାଁର ଜଣେ ଗଣ୍ୟମାନ୍ୟ ବ୍ୟକ୍ତି । ଚାରୁବାଳା ଖୁବ୍ ଶୀଘ୍ର ଘରର ମାଲିକାଣୀ ଦାୟିତ୍ୱ ସମ୍ଭାଳି ନେଲା । ବଡ଼ ହେଉ ବା ଛୋଟ ଘର, ଘର ଚଳେଇବାରେ ଚାରୁବାଳା ତା'ର ପ୍ରବୀଣତା ପ୍ରମାଣିତ କଲା । ବୋହୂମାନଙ୍କୁ ମଧ୍ୟ ନୂଆ ନୂଆ ରନ୍ଧା ଶିଖେଇଲା ।

କୃପାସିନ୍ଧୁ ନିଜର ପିଲା ସ୍ତ୍ରୀ ନାତିନାତୁଣୀ ଓ ବିଧବା ଝିଅ ସହିତ ଗାଁରେ ବାକି ଜୀବନଟି କଟେଇବାରେ ଲାଗିଲା । ମଝିରେ ମଝିରେ କ୍ଷେତକୁ ଗଲାବେଳେ ସେ ତାର ଭାଇମାନଙ୍କ ସହ ଦେଖା କରୁଥିଲା । କାରଣ, ସେ ପୁରୁଣା ମାଟିଚାଳ ଘରର ସ୍ମୃତି ସେ ମନରୁ ପାଶୋରି ପାରୁନଥିଲା ।

ପ୍ରତିମାସ ବାଲେଶ୍ୱର ଯାଇ ସେ ତାର ପେନ୍‌ସନ ଟଙ୍କା ଧରି ଆସୁଥିଲା । ଟଙ୍କାଟାର ପରିମାଣ ଏତେ କମ୍ ଯେ, ତାହାକୁ ଆଣିବାକୁ ଯିବାର କଷ୍ଟ ଥିଲା ଯଥେଷ୍ଟ ବେଶୀ । ମାତ୍ର ସେ ତା'ର ପରିଚିତ ପ୍ରିୟ ଦୃଶ୍ୟପଟ୍ଟ ଓ ପ୍ରିୟ ପରିଚିତ ଅଫିସ, ଅଫିସର ଓ କିରାଣୀଙ୍କୁ ସେଠାରେ ଭେଟି ଖୁସି ହେଉଥିଲା । ପ୍ରତ୍ୟେକ ଥର ବାଲେଶ୍ୱର ଗଲେ ସେ କଲେକ୍ଟରଙ୍କୁ ଭେଟୁଥିଲା ଓ ତାଙ୍କ ଟୁର୍ ବେଳେ ନିଜ ଗାଁରେ ପାଦ ପକେଇବାକୁ ଅନୁରୋଧ କରୁଥିଲା ।

ସେ ଯେତେବେଳେ ଏପ୍ରିଣ୍ଟିସ୍ ଥିଲା ଓ ପଇସା ଆୟ କରିବାକୁ ଲାଳାୟିତ ହୋଇ କିପରି ବଡ଼ଲୋକରେ ଗଣ୍ୟ ହେବ ଓ ସମସ୍ତଙ୍କର ସମ୍ମାନ ଅର୍ଜନ କରିବ, ସେ ବିଷୟ ତା'ର ସେଠାରେ ମନେ ପଡୁଥିଲା ।

ଏବେ ସେ ଅନୁଭବ କଲା ଯେ, ସେସବୁ ଇଚ୍ଛା ତାର ଏବେ ପୂରଣ ହୋଇପାରିଛି ।

## ଊନତ୍ରିଂଶ ପରିଚ୍ଛେଦ

ନିଜର ସ୍ଥାୟୀ ଘରେ ଚଳିବାରେ ଅଭ୍ୟସ୍ତ ହେବାକୁ କୃପାସିନ୍ଧୁକୁ ବେଶୀ ସମୟ ଲାଗିଲା ନାହିଁ । ଜଣେ ଉଚ୍ଚଜାତିର ହିନ୍ଦୁ ପକ୍ଷରେ ନିଜ ଜାତିର ଆଦବ କାଇଦା ଓ ସଂସ୍କାର ମାନି ଚଳିବାକୁ ବେଶୀ ସରଞ୍ଜାମ ଲୋଡ଼ା ହୁଏ ନାହିଁ । ଟେବୁଲ, ଛୁରି, ଫର୍କ, ଚାମଚ କଣ୍ଟା ଏସବୁର ଆବଶ୍ୟକତା ତ ଆଦୌ ନଥାଏ । କେତେଖଣ୍ଡ ପିତଳ ବାସନକୁସନ, କଂସା ଗିଲାସ, ବିଭିନ୍ନ ମାପର ନୋଟା ଓ ରୋଷେଇ ପାଇଁ ବଡ଼ ଲୁହା କରେଇ, ମସଲା ବାଟିବାକୁ ଶିଳ, ଶିଳପୁଆ ଇତ୍ୟାଦି ସରଞ୍ଜାମ ଦରକାର । ମାଟି ତିଆରି ଅଧାପୋଡ଼ା ଛୋଟ ଥାଳିରେ ଭାତ ବଢ଼ାହୁଏ । ଥରେ ସେଥିରେ ଖାଇସାରିବା ପରେ ସେଇଟିକୁ ଫିଙ୍ଗି ଦିଆଯାଏ । ଏଭଳି କରିବାରେ ଦୁଇଟି ଲାଭ ଅଛି । ବାସନ ଧୋଇବା ଦରକାର ପଡ଼େନି ଜାତି ହରେଇବାର ଭୟ ବି ନଥାଏ । କାରଣ ଅନ୍ୟ ଜାତିର ଲୋକ ସେଥିରେ ଖାଇ ତାକୁ ଅଛୁଆଁ କରିବାର ସମ୍ଭାବନା ନଥାଏ ।

ଲୁଗାପଟା ଭିତରେ କୃପାସିନ୍ଧୁ ଧୋତି ଓ ଜାମା ପିନ୍ଧୁଥିଲା । ହେଡ୍‌କିରାଣୀ ହେବା ପରଠାରୁ ସେ ଦୁଇଟା ଜ୍ୟାକେଟ୍ ବ୍ୟବହାର କରୁଥିଲା । ଖରାଦିନେ ସିଲ୍କକୋଟ୍ ଓ ଟୁଇଡ୍ ତିଆରି କୋଟ୍ ଶୀତଦିନେ ପିନ୍ଧେ । ସେସବୁ ଏବେ ବିଶେଷ ଦିନମାନଙ୍କ ପାଇଁ ବାସି ହୋଇ ସାଇତା ହୋଇରହିଛି । ସାଧାରଣ ଭାବେ ଆସୁଥିବା ଲୋକଙ୍କୁ ସାକ୍ଷାତ୍ ପାଇଁ ଖଣ୍ଡେ ଜାମା ଗଳେଇ ଦେଲେ ହେଲା । ଘରର ପରିସର ଭିତରେ ତାର ଦେହରେ ଜାମା ବା କୋଟ୍ ପିନ୍ଧିବା ଅଭ୍ୟାସ ନାହିଁ । ଏହିପରି ସାମାନ୍ୟ ଲୁଗାପଟା ଓ ପରିଧେୟରେ ଚଳୁଥିବାରୁ ତା'ର ଆଲମୀରା କି ଆଲଣା କିଛି ଆବଶ୍ୟକ ପଡ଼େ ନାହିଁ । ଗୋଟାଏ ଟିଣ ଟ୍ରଙ୍କଇ ଯଥେଷ୍ଟ ।

ଘରେ ଚାରିଜଣ ସ୍ତ୍ରୀ ଲୋକ । ତା' ଭିତରୁ ଜଣେ ରନ୍ଧାରନ୍ଧିରେ ପ୍ରବୀଣ । ଅନ୍ୟମାନେ ରନ୍ଧା ଶିଖୁଛନ୍ତି । ତେଣୁ ଚାକର ଚାକରାଣୀ ରଖିବାଟାକୁ କୃପା ଅଯଥା ଖର୍ଚ୍ଚ ବୋଲି ଭାବୁଥିଲା । ବଗିଚାରେ କାମ ପାଇଁ ସେ ମାଳିଟିଏ ରଖିଥିଲା । ଗାଈଗୋରୁଙ୍କ ଦେଖରେଖ କରିବାକୁ ଜଣେ ଗଉଡ଼ ରଖିଥିଲା । ଘରର ଆଜେବାଜେ କାମ ଓ ଧୂଆସଫା କରିବାକୁ ଜଣେ ବୁଢ଼ୀ ଚାକରାଣୀ ଯଥେଷ୍ଟ ଥିଲା ।

ଏପ୍ରକାର ପାରିବାରିକ ବ୍ୟବସ୍ଥାରେ ତା'ର ଯଦି କିଛି ପଇସା ଖର୍ଚ୍ଚ ହେଉଥିଲା, ତା' ହେଉଚି ତାର ଜମିର ଚାଷ ଓ ରକ୍ଷଣାବେକ୍ଷଣ ପାଇଁ । ନହେଲେ ସେମିତି କିଛି

ଉଲ୍ଲେଖନୀୟ ଖର୍ଚ୍ଚ ତା'ର ନଥିଲା । ଜମିଦାରୀର ଖଜଣା ଆଦାୟ ଓ ଚାଷ ନିରୀକ୍ଷଣ ପାଇଁ ସେ ତିନିଜଣ କରଣ ଯୁବକଙ୍କୁ ହିସାବ ନିକାଶର କିରାଣୀ କାମ ଦେଇ ନିଯୁକ୍ତ କରିଥିଲା । ତିନିମହଲା ଉପରେ ଥିବା ରୁମ୍‌ଟିରେ ନିଜ ଅଫିସ ଘର ଖୋଲିଥିଲା । ସେ ରୁମ୍‌ଟିରେ ଅନେକଗୁଡ଼ାଏ ଆଲମୀରାରେ କାଗଜପତ୍ର ଓ ଷ୍ଟେସନାରୀ ଜିନିଷ ଭର୍ତ୍ତି ହୋଇରହିଥିଲା । ସେ ଘରେ ଦୁଇଟା ଚେୟାର ଓ ଛୋଟ ଟେବୁଲ୍‌ଟିଏ ପଡ଼ିଥିଲା । ଏଗୁଡ଼ିକ କୃପା ନିଜର ବ୍ୟବହାର ଓ ବାହାରୁ ଆସୁଥିବା ଲୋକଙ୍କ ପାଇଁ ସେଠି ବ୍ୟବସ୍ଥା କରିଥିଲା । ସେ ତିନିଜଣ କରଣ ପିଲାଙ୍କ ପାଇଁ ଗୋଟାଏ କାଠ ଖଟରେ ଦରି ମେଲାଇ ଦିଆଯାଇଥିଲା । ସେମାନେ ସେଠାରେ ଚକାମାଡ଼ି ବସି କାମ କରୁଥିଲେ ।

ଏହି କୋଠରୀ ପାଖରେ ଥିଲା କୃପାର ନିଜ ସ୍ୱତନ୍ତ୍ର ଆସ୍ଥାନ । ଗୋଟାଏ ଭଲ ଟେବୁଲ ଓ କେତେଗୁଡ଼ାଏ ବେତ ବୁଣେଇ ଚେୟାର ସହ ବହି ଓ କାଗଜପତ୍ର ରଖିବା ପାଇଁ ସେଠାରେ ର୍‍ୟାକ୍‌ଟିଏ ବି ଥିଲା ।

ସେ ରୁମ୍‌ର ପାଖରେ ବଡ଼ ବୈଠକୀ ଘରଟିଏ ବି ଥିଲା । ସେ ଘରଟି ଖୁବ୍ ସୁନ୍ଦର ଭାବେ ସଜା ହୋଇ ରହିଥିଲା । ତାର ଚଟାଣରେ ଭଲ ମିର୍ଜାପୁରୀ କାର୍ପେଟ୍‌ଟିଏ ଦିଆ ହୋଇଥିଲା । କାନ୍ଥରେ ରୋଲ୍‌ଡଗୋଲ୍ଡ ଫ୍ରେମ୍‌ର ବଡ଼ ଆଇନାଟିଏ ଲାଗିଥିଲା । କିଂଗ୍ ଜର୍ଜଙ୍କର ଗୋଟାଏ ଫଟୋ ଓ ଜର୍ମାନୀରେ ଛପା ହୋଇ ଆସିଥିବା ସରସ୍ୱତୀଙ୍କର ଫଟୋଟିଏ ବି ଥିଲା । ରୁମ୍‌ର ମଧ୍ୟଭାଗରେ ଥିବା ଟେବୁଲ୍‌ଟିରେ ମାର୍ବଲ୍ ପ୍ଲେଟ୍ ଲାଗିଥିଲା । ତା'ର ଚାରିପାଖରେ ମେହେଗାନୀ କାଠର କାରୁକାର୍ଯ୍ୟ ହୋଇ, ତାର ଗୋଡ଼ଗୁଡ଼ିକ ଦାମୀ ମେହେଗାନୀ କାଠର କୁନ୍ଦାକାମ ହୋଇଥିଲା । ଟେବୁଲ୍‌ର ଚତୁଃପାର୍ଶ୍ୱରେ ଜିଲ୍ଟ ଚେୟାର ଚାରିଟା ପଡ଼ିଥାଏ, ସେଥିରେ ନୀଳ ଭେଲ୍‌ଭେଟ୍ କୁଶନ ଗଦି ଲାଗିଥାଏ । ସେଇ କୋଠରୀର ଗୋଟାଏ ପାଖରେ ଲୁହାଫ୍ରେମ୍‌ରେ ସୁନ୍ଦର ହୋଇ ବହିଥାକଟିଏ ରଖା ହୋଇଥାଏ । ସେ ବହିଗୁଡ଼ିକ ଭିତରେ ଧର୍ମପୁସ୍ତକ ବାଇବେଲ୍‌ର ନୂତନ ମୁଦ୍ରଣଟିଏ ଥିଲା । ଜଣେ ଇଂରେଜବନ୍ଧୁ ତାକୁ ସେଇଟା ଉପହାର ଦେଇଥିଲେ । ଓଡ଼ିଆରେ ଲେଖା ବାଇବେଲ୍‌ଟିଏ ମଧ୍ୟ ଥିଲା । ସେଇଟା ଜଣେ ଆମେରିକୀୟ ମିଶନାରୀ ତାକୁ ଉପହାର ଦେଇଥିଲେ । ଓଡ଼ିଆରେ ଲେଖା ବହି ଓ ସଂସ୍କୃତ ରାମାୟଣ ମଧ୍ୟ ସେ ଥାକରେ ଶୋଭା ପାଉଥିଲା । କୃପାସିନ୍ଧୁ ସଂସ୍କୃତକୁ ଇଂରାଜୀରେ ସାନସ୍କ୍ରିଟ୍ ଉଚ୍ଚାରଣ କଲାବେଳେ ତାକୁ ମରିଯିବା ପରି ବୋଧ ହେଉଥିଲା । ଓଡ଼ିଶାର 'ଶିକାରୀ', ମକଲେଙ୍କ ଇଂଲଣ୍ଡର ଇତିହାସ ବହିଗୁଡ଼ିକ ମଧ୍ୟ

ସେଠାରେ ସଜା ହୋଇରହିଥିଲା । ଇଂରେଜୀ ନଭେଲ୍ ଓ କ୍ୱାଟରଲି ସିଭିଲଲିଷ୍ଟିଏ ମଧ୍ୟ କଲେକ୍ଟର ଅଫିସରୁ ଆସି ତାର ଥାକରେ ରହିଥିଲା । ଚେଷ୍ଟରଫିଲ୍ଡଙ୍କର ‘Letters to his son’ଟି ଓଡ଼ିଶାର ରୟତ ଆଇନ୍ ଏବଂ ‘ସୈତାନର ଦୁଃଖ’ ମଝିରେ ଗର୍ବର ସହିତ ସଜ୍ଜିତ ହୋଇ ରହିଥିଲା ।

ବହିଥାକ ସାମ୍ନାରେ କାଚଲଗା ଆଲମାରୀ ଭିତରେ ଚିନାମାଟିର ଟିସେଟ୍ ଏବଂ କେତେକ ଇଂରେଜ ଫେସନର ଛୁରୀ, କଣ୍ଟା ଓ ଚାମଚ ଆଦି ଇଂରେଜମାନଙ୍କ ଖାଇବା ଟେବୁଲ୍ ସଜା ସାମଗ୍ରୀ ରହିଥିଲା ।

କୃପାସିନ୍ଧୁର ସର୍ବଶ୍ରେଷ୍ଠ ଇଚ୍ଛା ଯେଉଁଦିନ ପୂରଣ ହେବ ସେଦିନ ପାଇଁ ଏଗୁଡ଼ିକ ସଜା ହୋଇ ରହିଥିଲା । ସେଦିନ ଜଣେ ସାହେବ ଆସିବେ, ନୀଳ ଭେଲଭେଟ୍ ସୋଫା ଉପରେ ବସିବେ ଆଉ ଚା ପିଇବେ ।

କୃପାସିନ୍ଧୁ ନିଜେ ସବୁଦିନ ସିଲଭର କପ୍‌ରେ ଚା ପିଉଥିଲା । ସ୍ୱତନ୍ତ୍ର ଦିନମାନଙ୍କ ପାଇଁ ପିତଳର ଫୁଲଦାନୀଟି କୋଣରେ ପଡ଼ିଥିବା ଛୋଟ ଟେବୁଲ୍ ଉପରେ ଅପେକ୍ଷା କରି ରହିଥିଲା । ନହେଲେ ସେଇଟା ସବୁଦିନେ ଖାଲି ପଡ଼ିଥାଏ । ସେଇ ମଝି ଟେବୁଲଟିରେ ପାନ ଓ ସିଗାରେଟ୍ ପରଷିବା ପାଇଁ ଜନାର୍ଜନ ଜେଠୀର ସର୍ବଶ୍ରେଷ୍ଠ ଉପହାର ପିତଳ ଟ୍ରେଟି ଥୁଆ ହୋଇଥିଲା । ରୂପା ତାରକସିର ଅତରଦାନଟି ମଧ୍ୟ ସେଠି ଥିଲା ।

ବୈଠକୀଟି କେବଳ ଅସାଧାରଣ ଅତିଥିମାନଙ୍କ ଆସନ ପରିଚର୍ଯ୍ୟା ପାଇଁ ଉଦ୍ଦିଷ୍ଟ ଥିଲା । ଯେଉଁ ସାଧାରଣ ଲୋକମାନେ ତା’ଘରକୁ ଆସୁଥିଲେ ସେମାନଙ୍କ ପାଇଁ ଓସାରିଆ ବାରଣ୍ଡାଟି ଯଥେଷ୍ଟ ଥିଲା । ଏଇ ତିନିଟି ରୁମ୍‌ରେ କେବଳ ଆସବାବ ପତ୍ର ଥିଲା । ଶୋଇବା ଘରେ ଖଟଟିଏ ଓ କାନ୍ଥରେ ଆଇନାଟିଏ ଲାଗିଥିଲା । ଗୋଟାଏ ଟିଣ ବା କାଠର ବାକ୍ସ । ଛୋଟ ଲୁଗାରଖା ଆଲମିରା ଓ କାର୍ପେଟ୍‌ଟିଏ ସେ ଘର ପାଇଁ ଯଥେଷ୍ଟ ଥିଲା ।

ଘରର ସବୁକାର୍ଯ୍ୟ ଠିକ୍ ଭାବରେ ପରିଚାଳିତ ହେଉଛି ବୋଲି ଜାଣି ସନ୍ତୁଷ୍ଟ ହେବା ପରେ କୃପା ତାର ବେପାର ଆଡକୁ ମନ ଢ଼ଳେଇଲା । ଏଥିପାଇଁ ହରିବନ୍ଧୁ ଓ ସାଧୁଚରଣକୁ ଡକେଇ କ’ଣ କ’ଣ ସବୁ କରିବାକୁ ହେବ, ତାହା ବୁଝାଇ ଦେଲା । ମଧୁଦାସଙ୍କ ପୁଅ ମୋହନ ଦାସକୁ ମଧ୍ୟ ସେ ଡକେଇ ଆଣିଲା । ମୋହନ ଜଣେ ଗୁମାସ୍ତା ଭାବେ ଗାଁରେ କାମ କରି ତା ବାପାଙ୍କର ପେଶାକୁ ଚଳାଇଥିଲା ।

‘ମୋ ପୁଅ ଜମିଦାରୀର ଦେଖାରଖା କରିବ ଓ ମୁଁ ଚାଷବାସ ବୁଝିବି । ଏଇ

ଯୋଜନା ମୋର ଅଛି ।" ସାଧୁଚରଣ କହିଲା ଯେ ସେ ସେଁ ଯାବତ ଜମିଦାରୀର କାମ କିଛି ଜାଣିନାହିଁ । ହରିବନ୍ଧୁ ବି ସେଇ ମତ ଦେଲା । କୃପା କହିଲା, "ପୁଅ ଶୁଣ୍, ବର୍ଷେ ଦି'ବର୍ଷ ମୁଁ ତୋତେ ତାଲିମ୍ ଦେବି । ତାପରେ ତୋତେ ସବୁକିଛି ବୁଝିବାକୁ ପଡ଼ିବ । ଚାଷକାମରେ ମୂଲିଆ ଲଗେଇବାକୁ ହେବ । ଖର୍ଚ୍ଚ ଅଛି । ହେଲେ ମୂଲିଆ ତ ସବୁବେଳେ ମିଳିବେ ନାହିଁ । କାରଣ ସମସ୍ତ ଚାଷୀ ଏକା ସମୟର ମୂଲିଆ ଖୋଜିବେ । ତେଣୁ ମୁଁ ଜଣେ-ଦି'ଜଣ ଘରନାଗୁଆ ମୂଲିଆ ରଖିବି ।"

"ବାବୁ, କ୍ରୀତଦାସ ପ୍ରଥା ପରା ବ୍ରିଟିଶରାଜ ବେଳୁ ବଂଦ ହୋଇଯାଇଛି ।" ସାଧୁଚରଣ କହିଲା ।

'ନା, ନା । ସେମିତି କିଛି କଥା ନୁହେଁ । ମୁଁ ଦୁଇଜଣ ମୂଲିଆ ରଖିବି । ଆମର ତ ଜମିଜମା ବହୁତ ଅଛି । ସେମାନଙ୍କୁ କେଉଁଠୁ ପାଇବି ସେଇ କଥା ତ ଚିନ୍ତା ।'

ହରିବନ୍ଧୁ କହିଲା, "ମୁଁ ଶୁଣିଛି, ଜଗାବାବୁଙ୍କ ଜମିଦାରୀଟି ନଇ ସେପାରିରେ । ସେ କିଛି ଜମି ତାଙ୍କ ଋଣ ସୁଝିବା ପାଇଁ ବିକିବେ । ତେଣୁ ତାଙ୍କର ଆଉ ମୂଲିଆ ଲୋଡ଼ା ପଡ଼ିବ ନାହିଁ ।

"ତାଙ୍କର ତ ବହୁତ ଗୁଡ଼ାଏ ହଳିଆ ମୂଲ ଲାଗିଛନ୍ତି । ସେ ନିଶ୍ଚୟ ଜଣେ ଦି'ଜଣ ମୂଲିଆ ଏମାନଙ୍କ ଭିତରୁ ଖସେଇ ଆମକୁ ଦେଇପାରିବେ ।" ମୋହନ ଦାସ ମତ ଦେଲା ।

ବ୍ରଜମଣି ଭୂୟାଁ ବୋଲି ଜଣେ ଥିଲେ । ତାଙ୍କର ଘରବାଡ଼ି ବେଶ୍ ଥିଲା । ମଲାବେଳେ ବ୍ରଜମଣିଙ୍କ ବାପା ଜଗାବାବୁଙ୍କ ବାପାଙ୍କ ଠାରୁ ପଚାଶ ଟଙ୍କା କରଜ କରିଥିଲେ । ତାଙ୍କ ଋଣର ୨୪ ଶତାଂଶ ହାରରେ ସୁଧ ସ୍ଥିର ହୋଇଥିବାରୁ କରଜ ଭାର ବଢ଼ିଲା । ମୂଳକଥା ତ ଛାଡ଼ ଶହେଛ ଟଙ୍କା ବାରଅଣା ସୁଧ ବି ଚାରିବର୍ଷ ଧରି ସେ ଦେଇପାରିଲେ ନାହିଁ ।

ତାପରେ ପୁଣି ସ୍ତ୍ରୀଙ୍କ ମୃତାହ ପାଇଁ ଆଉ ଚାଳିଶ ଟଙ୍କା ସେ ଧାର କଲେ । ଏଥର ସେ ଆଉ ଗୋଟାଏ ନୂଆ କରଜନାମା କରିଲେ । ଶହେ ଚାଳିଶ ଟଙ୍କାର ଛତିଶ ଟଙ୍କା ପ୍ରତିଶତ ସୁଧରେ । ସେ ଋଣ ଚାରିବର୍ଷରେ ତାରିଶ ଅଠସ୍ତରୀ ଟଙ୍କା ଆଠଅଣା ଆଠ ପଇସାକୁ ବଢ଼ିଗଲା ।

ତାପରେ ତାଙ୍କ ଦ୍ୱିତୀୟ ଝିଅର ବିବାହ ହେଲା । ଜଗାବାବୁ ତାଙ୍କୁ ପୁଣି ଶହେଷୋହଳ ଟଙ୍କା ଋଣ ଦେଲେ ଓ ନୂଆ ୪୦୦ ଟଙ୍କାର ହେଣ୍ଡନୋଟ୍ ବନାଇଲେ ।

ତା' ଉପରେ ୬୦ ପ୍ରତିଶତ ସୁଧହାର। ଆଠବର୍ଷରେ ବ୍ରଜମଣି କିଛି ଟଙ୍କା ପରିଶୋଧ କଲେ ହେଲେ ସବୁଟଙ୍କାର ସୁଧମୂଳ ମିଶି ସାତହଜାର ଶହେ ଅଠଚାଳିଶ ଟଙ୍କାକୁ ଛୁଇଁଲା ।

ଦ୍ୱିତୀୟ ସ୍ତ୍ରୀ ପାଇଁ ପୁଣି ତାଙ୍କଠୁ ନୂଆ ହ୍ୟାଣ୍ଡନୋଟ୍‌ରେ ସତୁରି ପ୍ରତିଶତ ସୁଧରେ ଋଣ ନେଲେ ।

ସେ ମଲାପରେ ତାଙ୍କର ଦୁଇପୁଅ ବାପାଙ୍କ ଶୁଦ୍ଧିକ୍ରିୟା ପାଇଁ ପୁଣି ଋଣ ନେଲେ। ଦୁଇପୁଅ ବନମାଳୀ ଓ ଚିନ୍ତାମଣିଙ୍କ ନାମରେ ସେ ସୁଧମୂଳ ମିଶି ଅଠର ହଜାର ପାଞ୍ଚ ଶହ ହେଲାଣି । ଏବେ ଜଗାବାବୁ ବନମାଳୀକୁ ୨୦୦ ଟଙ୍କାରେ ବିକିବାକୁ ଚାହାଁନ୍ତି । ଚିନ୍ତାମଣି ନାଁବାଳକ ଅଛି । ଯଦି କୃପାବାବୁ ଚାହାନ୍ତି ତାକୁ ବି ଆଉ ଶହେ ଟଙ୍କା ଦେଇ କିଣିପାରିବେ ।

କୃପାସିନ୍ଧୁ ଏ ସର୍ତ୍ତ ମଞ୍ଜୁର କଲେ । ମୋହନ ଦାସ ଏସବୁ ସଂକ୍ରାନ୍ତରେ କାଗଜପତ୍ର ତିଆରି କରିବାରେ ଲାଗିଲା । ଠିକ୍ ସମୟରେ ଦଲିଲ ଦସ୍ତାବିଜର ରେଜିଷ୍ଟ୍ରିକରଣ ହୋଇ ଦିଆନିଆ କାମ ଛିଣ୍ଡିଲା ।

କାଗଜପତ୍ର ଅନୁସାରେ କୃପା ସେ ପିଲା ଦିଓଟିଙ୍କୁ ୧୦ ହଜାର ଟଙ୍କା ଦେଇ ବାସ୍ତରୀ ପ୍ରତିଶତ ସୁଧରେ କିଣିଛି । ଟଂକା ତକ ଜଗାବାବୁ, ଏ ପିଲାଙ୍କ ବାପା ଆଣିଥିବା ଋଣ ବାବଦକୁ ନେଇଛନ୍ତି । କୃପାସିନ୍ଧୁର ନିତିଦିନିଆ ହଳିଆ ରହିବେ ବୋଲି ସେ ଦୁଇପିଲାଙ୍କ ନାମରେ ବଣ୍ଡ ପ୍ରସ୍ତୁତ ହେଲା । କୃପାସିନ୍ଧୁର ବିଲରେ କାମ କରି ସେମାନେ ନିଜର ଋଣ ସୁଝିବେ । ସେମାନଙ୍କ ଖାଇବା ଚଳିବା ପାଇଁ କୃପା ସେମାନଙ୍କ ଅଧ ଏକର ଜମି ଦେଲା । ନିଜର ଓ ନିଜ ସ୍ତ୍ରୀର ପୁରୁଣା ଲୁଗା ଦି'ଖଣ୍ଡ ଦେବା ପାଇଁ ବି କଥା ହେଲା । ବର୍ଷକୁ ହାତଖର୍ଚ୍ଚ ଦି'ଟଙ୍କା ଏବଂ ଦିନକୁ ଚାରିଅଣା ମଜୁରୀ ବାବଦ ମିଳିବ ସେମାନଙ୍କୁ । ମୂଳଟି ସୁଧ ସହିତ ଆରମ୍ଭ ହେବ ।

ଏସବୁ ସିନା କାଗଜପତ୍ର କଥା । ହେଲେ, ଅସଲ କଥାଟି ହେଲା ଜଗାବାବୁ ତିନିଶହ ଟଙ୍କାରେ ସେ ପିଲାଦିଓଟିଙ୍କୁ କୃପାସିନ୍ଧୁଙ୍କୁ ବିକି ଦେଇଥିଲେ ।

ନିଜ ପାଇଁ ଶ୍ରମିକ ସମସ୍ୟା ତୁଟିଗଲା ପରେ କୃପାର କଳ୍ପନାର ଖିଅ ସଜାଡ଼ି ହୋଇଗଲା । ପୁଅକୁ ଜମିଦାରୀ କାମ ତାଲିମ ଦେବା ଓ ନିଜର ଚାଷବାସ କାମ ବୁଝିବା ଭିତରେ ତା'ର ସାରାଦିନର ସମୟ ସବୁ ବାଣ୍ଟି ହୋଇଗଲା । ଅବଶିଷ୍ଟ ସମୟତକ ସେ ବଗିଚା ଭିତରେ ବୁଲିବୁଲି ବା ବୁଢ଼ାବଳଙ୍ଗ କୂଳରେ ବସି ଖୁସିରେ କଟାଉଥିଲା । ଗୋଟାଏ ଚେଆର ନେଇ ସେ ତା'ଘର ରାସ୍ତାର ଶେଷମୁଣ୍ଡ ନଈକୂଳରେ

ପକାଇଥିଲା । ସେଠାରେ ବସି ସେ ଗଛବୃଛଙ୍କୁ ଏକାଗ୍ର ମନରେ ଚାହିଁରହେ ! କେବେ କେବେ ନଈ ସେପାରି ଚାଳଘର ତାର ମନକୁ ଓଟାରେ । ଏସବୁ ଦେଖି ଦେଖି ସେ ନିଜର ଜୀବନସାରାର ଅନୁଭୂତିକୁ ମନେପକାଏ ।

ଥରେ ଥରେ ସେ ଅନେକ ଅଜଣା ଜାଗା କଥା ମଧ୍ୟ ଭାବୁଥିଲା । ସେ ଜାଗା ସବୁ କଲେକ୍ଟରଙ୍କ ସହିତ ଟୁର୍ ଯାଇଥିବା ବେଳେ ସେ ଦେଖିଥିଲା । ଅନେକ ସମୟରେ ସେ ନିଜର ପିଲାବେଳର କଥାସବୁ ମନେ ପକାଉଥିଲା । କେତେ ପ୍ରେମ ସେ ନିର୍ମଳାବାଳାକୁ କରୁନଥିଲା । ସେକଥା ସବୁ ମନେପଡ଼ିଲେ ତା'ର ଛାତି ମନ୍ଥିହୁଏ ଦୁଃଖରେ । ଟିକିଏ ବି ବିରକ୍ତି କି ଅଶାନ୍ତି ଭାବ ତା' ମନରେ ନଥାଏ ।

ଥରେ ଥରେ କାମନାପୂର୍ଣ୍ଣ ଆଖିରେ ଚାହୁଁଥିବା ସେଇ ଝିଅଟି କଥା ମନେପଡ଼େ । ବିଷାଦମୟ ବିପତ୍ନୀକ କିରାଣୀ ଜୀବନକୁ ସେ ଦିନେ ଆଲୋକିତ କରିଦେଇଥିଲା । ତା' ସହିତ ସେ କଣ୍ଢେଇ ଭଳି ଖେଳି ପାରୁଥିଲା । ଭାରି ମଧୁର ପ୍ରେମକଳାରେ ପରିପୂର୍ଣ୍ଣ ତା'ର ବ୍ୟବହାର । ନିଜ ବ୍ୟବସାୟ କଳାଠୁଁ ତାହା ଅଲଗା ଧରଣର । ଏବେ ତା' ସହ କୃପାର ବା କି ସଂପର୍କ ।

ନଈକୂଳରେ ବସି ସେ ସ୍ୱପ୍ନ ଦେଖେ । ନଈ ଆରପାରିର ସେ ଝଂକାଳିଆ ଗଛଗୁଡ଼ିକୁ ଦେଖେ । ସେମିତି ମୋହାଚ୍ଛନ୍ନ ଅବସ୍ଥାରେ ବସିଥିବା ବେଳେ ଛୋଟ ଛୋଟ ପିଲାମାନେ ତା' ପାଖକୁ ଆସନ୍ତି । ସେମାନଙ୍କୁ କୃପାସିନ୍ଧୁ ଭଲପାଏ । କୃପାକୁ ସେମାନେ ବାବା ବୋଲି ଡାକନ୍ତି । ସେ ବି ରାକ୍ଷସମାନଙ୍କ କାହାଣୀ ସେମାନଙ୍କୁ ଶୁଣାଏ ।

ନିଜେ ସେ ସ୍ମୃତିରେ ମଜଗୁଲ ହୋଇ ଘରେ ତା'ର ନାତିନାତୁଣୀଙ୍କ ସହ ଖେଳିବା ବେଳେ ଦିନେ ଜଣେ ତାଙ୍କ ଘରକୁ ଆସିଲେ । ଲୋକଟି ପତଳା, ଧାରୁଆ ମୁହଁର ରୁଦ୍ଧ ସଫା ହୋଇ ସେ ଚକ୍ ଚକ୍ ଦିଶୁଥିଲେ । ବାଁ କାନ୍ଧରେ ନିଜ ଜିନିଷପତ୍ରକୁ ପୁଟୁଳିରେ ଝୁଲାଇଥାନ୍ତି ଓ ହାତରେ ଧରିଥାନ୍ତି ଗୋଟାଏ ତାଳପତ୍ର ପଙ୍ଖା ।

ତାଙ୍କ ମୁଣ୍ଡ ପଛ ଆଡକୁ କୁଣ୍ଢେଇ ହୋଇଥିଲା ମୁଣ୍ଡବାଳରେ ପାନିଆଟେ ଲଗା ହୋଇଥାଏ । ଦେଖିଲେ ସ୍ତ୍ରୀଲୋକଟିଏ ପରି ଲାଗିବ । ପୁରୀରେ ଯାତ୍ରୀମାନଙ୍କ ପଛରେ ଦୌଡ଼ୁଥିବା ଟାଉଟର ପଣ୍ଡା ପରି ସେ ଦିଶୁଥିଲେ । ହୁଏତ ଜଗନ୍ନାଥଙ୍କ ପ୍ରଚାର ପାଇଁ ସେ ଆସିଥାଇପାରନ୍ତି ।

କୃପା ଘରକୁ ଆସି ପ୍ରଥମେ ସେ ସମସ୍ତଙ୍କ କୁଶଳମଙ୍ଗଳ ପଚାରିଲେ । ବିଧବା

ଝିଅଟିଏ ଘରେ ଅଛି ଜାଣି ତାକୁ ଦେଖିବାକୁ ଚାହିଁଲେ, କୃପାସିନ୍ଧୁ ଆସିଲାରୁ ନିଶିବାଳା ବି ସେ ଆଗନ୍ତୁକଙ୍କୁ ଭେଟିବାକୁ ଚାହିଁଲେ ।

"ବାବୁ, ମୁଁ ତୀର୍ଥ କରିବାକୁ ପୁରୀ ଯିବି ଭାବୁଚି ।" ନିଶିବାଳା ତା ବାପାକୁ କହିଲା ।

"ସତରେ ଯିବ । କିଂତୁ କ'ଣ ପାଇଁ ?"

ଏ ଗାଁରେ ତ ସାରାଜୀବନ କଟିଲା । ସ୍ୱାମୀ ଘରକୁ ବି ଗଲିନାହିଁ । ମରିବା ପୂର୍ବରୁ ଆଉ ଜାଗାଟିଏ ଦେଖିବାକୁ ଇଚ୍ଛା ହେଉଛି ।"

ପଣ୍ଡା କହିଲେ, 'ଏଇ କଥାଟା ଖାଲି ସତ ନୁହେଁ ।'

'ନା, ସତ କଥା ହେଉଛି ମୁଁ ଜଣେ ପାପିନୀ ।"

"ବାଜେ କଥା, ତୁ ପାପିନୀ ହୋଇଥିଲେ ବହୁତ କଷ୍ଟ ଭୋଗ କରିଥାନ୍ତୁ ।" କୃପା କହିଲା ।

ପଣ୍ଡା ଜଣକ କହିଲେ, "ଏ ଜୀବନରେ ଏ ଝିଅ ପୁଣ୍ୟବତୀର ଜୀବନଟିଏ ବଂଚିଛନ୍ତି । ହେଲେ ପୂର୍ବଜନ୍ମରେ ସେ ପାପ ଅର୍ଜିଛନ୍ତି ।"

"ମୋର ସେଇ ପାପ ପାଇଁ ସ୍ୱାମୀ ମୋତେ ଯୁବାକାଳେ ଛାଡ଼ି ଚାଲିଗଲେଣି । ଜଣେ ସ୍ତ୍ରୀ ତା'ର ସ୍ୱାମୀର ମୃତ୍ୟୁର କାରଣ ହେବାଠାରୁ ଆଉ ବଡ଼ ପାପ କ'ଣ କରିପାରେ ?" ନିଶିବାଳା କହିଲା ।

କୃପା କହିଲା, "ପଣ୍ଡା ସାଆନ୍ତେ, ଆପଣ ତାକୁ ଠିକ୍ ଉପଦେଶ ଦେଇଛନ୍ତି ।"

"ସେଇଠି ମୋ ପାପ ସରିଲା ନାହିଁ । ମୋ ଲାଗି ମୋ ବାପା ବି ବହୁତ କଷ୍ଟ ଓ ଅପମାନ ପାଇଛନ୍ତି ।"

"ଭଗବାନ କେବେ ବି ନିଷ୍ଠୁର ନୁହଁନ୍ତି । ଜଗନ୍ନାଥ ସମସ୍ତଙ୍କର ତ୍ରାଣକର୍ତ୍ତା ।" ପଣ୍ଡା କହିଲେ ।

"ଜଗନ୍ନାଥ ଦର୍ଶନ ପାଇଁ ଯାଇ ସ୍ୱର୍ଗଦ୍ୱାର ଠାରେ ମୁଁ ସମୁଦ୍ର ସ୍ନାନ କଲେ ମୋର ଓ ମୋ ସ୍ୱାମୀଙ୍କ ଆତ୍ମାର ପରିତ୍ରାଣ ହେବ ।" ନିଶିବାଳା କହିଲା ।

ପଣ୍ଡା ଜଣକ ଖିଲ ଖିଲ ହୋଇ ହସି କହିଲେ, "ସେ ଏତେ ଗରୀବ ଯେ ସେଠିକି ସେ ଯାଇପାରିବେ ନାହିଁ ।"

ସାଧୁଚରଣ ତା'ର ଭଉଣୀକୁ ଦୟା ଦେଖେଇ କହିଲା, "ହିନ୍ଦୁ ବିଧବା ସ୍ତ୍ରୀମାନେ ତୀର୍ଥଯାତ୍ରାରେ ଯିବାଟା ତ ସାଧାରଣ କଥା ।"

କୃପାସିନ୍ଧୁ ସଦାବେଳେ ଚାହୁଁଥିଲା ଯେ ପାଖ ପଡ଼ୋଶୀରେ ତା'ର ସମ୍ମାନ ବଜାୟ ରହୁ । ତେଣୁ ଉଚ୍ଚଜାତିର ମହିଳାଙ୍କ ଥାଟ୍‌ରେ ନିଶି ତୀର୍ଥ କରିଯାଉ- ସେ ପାଇଁ ଖର୍ଚ୍ଚ ସବୁ ସେ ବହନ କରିବ । ହେଲେ, ହଠାତ୍ ନିଶିର ପ୍ରସ୍ତାବରେ ସମ୍ମତି ଦେଲା ନାହିଁ । ତେଣୁ କହିଲା-

"ତମେ ଭାବୁଛ ବେଶୀ ଖର୍ଚ୍ଚ ପଡ଼ିବନି ବୋଲି ?"

ପଣ୍ଡା କହିଲେ, "ତମ ପାଇଁ ମୁଁ ଅଳ୍ପ ଖର୍ଚ୍ଚରେ ସବୁ ବ୍ୟବସ୍ଥା କରିଦେବି। ମୋର କକାଙ୍କର ଗୋଟାଏ ଲାଇସେନ୍ସପ୍ରାପ୍ତ ଭଡ଼ାଘର ସେଠାରେ ଅଛି ।"

"ତୁ ତ ସେଠାକୁ ଏକାଯିବୁ ନାହିଁ । ତୋ ସାଂଗେ ଆଉ କିଏ ଯିବ ।" ସାଧୁଚ଼ରଣର ସ୍ତ୍ରୀ କହିଲା, "ମୋ ବାପା ଘର ପୁରୀ- ମୁଁ ସେଠିକି ବହୁବାର ଯାଇଚ଼ି । ତେଣୁ ମୁଁ ତାଙ୍କ ସହ ଯିବି ନାହିଁ ।"

ଗୁରୁଚ଼ରଣର ସ୍ତ୍ରୀ ରାଜି ହେଲା ଯିବ ବୋଲି । ସେ ଆଦୌ ସମୁଦ୍ର ଦେଖିନଥିଲା ।

ଚାରୁବାଳା କହିଲା "ମୋର ତ ସଂସାର ସାରାର କାମ । ଗୁରୁଚରଣର ଚାକିରି ଅଛି । ତେଣୁ ସାଧୁଚ଼ରଣ ନିର୍ମଳାବାଲା ସହ ଯାଉ ।"

"ମୋ ସ୍ତ୍ରୀ ଯିବନି- ମୁଁ ଘରେ ନରହି ସେଠିକି ଯିବି କାହିଁକି ? ହଠାତ୍ କୃପା ଝିଅ ଆଡ଼କୁ ବୁଲିପଡ଼ି କହିଲା, "ଝିଅ ତୁ ଜାଣିଛୁନା ପୁରୀ ଗୋଟାଏ ଖରାପ ଜାଗା ।"

ଝିଅ କହିଲା, "ବାପା, ମୋତେ ଚାଳିଶବର୍ଷ ବୟସ ହୋଇଗଲାଣି । ମୁଁ ପୁଣି କିଛି ବୋକାମୀ କରିବି ବୋଲି ଆପଣ କେବେ ଭୟ କରନ୍ତୁ ନାହିଁ ।"

"ସାଧୁଚ଼ରଣ ତୋ ସହ ନଗଲେ, ଆଉ କିଏ ବା ଯିବ ?"

"ତୁମେ ତ ବୁଢ଼ା ହେଲଣି । ତୁମେ ପୁରୀ ଯାଇ ଜଗନ୍ନାଥ ଦର୍ଶନ ଦ୍ୱାରା ନିଜ ମୁକ୍ତି ପାଇଁ ପ୍ରାର୍ଥନା କରିବା କଥା ।" ସାଧୁଚ଼ରଣ ମନ୍ତବ୍ୟ ଦେଲା ।

"ସେଠାକୁ ଯାଇ ଗୋଟାଏ ବାଜେ ଭଡ଼ା ଘରେ ରହିବାକୁ ମୋର ମନ ହେଉନାହିଁ ।"

ସମୁଦ୍ରକୂଳରେ ମୁଁ ଗୋଟାଏ ଭଲ ଭଡ଼ଘର ଠିକ୍ କରିଦେବି । ଖର୍ଚ୍ଚ ଅବଶ୍ୟ ଟିକେ ବେଶୀ ପଡ଼ିବ । ଏ ଋତୁରେ ପୁରୀରେ ଥଣ୍ଡାପବନ ବହେ ଏବଂ ମଶା ବି ନଥାଏ । ଏଠାରେ ଗରମ ପଡ଼ିଥିବା ବେଳେ ପୁରୀରେ ଥଣ୍ଡା ପଡ଼ିଥାଏ ।"

"ସମୁଦ୍ରକୂଳରେ କ'ଣ ଆମେ ଘରଭଡ଼ା ନେଇପାରିବା ? ସେଠାରେ ତ

ଭଡ଼ା ଢ଼େର ବେଶୀ । ବିଶେଷତଃ ଏ ଋତୁରେ ।"

"ତେବେ ମୋ କକାଙ୍କ ଘର ତ ଅଛି ।" ପଣ୍ଡା କହିଲା ।

"ମୋ ଅନୁପସ୍ଥିତିରେ ଏଠାକାର କଥା ସବୁ କିଏ ଚଳେଇବ ?"

"ବାପା, ଏ ଋତୁରେ ତ ବେଶୀ ସେମିତି କାମ ନାହିଁ । ଖାଲି ଖଜଣା ଆଦାୟ କରିବା କଥା । ତା' ବି ଶେଷ ହୋଇଆସିଲାଣି । ତୁମେ ପୁରୀ ଗଲେ, ମୁଁ ସେ ସବୁ ଠିକ୍‌ରେ ବୁଝାବୁଝି କରିଦେବି ।" ସାଧୁ କହିଲା ।

ପଣ୍ଡା ପ୍ରସ୍ତାବ ଦେଲା, "ପଡ଼ିଶାମାନଙ୍କ ସହ ମିଶି ତମେ ଯଦି ପୂରାଘରଟା ଭଡ଼ାରେ ନେବ ତ ସୁବିଧା ପଡ଼ିବ ।"

କୃପାସିନ୍ଧୁକୁ ତ ଯିବାକୁ ହେବ । ପଣ୍ଡାଙ୍କ କଥାନୁସାରେ ପଡ଼ିଶାଙ୍କ ସହ ମିଶି ଗୋଟାଏ ତୀର୍ଥଯାତ୍ରୀ ଦଳରେ ପୁରୀ ଯିବା ସ୍ଥିର ହେଲା । ପଡ଼ିଶାର ସ୍ତ୍ରୀ ଲୋକ ତିନିଜଣ ସହ ଗୁରୁଚରଣର ସ୍ତ୍ରୀ, ନିଶିବାଳା ଓ ସେ ପୁରୀ ଯିବାକୁ ମନସ୍ଥ କଲେ ।

ବହୁ ଅନିଚ୍ଛା ସତ୍ତ୍ୱେ କୃପା ପୁରୀ ଯିବାକୁ ରାଜି ହେଲା । ତା'ର ଘରୁ ଆଉ କୁଆଡ଼େ ଯିବାକୁ ଇଚ୍ଛା ନଥିଲା । ନିଶିବାଳା ପୁରୀ ଯିବାକୁ ଅଡ଼ି ବସିବାରୁ ସେ ତା' ଉପରେ ଗୁସ୍‌ସା ହେଲା । ସେ ପୁରୀ ପଣ୍ଡା ଜଣକ ତା'ର ମୁଣ୍ଡରେ ଏକଥା ପୂରେଇ ଥିବାରୁ ତା' ଉପରେ ବି ରାଗିଲା ।

ଏସବୁ ସତ୍ତ୍ୱେ ବି ପୁରୀ ଯାଇ ସେ ଖୁବ୍ ଖୁସି ହେଲା । ସେଠିଯାଇ ଜାଣିଲା ଯେ ସେଠାରେ ବହୁଲୋକ ତାକୁ ମନେ ରଖିଛନ୍ତି । ସେଠାକାର ଅଫିସରମାନଙ୍କ ଘରକୁ ଯାଇ ସେମାନଙ୍କୁ ସାକ୍ଷାତ୍ କଲା ଓ ତାଙ୍କ ଠାରୁ ଅଭ୍ୟର୍ଥନା ବି ପାଇଲା । ରାୟ ବାହାଦୂର ତାଙ୍କ ବଂଧୁ ଥିବାରୁ, ସେଠାକାର ପୋଲିସବାବାଲାଏଁ ତାକୁ ଖୁବ୍ ସମ୍ମାନ ଦେଖାଇଲେ ।

ସେଠାକାର ସବୁ ଦର୍ଶନୀୟ ସ୍ଥାନର ସୁନ୍ଦରତା ଦେଖି ତା'ର ମନ ଖୁସିରେ ପୂରି ଉଠିଲା । ଅଧିକନ୍ତୁ, ସେ ସ୍ତ୍ରୀ ଲୋକମାନେ ଖୁସି ହେବାରୁ, ସେ ଖୁବ୍ ସନ୍ତୁଷ୍ଟ ହେଲା । ବିଶେଷତଃ ନିଶିବାଳା କେବେ ନିଜ ଘର, ଗାଁ ଛଡ଼ା ବାହାର ଜାଗା ଦେଖିନଥିଲା । ଏ ଯାତ୍ରା ତାକୁ ଖୁବ୍ ଉତ୍‌ଫୁଲ୍ଲ କରିଦେଲା । ମନଟି ଖୁସିରେ ଭରି ଉଠିବାରୁ ସେ ହଠାତ୍ ଯେପରି ଗୋଟାଏ ଯୁବତୀ ପାଲଟିଗଲା । ତା'ର ମନରେ ନୂଆ ନୂଆ ଭାବନା ସବୁ ଉଙ୍କି ମାରିଲା । ନିଶିବାଳାକୁ ଖୁସି ଦେଖି କୃପାସିନ୍ଧୁ ମଧ୍ୟ ଖୁବ୍ ଖୁସି ହେଲା । କାରଣ ନିଜର ଏଇ ଝିଅ ନିଶିକୁ ସେ ପ୍ରାଣର ସହିତ ଭଲ ପାଉଥିଲା ।

# ତ୍ରିଂଶ ପରିଚ୍ଛେଦ

ଅବସର ନେବାର ଦୁଇବର୍ଷ ପରେ କୃପା ତା'ର ପୁଅକୁ ନିଜ ଜମିଦାରୀର ଭାର ସମର୍ପି ଦେଲା । ତାପରବର୍ଷ ଚାଷବାସର କିଛି ଦାୟିତ୍ୱ ମଧ୍ୟ ପୁଅକୁ ହସ୍ତାନ୍ତର କଲା । କାରଣ ଘରଠୁଁ ଦୂରରେ ଥିବା ଜମିର ତଦାରଖ କରିବା ତା' ପାଇଁ କଷ୍ଟକର ହେଲା । ତା'ର ଦୃଷ୍ଟିଶକ୍ତି ମଧ୍ୟ କ୍ରମେ କ୍ରମେ ହ୍ରାସ ପାଇବାକୁ ଲାଗୁଥିଲା। ତେଣୁ ସବୁବେଳେ ଚଷମା ପିନ୍ଧିବାକୁ ପଡୁଥିଲା ।

ଅବସର ନେବାର ଦ୍ୱିତୀୟବର୍ଷ ତା'ର ସବୁ ଉଦ୍ଦେଶ୍ୟ ଓ ମନୋକାମନା ପୂରଣ ହୋଇଗଲା। ପାଖ ଅଞ୍ଚଳକୁ ଟୁର୍‌ରେ ଆସିଥିବା କଲେକ୍ଟର ତା'ର ଘରକୁ ଆସିଥିଲେ । ସାହେବ ଆସି ତା ବୈଠକୀର ନୀଳ ଭେଲ୍‌ଭେଟ୍ ସୋଫାରେ ବସିଲେ । କୃପା ତାଙ୍କୁ ଚା, ବିସ୍କୁଟ, ବ୍ରେଡ୍ ବଟର ଓ କିଛି ଭାରତୀୟ ମିଠା ଦ୍ୱାରା ଆପ୍ୟାୟିତ କଲା । ଏବେ ସେ ପିତ୍ତଳ ଫୁଲଦାନୀଟା ଫୁଲରେ ଭରି ସଜା ହୋଇଥିଲା । ରୂପାର ଅତରଦାନ ମଧ୍ୟ କାମରେ ଆସିଲା । ସାହେବ ତାଙ୍କ ରୁମାଲ୍‌ରେ ସେଥିରୁ ଅତର ସ୍ପ୍ରେ କଲେ ।

ସାହେବ ଖୁବ୍ କମ୍ ଜିନିଷ ଖାଇଲେ । କିଂତୁ ଚା ପୂରାକପ୍‌ଟିଏ ପିଇଲେ । ଏସବୁ ପରେ ସେ ଗୋଟାଏ ସିଗାରେଟ୍ ପିଇଲେ। କୃପାର ନାତିମାନେ ଜଣେ ପରେ ଜଣେ ଆସି ଫୁଲମାଳ ପିନ୍ଧେଇ ସାହେବଙ୍କୁ ପ୍ରଣାମ କଲେ ।

ସିଗାରେଟ୍ ପିଇସାରି ସାହେବ କୃପାର ବଗିଚା ଦେଖିବାକୁ ଇଚ୍ଛା ପ୍ରକାଶ କରିବାରୁ କୃପା ତାଙ୍କୁ ନେଇ ବାଡ଼ିଆଡ଼େ ବୁଲି ସବୁ ଦେଖାଇ ଆଣିଲା । ଫୁଲର ସୁଂଦର ପଟାଳିମାନ ବଗିଚାରେ ଥିଲା । ଗେଣ୍ଡୁ, ପିଟୁନିଆ ଓ ସେବତୀ ଇତ୍ୟାଦି ଫୁଲ ଲଗାଯାଇଥିଲା ସେଠାରେ । ବନ୍ଧାକୋବି, ଗାଜର, ଭେଣ୍ଡି, ବାଇଗଣ ଆଦି ପରିବା ଓ ସପୁରୀ, କଦଳୀ, ଆତ, ଅମୃତଭଣ୍ଡା ଇତ୍ୟାଦି ଫଳ ବଗିଚା ସବୁ ବୁଲି ସାହେବ ଦେଖିଲେ । ବଗିଚାରେ ବହୁତ ଆମ୍ବଗଛ ବି ଥିଲା । ଫଳଗୁଡ଼ିକ କେବଳ ଚଟଣୀ ହେବାର ଉପଯୁକ୍ତ ହୋଇଥିଲା । ବଗିଚାରେ ଘେରାଏ ବୁଲିଆସି ସେମାନେ ପୁଣି ବୈଠକ ଘରେ ବସିଲେ । ଏଥର କୃପା ତାଙ୍କୁ ହୁଇସ୍କି ଓ ସୋଡ଼ା ପିଇବାକୁ ଦେଲା । ତାପରେ ସାହେବ ଗୋଟେ ଆଶ୍ଚର୍ଯ୍ୟ କଥା କହିଲେ- "ବାବୁ, ତୁମେ ମୋର ଅର୍ଡରଲିକୁ ଡକେଇ ପଠେଇଲେ ମୁଁ ତୁମକୁ ଗୋଟେ ଜିନିଷ ଦେଖାଇବି ।"

ଅର୍ଦ୍ଦଳୀକୁ ଡ଼କାହେଲା । ସେ ଆସି ସାହେବଙ୍କୁ ମେଞ୍ଚାଏ କାଗଜପତ୍ରର ପୁଟୁଳା

ଦେଖାଇଲା । ସୁନେଲି ବର୍ଡ଼ର ଥିବା କାର୍ଡ଼ଟିଏ ସେଥିରୁ ବାହାର କରି, କୃପାକୁ ତାହା ସାହେବ ଦେଖାଇଲେ ଏବଂ ତାକୁ କହିଲେ- "ବାବୁ, ହିଜ୍ ଏକ୍ସେଲେନ୍ସି ଗର୍ଭର୍ଣ୍ଣର ସାହେବ କଟକକୁ ଗୋଟାଏ ଦରବାର କରିବାକୁ ଆସୁଛନ୍ତି । ସେଇଥିପାଇଁ ତମ୍ଭକୁ ଏ ନିମନ୍ତ୍ରଣ ପତ୍ର ।" ପ୍ରଥମେ ଏକଥା ଶୁଣି କୃପାସିନ୍ଧୁ ଅବାକ୍ ହୋଇଗଲା । ତାପରେ ଗୋଟାଏ ଉଦାତ୍ତ ଶାବ୍ଦିକତାରେ ସେ ତାର କୃତଜ୍ଞତା ସାହେବଙ୍କ ଠାରେ ପ୍ରକାଶ କଲା । ତାର ବକ୍ତବ୍ୟର ମଝିରେ ସାହେବ କହିଲେ, "ଏଥିପାଇଁ ମୋତେ ଧନ୍ୟବାଦ ଦେବାର ପ୍ରୟୋଜନ ନାହିଁ । ବିଶେଷ ଉପାଧିଧାରୀ ହିସାବରେ ତୁମର ଏ ନିମନ୍ତ୍ରଣ ପାଇବାର ହକ୍ ଅଛି । ଏଥର ମୋର ଏଠୁ ଉଠିବା ଉଚିତ୍ ହେବ ।"

ରାୟବାହାଦୂର ସାହେବଙ୍କୁ କୃପାସିନ୍ଧୁ ଚିଠି ଲେଖି ଜଣେଇଲା ଯେ ଏହି ଦରବାରରେ ଯୋଗଦେବାକୁ ଗଲେ ସେ ତାଙ୍କ ଘରେ ଅତିଥି ହେବ। କଟକ ଯିବା ପାଇଁ ଲୁଗାପଟା ସଜାଡ଼ି ଅନ୍ୟାନ୍ୟ ପ୍ରସ୍ତୁତିରେ ଲାଗି ରହିଲା । ସାଥୀରେ ସେ ଦି'ହଳ ଧଳାସୂତି ପାଇଜାମା ନେଲା । ସେମିତିକା ପୋଷାକ ସେ ଜୀବନରେ କେବେ ପିନ୍ଧି ନଥିଲା । ସେ ତା'ର କପଡ଼ାରେ ପ୍ରସ୍ତୁତ କଳା ଜୋତା ଓ ସୁନାଫ୍ରେମ୍ ଦିଆ ଚଷମା ବି ନେଲା ।

ଦରବାର ବସିବାର ଦି'ଦିନ ଆଗରୁ ସେ କଟକ ଗଲା । କାହିଁକି ନା ଆଗରୁ ଯାଇ ଦୂରବାଟ ରାସ୍ତାରେ ଯାତ୍ରା ପରାଣ ସେ ଲାଘବ କରିପାରିବ । ସେ ସେଇ ଘୁମନ୍ତ ସହରଟିରେ ଏକ ଭିନ୍ନ ପ୍ରକାରର ତତ୍ପରତା ଲକ୍ଷ୍ୟ କଲା । ସବୁଠାରେ ଆନନ୍ଦ ଉଚ୍ଛଳତା ଭରି ରହିଥିଲା । ଆବଶ୍ୟକତା ଠାରୁ ଅଧିକ ସଂଖ୍ୟାରେ ଗାଡ଼ିମାନ ସେଠାରେ ମହଜୁଦ ଥିବାର ଦେଖିଲା । ଥରେ ଗୋଟାଏ ପୁରୁଣା ଶୋଭାଯାତ୍ରା ମଧ୍ୟ ଦେଖିଲା । ଏହି ଶୋଭାଯାତ୍ରାରେ ଜଣେ ଗଡ଼ଜାତ ରାଜା ଦରବାରକୁ ଯାଉଥିଲେ । ଗୋଟାଏ ଅତିସୁନ୍ଦର ଗାଡ଼ିରେ ଦୁଇଜଣ କଚୁଆନ ଓ ରଂଗୀନ ପୋଷାକ ପିନ୍ଧି ଜଣେ ଭଦ୍ରଲୋକ ବସିଥିଲେ । ସେମାନଙ୍କର ଦୁଇପାଖରେ ଖଣ୍ଡା ଓ ବର୍ଚ୍ଛା ଭଳି ଯୁଦ୍ଧ ହତିଆର ଥିଲା । ଦୁଇଜଣ ରଂଗୀନ ପୋଷାକପିନ୍ଧା ଯୁବକ ଗାଡ଼ିର ପଛ ଭାଗରେ ବସିଥିଲେ । ହାତରେ ଘୋଡ଼ାଲାଞ୍ଜ ପରି ରୂପାର ପଙ୍ଖା ଧରି ମାଛି ହୁରୁଡ଼ାଉ ଥିଲେ ସେମାନେ । ଗାଡ଼ି ଭିତରେ ଅତି ସୁନ୍ଦର ଏବଂ ଦାମୀ ପୋଷାକ ପିନ୍ଧି ନିଜେ ରଜା ବସିଥିଲେ । ଏଇ ଗାଡ଼ିର ପଛେ ପଛେ ଖୁବ୍ ଜୋର୍ ଧଡ଼୍ ଧଡ଼୍ ଶବ୍ଦ କରୁଥିବା ଏକଗାଡ଼ିରେ ରଜାଙ୍କ ଜିନିଷପତ୍ର ସହ ଚାକର ମାନେ ଯାଉଥିଲେ ।

ଦୁର୍ଗର ବାହାର ଗଡ଼ଖାଇ ସେପଟେ ଗୋଟାଏ ବିସ୍ତାରିତ ଲମ୍ୱାଳିଆ ନମନୀୟ ଘାସ ପଡ଼ିଆରେ ଦରବାର ସଜା ହୋଇଥିଲା । ତା'ର ଗେଟ୍ ପାଖରେ ଚାନ୍ଦୁଆ ତିଆରି ହୋଇ ଟଙ୍ଗା ହୋଇଥିଲା । କୃପାସିନ୍ଧୁ, ରାୟବାହାଦୂରଙ୍କ ସହ ଗୋଟାଏ କାର୍‌ରେ ଯାଇ ସେଠାରେ ଯଥା ସମୟରେ ପହଞ୍ଚିଗଲେ । ଅନ୍ୟ ଦରବାରୀମାନଙ୍କୁ ମଧ୍ୟ ଆସି ପହଞ୍ଚିବାର ଦେଖିଲେ ।

ସୁନାଜରି ଲଗା ପୋଷାକ ଓ ଝଲମଲ୍ ଗହଣା ପିନ୍ଧି ପ୍ରଥମେ ଜଣେ ମୁଖ୍ୟ ଲୋକ ଆସିଲେ । ତାଙ୍କ ହାତରେ ଥିବା ଖଣ୍ଡାରେ ହାତୀଦାନ୍ତର ହ୍ୟାଣ୍ଡଲ ଥିଲା ଓ ସେଇଟା ରକ୍ତରଂଗର ଭେଲ୍‌ଭେଟ୍‌ରେ ସୁନା ଛାଉଣୀ ହୋଇଥିବା ଓ ରତ୍ନପଥର ଖଚିତ ଖୋଳ ଭିତରେ ଥିଲା ।

ଦ୍ୱିତୀୟ ମୁଖ୍ୟ ଜଣକ ଏ ଭଦ୍ରଲୋକଙ୍କର ଠିକ୍ ବିପରୀତ ଥିଲେ । ସେ ଗୋଟାଏ ଛୋଟ ଗୋଲାପୀରଙ୍ଗର ଚେପ୍‌ଟା ପଗଡ଼ି ପିନ୍ଧିଥିଲେ । ପଗଡ଼ିଟିରେ ସୁନାଜରିର ଗାର ଗାର ପଡ଼ିଥିଲା । ସେ ସାଧା କ୍ରିମ୍ ରଂଗର ରେଶମୀ ଚପକନ୍, ଧଳାସୂତି ପାଇଜାମା ପିନ୍ଧିଥିଲେ । ପାଦରେ ମୋଜା ଥିଲା କି ନାହିଁ ପାଇଜାମା ଯୋଗୁଁ ତାହା ଜାଣିହେଉନଥିଲା । ତାଙ୍କ ଜୋତାରେ କଳା ଇଲାଷ୍ଟିକ୍ ଲାଗିଥିଲା । କିଂତୁ ସେ କୌଣସି ଗହଣା ପିନ୍ଧିନଥିଲେ, କେବଳ ଗୋଟାଏ ସୁନାର ମୋଟା ହାର ଓ ପଥରଦସା ମୁଦିଟିଏ ପିନ୍ଧିଥିଲେ। ସେ ହୁଏତ ଜଣେ ଧନୀ ଜମିଦାର, ବ୍ୟାଙ୍କର, ବ୍ୟବସାୟୀ କି ବେପାରୀ ହୋଇଥିବେ । ଅନେକ ଲୋକଙ୍କୁ ସେ ସାହାଯ୍ୟ କରୁଥିଲେ ଅଥଚ୍ ନିଜେ କାହାରି ସାହାଯ୍ୟ ପ୍ରାର୍ଥୀ ନୁହନ୍ତି ବୋଲି ସେ ଗର୍ବିତ ଥିଲେ ।

ଜଣେ କିଏ କହିଥିଲେ ଯେ ଆମର ଅନେକ ଇଚ୍ଛା ଆମକୁ ବାଜେ କାମ କରିବାକୁ ପ୍ରବର୍ତ୍ତାଏ ଏବଂ ପ୍ରେମରେ ପଡ଼ିଲେ ମଣିଷ ସବୁଠାରୁ ବାଜେ କାମ ହିଁ କରେ ।

ସେହି ବୃଦ୍ଧ ଫରାସୀ ଜଣକ ଯଦି ଭାରତରେ ଥାନ୍ତେ ସେ 'ପ୍ରେମ' ଜାଗାରେ ଗର୍ବ ବୋଲି କହିଥାନ୍ତେ । କାରଣ, ଏଇ ଲୋକଙ୍କୁ ଦେଖନ୍ତୁ । ତାଙ୍କର ନାମ ବି.ଏନ୍ ଚଟ୍ଟୋପାଧ୍ୟାୟ,ବି.ଏ, ବି.ଏଲ୍ । ସେ ଜଣେ ସର୍ବଶ୍ରେଷ୍ଠ ପଟିଆଳ । ଇଆଡ଼େ ସ୍ୟାଡେ ହଟଚମଟ କରିବାବାଲା ଅଥଚ୍ ସବୁଠୁ କମ୍ ପାରିବାର ଲୋକ । ସେଥିପାଇଁ ସେ କଷ୍ଟକରି ନିଜକୁ ଜଣେ ଇଉରୋପୀୟ ବେଶରେ ସଜ୍ଜିତ କରି ଏଠାକୁ ଆସିଛନ୍ତି । ଗୋଟାଏ ପୁରୁଣା ନୀଳ ସର୍ଜ ପୋଷାକ ପିନ୍ଧିଥିଲେ ଯାହାକୁ କି ତାଙ୍କର ଅଣ୍ଟାର

ଗୋଲେଇ ଦି'ତିନିଇଞ୍ଚ କମ୍ ଥିବା ବେଳେ ସେ ପିନ୍ଧୁଥିଲେ । ଏବେ ପୋଷାକଟିର ତଳ ଦୁଇଟି ବୋତାମ ଆଦୌ ଲଗାଇ ହେଉନାହିଁ । ତାଙ୍କର ଟାଇଟି ଈଷତ୍ ହଳଦୀ ଓ କଳାଡ଼ିଆ ଖଇର ରଂଗରେ, ଠିକ୍ ସ୍ୱପ୍ନର ରଂଗ ପରି ଦିଶୁଥାଏ। ଏହା ସହିତ ସୁହାଇବା ପରି ସେ ଯୋଡ଼ାଏ ମୋଜା ପିନ୍ଧିଥିଲେ ଓ ସିଲ୍କ ରୁମାଲଟିଏ ଧରିଥିଲେ । ଯୋଡ଼ାଏ ଉଜ୍ଜ୍ୱଳ ହଳଦିଆ ରଂଗର ଜୋତା ତାଙ୍କର ଏହି ପୋଷାକକୁ ପୂର୍ଣ୍ଣତା ପ୍ରତିପାଦନ କରୁଥାଏ । ଚାଲିଲା ବେଳେ ସେ ଦୋହଲି ଦୋହଲି ଆଣ୍ଠୁ ଓ ଆଁଗୁଳିକୁ ବୁଲେଇ ବୁଲେଇ ଚାଲୁଥିଲେ ସତେ ଯେପରି କି ସେ ନିଜର ପେଟଟିକୁ ଠେଲି ଠେଲି ଚାଲୁଛନ୍ତି ।

ଦୁର୍ଭାଗ୍ୟ ଯେ ତାଙ୍କର ଇଉରୋପୀୟ ପ୍ରଭାବକୁ ସେଇ ବଡ଼ କଳାପଥରର ମୁଦି ଓ ଧଳା ହୀରାବସା ସୁନା ବୋତାମ ନଷ୍ଟ କରିଦେଉଥିଲା। ନିଜର ଏହି ପ୍ରାଚ୍ୟ ସୌନ୍ଦର୍ଯ୍ୟକରଣରେ ସେ ସନ୍ତୁଷ୍ଟ ନରହି ପର୍ଯ୍ୟାପ୍ତ ଭାବେ ଗୋଲାପ ଅତର ଢାଳି ହୋଇଥିଲେ। ସତେ ଯେମିତି କି ସାମ୍ନାରେ ସାମିଆନାଟା ତାକୁ ଗନ୍ଧ କରୁଥିଲା। ତଥାପି ଧୋତି ଓ ସାର୍ଟର ଜାତୀୟ ପୋଷାକରେ ସେ ଜଣେ ଭଦ୍ର ସରଳ ବଂଗୀୟବାବୁ ବୋଲି ଅନୁମାନ କରାଯାଇପାରୁଥିଲା। ତାଙ୍କର ଭଦ୍ରତାରୁ ସ୍ପଷ୍ଟ ଭାବେ 'ଗର୍ବ'ଟି ବାହାରି ହେଇପଡୁଥିଲା - ଯାହା ଖୁବ୍ ନାକାରତ୍ମକ ଥିଲା। କୃପାସିନ୍ଧୁ ଧରିନେଲା ଯେ ସେ ସବୁଠାରୁ ଉତ୍ତମ ପ୍ରକାରର ଇଂରେଜ। କାରଣ ସାହାବମାନଙ୍କ ଠାରୁ ଭଲ ଭାବେ ସେ ଜାଣିଥିଲା ଯେ ଅହଂକାର ନ ରଖିବାଟାଇ ଇଂରେଜମାନଙ୍କର ନୀତି। ସମଗ୍ର ବିଶ୍ୱ ଆଗରେ ଏହା ଉନ୍ମୋଚିତ ଯେ ଇଂରେଜମାନେ ଅମାପ, ଅସରନ୍ତି ଏକ ଅନ୍ତର୍ନିହିତ ଶକ୍ତି ଓ ମହାନୁଭାବତାରେ ସମୃଦ୍ଧ। ଏକଥା ଅନ୍ୟ ଜାତିଠାରେ ଦେଖିବାକୁ ମିଳେ ନାହିଁ।

ଯେ ଯାହାର ଜାଗାରେ ବସିବାର ଗୋଟାଏ ମିନିଟ୍ ଭିତରେ ପୋଲିସ ବିଗୁଲ ବାଜି ଉଠି ସମସ୍ତଙ୍କୁ ଅଭିବାଦନ ଜଣେଇଲା । ସେତିକିବେଳେ 'ହିଜ୍ ଏକ୍ସେଲେନ୍ସି' ଏବଂ ତାଙ୍କର ଅନୁଚରମାନେ ଆସି ପହଞ୍ଚିଗଲେ। 'ଗାର୍ଡ ଅଫ୍ ଅନର' ନେବା ପାଇଁ ଶୋଭାଯାତ୍ରା ବାହାରିଲା ଏବଂ ସାମିଆନା ପାଖଦେଇ ମଞ୍ଚ ଉପରକୁ ଉଠିଲା । ପ୍ରଥମେ ଚୋପଦାରମାନେ ସେମାନଙ୍କର ରଂଗୀନ ପୋଷାକ ଓ ରୂପା ଗଦାଟିମାନ ହାତରେ ଝୁଲାଇ ଝୁଲାଇ ଚାଲୁଥିଲେ । ତାପରେ ଜିଲ୍ଲା ମାଜିଷ୍ଟ୍ରେଟ୍‌ମାନେ ସେମାନଙ୍କ ମୁଖ୍ୟ ସଚିବମାନଙ୍କୁ ଧରି ଆସିଲେ । ଏବଂ ଏହାପରେ ଅନ୍ୟ ଅଫିସରମାନେ ଦି' ଦି'ଜଣ

କରିଗଲେ । ତାପରେ ମହାମାନ୍ୟ ଗଭର୍ଣ୍ଣର ଏକା ରହିଲେ । ତାଙ୍କ ପଛରେ ନୀଳ ୟୁନିଫର୍ମରେ ପୋଲିସମାନେ ଓ ସବା ଶେଷରେ ଗଭର୍ଣ୍ଣରଙ୍କର ଅଫିସ ଲୋକେ ମଞ୍ଚକୁ ଉଠିଲେ ।

ଏହି ମହାମାନ୍ୟ ଗଭର୍ଣ୍ଣର ଯେ ଦିନେ ତାର କଲେକ୍ଟର ଥିଲେ, ସେକଥା ତାଙ୍କୁ ଦେଖି ସେ ବୁଝିପାରିଲା ଏବଂ ରାୟବାହାଦୂରଙ୍କୁ ଏକଥା ପରେ ଜଣାଇଲା ।

"ଦି'ଇଟା ଯାକ ଏକା କଥା । ଏମାନେ ତାକୁ ମହାମାନ୍ୟ ଗଭର୍ଣ୍ଣର କହୁଛନ୍ତି-ନହେଲେ କହିଥାନ୍ତେ ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ମହାଶୟ । ତଥାପି ସେ ଜଣେ 'ସ୍ୱର୍ଗୀୟ ଜନ୍ମ'ର ମଣିଷ । ନାଁଟା ଯାହା ବଦଳି ଯାଇଛି" କୃପା ରାୟବାହାଦୂରଙ୍କୁ କହିଲା ।

"ତୁମ କଥା ଠିକ୍ । ସାହେବମାନଙ୍କ ଭିତରେ ଗୋଟାଏ କଥା ହେଉଛି ଯେତେ ବଦଳିଲେ ବି ସେଇ ଏକା ରକମ ଥିବେ । ନେତାମାନେ ଯେତେ ଯାହା କହିବେ କହୁଥାନ୍ତୁ ନା କାହିଁକି, ଏଇ ବିଶ୍ୱାସଟି ରଖିଥାଅ ଯେ ତୁମେ ଓ ମୁଁ ଯେ ଯାବତ୍ ବଂଚିଥିବା, ପୂର୍ବଭଳି ସେମିତି ଥିବା ।

ସମସ୍ତେ ଆସନଗ୍ରହଣ କରିସାରିବା ପରେ ଜିଲ୍ଲା ମାଜିଷ୍ଟ୍ରେଟ୍ ଉଠି ମହାମାନ୍ୟ ଗଭର୍ଣ୍ଣରଙ୍କ ଅନୁମତି ଲୋଡ଼ି ଦରବାର ଆରମ୍ଭ କରିବାକୁ ଘୋଷଣା କଲେ । କାର୍ଯ୍ୟକ୍ରମ ଗୁଡ଼ିକ ନାମକୁ ମାତ୍ର ଆନୁଷ୍ଠାନିକ କାର୍ଯ୍ୟକ୍ରମ ଥିଲା । ଉଦ୍‌ଯାପନ ପରେ ପୁଣି ଶୋଭାଯାତ୍ରା ଆରମ୍ଭ ହୋଇଥିଲା । ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କ ସହ ମହାମାନ୍ୟ ଗଭର୍ଣ୍ଣର ଗୋଟାଏ କାର୍‌ରେ ବସି ଚାଲିଗଲେ । ଜଳଯୋଗ ପରେ ଅନ୍ୟ ଅଫିସରମାନେ ଚାଲିଗଲେ ।

ଦରବାରୀମାନେ ଏବେ ସାମିଆନା ତଳୁ ଯାଇ ବାହାର ଘାସ ପଡ଼ିଆକୁ ମାଡ଼ିଚାଲିଲେ । ସମସ୍ତେ ପରସ୍ପରକୁ ଅଭିବାଦନ କରୁଥିଲେ ଓ ସେ ଅଞ୍ଚଳର ଅଫିସରମାନଙ୍କ ସହିତ ସାକ୍ଷାତ୍ ଓ ମିଳାମିଶା କରୁଥିଲେ । ତଟସ୍ଥ ହୋଇ କୌତୂହଳ ସହକାରେ କୃପାସିନ୍ଧୁ ସାହେବମାନଙ୍କର ସେଇ ଗଣ୍ୟମାନ୍ୟ ବଂଧୁମାନଙ୍କୁ ଅଭିବାଦନ କରିବାର ଢ଼ଙ୍ଗକୁ ଲକ୍ଷ୍ୟ କରୁଥିଲା । ସେଠାରେ ଥିବା ଭଦ୍ରଲୋକମାନଙ୍କର କୁଣ୍ଠିତ ଭଦ୍ରଲୋକୀ ଓ ଖୋଲାମେଲା ସଦ୍‌ଭାବକୁ ବି ଅନୁଧ୍ୟାନ କରୁଥିଲା । ଅନ୍ୟମାନେ ମଧ୍ୟ ଆସି କୃପାକୁ ଖୋଲା ହୃଦୟରେ ଅଭିବାଦନ କଲେ ।

କୃପା ମନେ ମନେ ଖୁସି ହେଉଥିଲା ଯେ ଦରବାର ପାଇଁ ସେ ପାଇଥିବା ନିମନ୍ତ୍ରଣଟି ତାର ସମ୍ମାନ ବୃଦ୍ଧି ପାଇଁ ମୁକୁଟ ସଦୃଶ ହେଲା ।

# ଏକତ୍ରିଶ ପରିଚ୍ଛେଦ

ଦରବାର ବସିବାର ପରଦିନ ମଧ୍ୟ କେତେକ ଅଫିସରଙ୍କୁ ଶେଷଥର ପାଇଁ ଭେଟିବା ନିମନ୍ତେ କୃପାସିନ୍ଧୁ କଟକରେ ଅଟକିଗଲା । ତାପରେ ହିଁ ସେ ତା ଗାଁକୁ ଚାଲିଗଲା ।

ବୟସାଧିକ୍ୟ ହେତୁ ସେ ବହୁତ ମୋଟା ହୋଇଯାଇଥିଲା । ଚାଲିପାରୁନଥିଲା ଭଲରେ । ତା'ର ସେ ମୋଟା ଶରୀରକୁ ଟେକିବାକୁ ପାଦମାନେ ବଳ ପାଉ ନ ଥିଲେ ।

ପେନ୍‌ସନ୍ ଆଣିବା ପାଇଁ ସେ ଏଣିକି ନିଜେ ବାଲେଶ୍ୱର ଯାଉନଥିଲା । ଗୁରୁଚରଣ ଯେମିତି ତା'ର ପେନ୍‌ସନ ସଂଗ୍ରହ କରି ଆଣିପାରିବ ସେ ବ୍ୟବସ୍ଥା କରିଦେଲା ।

ବାଧ୍ୟ ହୋଇ ଚାଷବାସର ସମସ୍ତ ଦାୟିତ୍ୱ ସେ ପୁଅ ଉପରେ ଛାଡ଼ିଦେଲା । ତଥାପି ସେ ହିଡ଼େ ହିଡ଼େ ଯାଇ ଚାଷବାସ ତଦାରଖ କରୁଥିଲା । ସେ ଆଉ ଆଗପରି ପାହାଚ୍ ଚଢ଼ି ପାରୁନଥିଲା । ତେଣୁ ଘରର ତଳ ମହଲାର ଗୋଟାଏ ଶୋଇବା ଘରେ ତା' ରହିବା ପାଇଁ ବ୍ୟବସ୍ଥା ହେଲା ।

ତାକୁ ନେବା ଆଣିବା ପାଇଁ ଗୋଟାଏ ଚେୟାରର ବ୍ୟବସ୍ଥା କରାଗଲା । ଚାରିଜଣ ଲୋକ ତାକୁ ସେ ଚେୟାରରେ ବସେଇ ବୋହି ବୋହି ନେଇ ବୁଢ଼ାବଳଙ୍ଗ କୂଳରେ ବୁଲାଇ ଆଣୁଥିଲେ ।

ପଡ଼ିଶାମାନଙ୍କ ଭିତରେ ସେ ଜଣେ ଅତ୍ୟନ୍ତ ପ୍ରଭାବଶାଳୀ ଲୋକ ହିସାବରେ ସମ୍ମାନ ପାଉଥିଲା । ନିଜ ପ୍ରଭାବକୁ ସେ ସଠିକ୍ ଭାବେ ବିନିଯୋଗ ମଧ୍ୟ କରୁଥିଲା । ନିଜ ନିଜର ମାଲିମକଦ୍ଦମା ସବୁ କୋର୍ଟକୁ ନ ଟାଣି ଗାଁରେ ନିଜ ନିଜ ଭିତରେ ଆପୋଷ ଆଲୋଚନା ଦ୍ୱାରା ସୁଝାଇବାକୁ ସେ ଉପଦେଶ ଦେଉଥିଲା । ଝିଅମାନଙ୍କୁ ଚଉଦବର୍ଷ ନପୂରିବା ଯାଏ ବିବାହ ଦେବାକୁ ବାରଣ କରୁଥିଲା । ରାଜନୀତି କି ବିଦ୍ରୋହର ପାଖ କେହି ତା' ଗାଁ ଲୋକ ନପଶନ୍ତୁ ବୋଲି ସେ ଚାହୁଁଥିଲା । ଗାଁକୁ କେହି ବିଦ୍ରୋହୀ ପଶିଲେ ତାକୁ ପିଟି ପିଟି ମାରି ନଈକୁ ଫିଙ୍ଗି ଦେବାକୁ ସେ ପ୍ରବର୍ତ୍ତାଉ ଥିଲା ।

ଗାଁର ବୁଢ଼ାମାନେ କୃପାସିନ୍ଧୁର କଥା ମାନୁଥିଲେ । କିଂତୁ ଟୋକାଟକଳାଏ ତା' ସହ ଟିକେ ଯୁକ୍ତି କରୁଥିଲେ । "ବାବୁ, ରାଜନୀତିଆ ମାନେ ସମସ୍ତେ କ'ଣ ଖରାପ । ସେମାନେ ସରକାରଙ୍କୁ ବାଧ୍ୟ କରିଛନ୍ତି ଯେ ସମସ୍ତ ଓଡ଼ିଆ ଭାଷାଭାଷୀ

ଅଂଚଳ ଏକତ୍ରିତ ହୋଇ ଓଡ଼ିଶା ନାଁରେ ଗୋଟାଏ ସ୍ୱତନ୍ତ୍ର ପ୍ରଦେଶ ଗଠନ କରାହେବ।" ବାଲେଶ୍ୱରର ସ୍କୁଲରେ ପଢୁଥିବା ଟୋକାଟିଏ ଏକଥା ତାକୁ କହିଲା ।

"ଏଥିପାଇଁ ନେତାମାନଙ୍କୁ ପ୍ରଶଂସା କରିବାର କ'ଣ ଅଛି । ଇଂରେଜ ଅଫିସରମାନେ ଏସବୁ କରିଛନ୍ତି- ସେମାନଙ୍କୁ ଧନ୍ୟବାଦ ଦିଅ ।" କୃପା ତାକୁ କହିଲା ।

"ଏକଥା ସତ ଯେ ଜାତୀୟ ଦାବିକୁ ଅଫିସରମାନେ ଗ୍ରହଣ କରିନେଇଛନ୍ତି । ନେତାମାନେ ଖାଲି ଅଯଥା ହଟଚ୍ଚମଟ କରନ୍ତି । ହଟଚ୍ଚମଟ ଥିବା ଯାକେ ସରକାର କିଛି କାମ କରନ୍ତି ନାହିଁ । ହେଲେ, ବଢ଼ିଆ କଥାଟିଏ ହେଲା ନାହିଁ କି ?"

"ହଁ, ଭଲ ତ ହେଲା । ହେଲେ ଅଧିକ କ'ଣ ଆଉ ହେବ ଯେ ? ବିହାର ଓ ଓଡ଼ିଶା ବଂଗଳାଠାରୁ ବିଛିନ୍ନ ହେଲା ପରେ ଆମେ ଭାବିଥିଲୁଁ ଯେ ବଂଗାଳୀଙ୍କ ଦାଉରୁ ଆମେ ରକ୍ଷା ପାଇବୁ ବୋଲି । ମାତ୍ର ସେମାନେ ତ ଏଯାଏ ଆମ ଏଠାରେ ଅଛନ୍ତି । ଓଡ଼ିଶା ବିହାର ଠାରୁ ବିଛିନ୍ନ ହୋଇଗଲେ, ସେମାନେ ଚାଲିଯିବେ ବୋଲି ତମେ ସବୁ ଭାବୁଛ ନା କ'ଣ ?"

"ଏଇଠି ସବୁ କାମ ଶେଷ ହୋଇଗଲା ନାହିଁ ? ଓଡ଼ିଶା ତ ଗୋଟାଏ ସ୍ୱତନ୍ତ୍ର ପ୍ରଦେଶ ହେଲା- ତେବେ ତା'ପାଇଁ ଅଲଗା ରଜା ରହନ୍ତୁ ବୋଲି ଦାବି କରିବା କଥା । ତେବେ ଯାଇ ଆମ ପବିତ୍ର ଦେଶ ଆମର ହୋଇ ରହିଲା ବୋଲି କହିବା ସିନା ?"

"ଏହା ତ ଅତି ଉତ୍ତମ କଥା । ଓଡ଼ିଶା ପୁଣି ଏକତ୍ରିତ ଭାବେ ସଂଗଠିତ ହୋଇରହିବ । ପୁରୁଣା ରାଜ୍ୟ ଫେରି ଆସିବ ଆମେ ନିଜକୁ ଗୋଟାଏ ଜାତି ବୋଲି ଜାଣିବା । ମୁଁ ଯଦି ଏସବୁ କଥା ଦେଖିବାକୁ ବଂଚିରହନ୍ତି... ।" କୃପା ଦୀର୍ଘଶ୍ୱାସ ଛାଡ଼ି କହିଲା ।

ନିଜର ସମ୍ପର୍କୀୟମାନଙ୍କ କୁଶଳମଙ୍ଗଳ ଖବର ନିତି ନିତି କୃପା ରଖୁଥିଲା । ଏବେ ସେ ସେମାନଙ୍କ ଘରକୁ ବୁଲି ଯାଇ ପାରୁ ନଥିଲା ।

ତା'ର ଭାଇ ଦୟାନିଧି ମଧ୍ୟ ଦିନକୁ ଦିନ ଦୁର୍ବଳ ହୋଇ ଉଠୁଥିଲା । ସେ ତା'ର ଭାଇମାନଙ୍କୁ ଦେଖା କରିବାକୁ ଯାଇ ପାରୁନଥିଲା । ଦୟା ନିଜ ଜମିଜମାର ଦାୟିତ୍ୱ ତା'ର ଜଣେ ପୁଅ ଉପରେ ନ୍ୟସ୍ତ କରିଦେଇଥିଲା । ସେଇ ପୁଅଟି ତା'ର ଦଶବିଘା ଜମିରୁ ଭଲରେ ଆୟ ଅର୍ଜନ କରୁଥିଲା । ଅନ୍ୟ ପୁଅଟି ପୋଲିସ ଚାକିରିରେ ଥିଲା । ପଇସା ଭଲ ଆୟ କରୁଥିଲା । ଅତି ସତର୍କତାର ସହ ଉପୁରି ବି କରୁଥିଲା ।

ଏ ଦିଗରେ ବାପାଠାରୁ ସେ ଉପଦେଶ ନେଉଥିଲା ।

ସାରା ଜୀବନ ହରିବନ୍ଧୁ ଚାଷବାସ ଉପରେ ନିର୍ଭର କରି ଚଳିଲା, ଓ ଗାଁରେ ଜୀବନ କଟାଇଲା । ସବୁ ଭାଇମାନଙ୍କ ଅପେକ୍ଷା ସେ ଅଧିକ ଟାଣୁଆ ଓ ତେଜବାନ୍ ଥିଲା । ବଡ଼ ଦି'ଭାଇଙ୍କୁ କେବେ କେବେ ସେ ଦେଖା କରିବାକୁ ଯାଉଥିଲା । ସେ ତା'ର ପିଲାମାନଙ୍କୁ ଇଂରେଜୀ ପଢ଼େଇ ନ ଥିଲା । ମାତ୍ର, ଦେଶକୁ, ଗାଁକୁ ଓ ଜମିକୁ ଭଲ ପାଇ ଚାଷବାସ କରି ଖୁସିରେ ରହିବାଟା ସବୁଠୁ ଉତ୍ତମ ଓ ଆଦର୍ଶମୟ ପେଶା ବୋଲି ବରାବର ସେମାନଙ୍କୁ ଶିକ୍ଷା ଦେଉଥିଲା । ତାର ଦୁଇଜଣ ଯାକ ଜୋଇଁ କଲେଜରେ ପଢୁଥିଲେ । ଜଣେ ଓକିଲ ଓ ଅନ୍ୟ ଜଣକ ଇସ୍କୁଲମାଷ୍ଟର ହେବାକୁ ଲକ୍ଷ୍ୟ ରଖିଥିଲେ ।

ବାଲେଶ୍ୱର କଲେକ୍ଟରଙ୍କ ଅଫିସରେ ଗୁରୁଚରଣ ବେଶ୍ ଭଲରେ ଥିଲା । କୃପାର ଦୁଇଜୋଇଁ ମଧ୍ୟ ସରକାରୀ ଚାକିରି କରୁଥିଲେ । ସମ୍ପର୍କୀୟମାନଙ୍କର ଉନ୍ନତି ଓ ସୁଖଶାନ୍ତି ଦେଖି କୃପା ନିଶ୍ଚିତ ଭାବରେ ଅତି ଖୁସି ହେଉଥିଲା । ସବୁବେଳେ ସେ କିଂତୁ ପଇସା ସଂଚୟ କରି ଜମେଇବାର ଅଭ୍ୟାସ ରଖିଥିଲା । ସେ ସବୁବେଳେ କହୁଥାଏ, କିଏ ଜାଣେ କେତେବେଳେ କେହି ପୁଅ ଯଦି ତା'ର ବିପଦରେ ପଡ଼ିଯିବ ତ, ପଇସା  ଦରକାର ହେବ ନିଶ୍ଚୟ ।

ନଈକୂଳରେ ନିଜ ଚେଆର ଉପରେ ବସି ସେ ନିଜର ସଫଳ ଜୀବନକଥା ଭାବି ଖୁସିହୁଏ । କିପରି ଭାବେ ରାୟସାହେବ ଉପାଧୀ ପାଇଲା, କମିଶନର ତାକୁ ବଧେଇ ଜଣେଇ ତାର ହାତଧରି ମଧୁର ସମ୍ଭାଷଣ କଲେ । କଲେକ୍ଟର ସାହେବ କିପରି ତାର ବୈଠକୀରେ ବସି ଚାହା ପିଇଲେ- ଏସବୁ ସମ୍ମାନ କ୍ୱଚିତ୍ ଲୋକଙ୍କୁ ମିଳିଥାଏ । ଯାହାର ଉଚ୍ଚବଂଶ ମର୍ଯ୍ୟଦା ତଥା ବଡ଼ଜମିଦାରୀ ଥାଏ, ତାକୁ ଏସବୁ ମିଳେ।

ସେ ନିଜ ସ୍ମୃତିରୁ ମନେପକାଏ, କିପରି ସେ ମହାମାନ୍ୟ ଗଭର୍ଣ୍ଣରଙ୍କ ଦରବାର ପାଇଁ ନିମନ୍ତ୍ରଣ ପାଇ ତାଙ୍କ ପାଖକୁ ଗଲା । ଏକଥା ଭାବିଲେ ତାକୁ ଉତ୍ଫୁଲ୍ଲ ଲାଗେ, ଖୁସି ଲାଗେ । ହେଲେ ଏସବୁ କିଛି ସେ କଠିନ ପରିଶ୍ରମ, ନିଷ୍ଠା, ଦାୟିତ୍ୱ ପରାୟଣତା ଏବଂ ବୁଦ୍ଧିମତ୍ତା ଯୋଗୁଁ ହିଁ ଅର୍ଜନ କରିଛି ।

କୃପା ଯେତେ ବେଶୀ ବୁଢ଼ା ହେଉଥାଏ, ଛୋଟ ପିଲାଙ୍କ ପ୍ରତି ସେ ସେତେ ବେଶୀ ଟାଣି ହେଇ ଯାଉଥାଏ । ଗାଁର ସବୁପିଲା ତା'ର ଆଣ୍ଠୁ ଚାରିକଡ଼େ ଘେରିଯାଇ

ତାକୁ ଠାକୁବାବା ଡାକନ୍ତି ଓ ରାକ୍ଷସର ଗପ ଶୁଣାଇବାକୁ ତାଠାରେ ଅଳି କରନ୍ତି । ଆଉ ଟିକେ ବଡ଼ ସ୍କୁଲ ପିଲାମାନେ ମଧ୍ୟ ତା' ପାଖକୁ ଆସନ୍ତି । କାରଣ କୃପାସିନ୍ଧୁ ବୁଢ଼ା ତାଙ୍କୁ ଭଲ ଭଲ ଉପଦେଶମାନ ଦିଏ ।

କୃପା ସେ ପିଲାମାନଙ୍କୁ ସବୁବେଳେ ସତ୍ୟ, ନିଷ୍ଠା, ସଚ୍ଚୋଟତା ଏବଂ ନିୟମାନୁବର୍ତ୍ତିତା କଥା ଶିଖାଉଥାଏ । ଶ୍ରୀ ଭାରତେଶ୍ୱରଙ୍କ ପ୍ରତି ବିଶ୍ୱସ୍ତ ରହିବାକୁ ଉପଦେଶ ଦିଏ । ମାତ୍ର ନିଜ ଦେଶର ଲୋକ ତଥା ନିଜ ଦେଶ ଏଇ ପବିତ୍ର ଉତ୍କଳ ଭୂମିକୁ ଚିରକାଳ ଭଲପାଇବା ନିମନ୍ତେ ସେ ସବୁ ପିଲାଙ୍କୁ ପ୍ରବର୍ତ୍ତାଉ ଥାଏ ।





ଡ. ବିନୋଦିନୀ ପାତ୍ର

ସୁଲେଖିକା ଅଧ୍ୟାପିକା ଡକ୍ଟର ବିନୋଦିନୀ ପାତ୍ର ଓଡ଼ିଆ ସାହିତ୍ୟ ଜଗତର ଏକ ବହୁ ପରିଚିତ ନାମ । ସତୁରି ଦଶକର ପ୍ରାରମ୍ଭରେ ଛାତ୍ରୀ ଥିବାବେଳେ 'ଭାରତୀୟ ପୁସ୍ତକ ନ୍ୟାସ' ଦ୍ୱାରା ପ୍ରକାଶିତ ସ୍ୱାଧୀନୋତ୍ତର କବିତା ସଂକଳନରେ ସେ ସସମ୍ମାନେ ସ୍ଥାନିତା ଏବଂ ପ୍ରଜାତନ୍ତ୍ର 'ସୁଲେଖା' ପୁରସ୍କାରରେ ମଧ୍ୟ ପୁରସ୍କୃତା । ଗଳ୍ପ, କବିତା, ଶିଶୁ ସାହିତ୍ୟ, ଅନୁବାଦ ଆଦି ସାହିତ୍ୟର ବହୁ ବିଭାଗରେ ଲେଖନୀ ଚାଳନା କରି ପ୍ରତ୍ୟେକ କ୍ଷେତ୍ରରେ ସେ ସୁନାମ ଓ ସମ୍ମାନ ଅର୍ଜନ କରି ନିଜର ଏକ ସ୍ୱତନ୍ତ୍ର ସ୍ଥାନ ତିଆରି କରି ପାରିଛନ୍ତି ।

ବାଲେଶ୍ୱର ଜିଲ୍ଲାର ବାଲିଆପାଳ ଥାନା ଅନ୍ତର୍ଗତ ପାରୁଳିଆ ଗ୍ରାମରେ ୧୯୫୧ ନଭେମ୍ବରରେ ପିତା ପଣ୍ଡିତ କୁବେର ଚନ୍ଦ୍ର ପାତ୍ର ଓ ମାତା ସୁରବାଳାଙ୍କ ଔରସରୁ ବିନୋଦିନୀଙ୍କ ଜନ୍ମ ।

ସରଳ, ସାବଲୀଳ, ଅପୂର୍ବ ଉପମା ଓ ଶବ୍ଦ ସର୍ଜନାରେ ସମୃଦ୍ଧ ତାଙ୍କର ସାରସ୍ୱତ ଶିଳ୍ପକଳା ଖୁବ୍ ବଳିଷ୍ଠ ଓ ଆକର୍ଷଣୀୟ । ସାଧାରଣ ଘଟଣାକୁ ଅସାଧାରଣ କରି ଉପସ୍ଥାପନ କରିବାର କଳା କୌଶଳରେ ତାଙ୍କର ଅନନ୍ୟତା ତାଙ୍କୁ ଜଣେ ଉଚ୍ଚକୋଟୀର ଲେଖିକା ଭାବେ ଉପସ୍ଥାପିତ କରେ । ତାଙ୍କର ସାରସ୍ୱତ କର୍ମ ପାଇଁ ସେ ବହୁ ପୁରସ୍କାର ଓ ସମ୍ମାନରେ ସମ୍ମାନିତା ।


ISBN 81-931652-4-1

 ଲେଖାଲେଖି